# ଭାଗବତ କଥା

( ଊନବିଂଶ ଖଣ୍ଡ )

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦ :

ଶ୍ରୀ ଶ୍ରୀନିବାସ ଉଦ୍‌ଗାତା

ପ୍ରକାଶକ :



ଅଗ୍ରୱାଲ୍ ବୁକ୍ ଷ୍ଟୋର

*Digitized by srujanika@gmail.com*

# ଭାଗବତ କଥା

ପ୍ରକାଶିକା :
**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**
କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ-୧୯୮୫

ପ୍ରଚ୍ଛଦ :
**ଅସିତ୍ ମୁଖାର୍ଜୀ**

ମୁଦ୍ରଣ :
କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ-୧

ମୂଲ୍ୟ :
ବନ୍ଧାଇ ୧୫ ଟଙ୍କା
ସାଦା ୧୨ ଟଙ୍କା

## BHAGABAT KATHA
(Nineteenth Part)

**Sri Prabhudatta Brahmacharee**

*Publisher :*
**Srimati Annapurna Misra**
Cuttack Students' Store
Cuttack-753002

First Edition-1985

*Price :*
Deluxe Rs-15.00
Popular Rs-12.00

*Digitized by srujanika@gmail.com*

# ଦୁଇପଦ

"ଭାଗବତ କଥା"ର ପ୍ରତ୍ୟେକ ଖଣ୍ଡର ପ୍ରକାଶନ ସହିତ ଏ ବହିର ଆଦର ଓ ପ୍ରଚାର ବଢ଼ୁଥିବା ଲକ୍ଷ୍ୟ କରାଯାଉଛି । ଏ ଖଣ୍ଡର "ଦୁଇପଦ" ଲେଖୁଥିବା ବେଳେ କୋଡ଼ିଏ ଖଣ୍ଡଟି ମଧ୍ୟ ପ୍ରସ୍ତୁତ ହୋଇ ଯାଇଥିବାର ଶୁଭ ସମ୍ବାଦ ମିଳୁଛି । ସ୍ୱର୍ଗତ ଅନନ୍ତ ମିଶ୍ରଙ୍କ ତିରୋଧାନର ପ୍ରାୟ ଦୁଇବର୍ଷ ହୋଇଗଲା । ସେ ଥିବା ଭିତରେ "ଭାଗବତ କଥା"ର ପ୍ରଥମ ୧୦ ଖଣ୍ଡ ପ୍ରକାଶିତ ହୋଇଥିଲା । ଅନ୍ୟ ଦଶ ଖଣ୍ଡ ପ୍ରକାଶନ ପାଇଁ ଦୁଇ ବର୍ଷ ଲାଗିଲା । ଅହୁରି ଚାଳିଶି ଖଣ୍ଡ ବାକି ରହିଛି । ୧୯୮୭ ଶେଷ ସୁଦ୍ଧା ଆଉ ଦଶ ଖଣ୍ଡ ବାହାରି ଯାଇପାରେ । ଅସଲ କଥା ହେଲା— ହିନ୍ଦୀରୁ ବହିଗୁଡ଼ିକର ଓଡ଼ିଆକୁ ଅନୁବାଦ । ଏଥିପାଇଁ "ଭାଗବତ କଥା"ର ପୁଣ୍ୟତୋୟା ଗଙ୍ଗାଙ୍କୁ ଓଡ଼ିଶାକୁ ବୁହାଇ ଆଣିବା ପାଇଁ ଅନେକ ବୁଦ୍ଧିଜୀବୀ ଓ ସାହିତ୍ୟିକ ଅଣ୍ଟାଭିଡ଼ି ବାହାରି ଆସିଛନ୍ତି । ସେମାନଙ୍କ ଅନୁବାଦ ପାଠକମାନଙ୍କ ପାଖରେ ଆଦୃତ ହୋଇଛି । ତଥାପି ଆହୁରି ଦକ୍ଷ ଅନୁବାଦକ ଏ କାର୍ଯ୍ୟପାଇଁ ଅଗ୍ରସର ହୋଇ ଆସିବା ଉଚିତ । ପୁଣ୍ୟାତ୍ମା ବ୍ରହ୍ମଚାରୀ କେବଳ ଭାଗବତ ନୁହେଁ, କେତେ ପୁରାଣ ଉପନିଷଦକୁ ମନ୍ଥନ କରି ପ୍ରସଙ୍ଗୋପଯୋଗୀ କଥା ତାଙ୍କ 'ଭାଗବତ କଥା'ରେ ଯୋଡ଼ି ଦେଇଛନ୍ତି । ଏ ଗୁନ୍ଥିବାର ସୂତ୍ର ତାଙ୍କର ପାଣ୍ଡିତ୍ୟ ନୁହେଁ, ଏ ସୂତ୍ର ହେଉଛି ତାଙ୍କର କୃଷ୍ଣାନୁଭୂତି । "ଭାଗବତ କଥା" ପଢ଼ିବାକୁ ଆରମ୍ଭ କରିଥିବା ପାଠକ ସେହି କୃଷ୍ଣାନୁଭୂତିରେ ନିଜ ଅଜାଣତରେ ବୁଡ଼ିଯାଏ, ସେଥିପାଇଁ ତାହାକୁ ପାଠକରି ପାଠକ ଏତେ ସନ୍ତୋଷ ଓ ତୃପ୍ତି ପାଇଥାଏ ।

ହରିବଂଶ ଖଣ୍ଡରେ ହିରଣ୍ୟକଶିପୁ ସମ୍ବାଦ ଯେପରି ରୋଚକ ଢଙ୍ଗରେ ପରିବେଷଣ କରାଯାଇଛି ତାହା ଅନ୍ୟ କୌଣସି ଗ୍ରନ୍ଥରେ ସୁଲଭ ନୁହେଁ । ଶ୍ରୀହରିଙ୍କ ମାହାତ୍ମ୍ୟ ବର୍ଣ୍ଣନା କରିବା ପାଇଁ ବ୍ରହ୍ମଚାରୀଜୀ ସୁଯଜ୍ଞ, ଚନ୍ଦ୍ରହାସ ପ୍ରଭୃତି ଉପାଖ୍ୟାନର ସାହାଯ୍ୟ ନେଇ କିପରି ଭକ୍ତି କଥା ଧାରା ପ୍ରବାହିତ କରାଇ ନେଇଛନ୍ତି, ତାହା ଲକ୍ଷ୍ୟ କରିବାର କଥା ।

ଭଗବାନଙ୍କର ଜୟ ହେଉ । ଭଗବାନଙ୍କ ଭକ୍ତମାନଙ୍କର ମଧ୍ୟ ଜୟ ହେଉ ।

**ଡକ୍ଟର କୃଷ୍ଣପ୍ରସାଦ ମିଶ୍ର**
ପ୍ରଫେସର, ଦର୍ଶନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

●

Digitized by srujanika@gmail.com

# ସୂଚୀ





*Digitized by srujanika@gmail.com*

# ପ୍ରାକ୍‌କଥନ

ତୈତ୍ତୈକସେ ନିଦ୍ରୟାଽଽପନ୍ନେ ପିଣ୍ଡସ୍ଥୋ ନଷ୍ଟଚେତନଃ ।
ମାୟାଂ ପ୍ରାପ୍ନୋତି ମୃତ୍ୟୁଂ ବା ତଦ୍‌ବନ୍ନାର୍ଥଦୃକ୍‌ପୁମାନ ॥

॥ ଶ୍ରୀ ଭା ୧୧ ସ୍କ. ୨୮ ଅ । ୩ ଶ୍ଳୋ ॥

—ଛପ୍‌ପୟ—

ପ୍ରଭୁ ଜଡ଼ ଚେତନ ମାହିଁ ବ୍ୟାପ୍ତ ହରିମୟ ଜଗ ଦେଖୈଁ ।
ପରମାରଥ ପଥ ପଥିକ ପୃଥକ୍‌ତା ପକ୍ଷ ନ ପେଖୈଁ ॥
ଭିନ୍ନ ଭାବ ଭବ ମାଁହିଁ ଭ୍ରମାବେଁ ବନ୍ଧ କରାବେଁ ।
ଦେଖୈଁ କେ ଗୁଣ ଦୋଷ ନ ତେ ପୁନି ପ୍ରଭୁପ୍ରଦ ପାବେଁ ॥
କରେ ଚତ୍ତ ଜସ ଭାବନା, ତସ ପାବେ ୟହ ଜୀବ ତନ ।
ଭଲେ ବୁରେ ହିୟ ଭାବ ଜୋ, ଉଠେ ହୋହି ତଦରୂପ ମନ ॥

'ଭାଗବତ କଥା'ର ଷୋଡ଼ଶ ଖଣ୍ଡରେ ମୁଁ ପ୍ରାକ୍‌କଥନ ପ୍ରସଙ୍ଗରେ ନିବେଦନ କରିଥିଲି ଏବଂ ତାହା ଉପରେ ପାଠକମାନଙ୍କର ସମ୍ମତି ଚାହିଁଥିଲି । ସବୁ ପାଠକ-ମାନଙ୍କଠାରୁ ତ ଉତ୍ତର ଆସିଲା ନାହିଁ; ମାତ୍ର ଚିଠି ଅନେକ ଆସିଛି । ଯେତେ ଚିଠି ମୋ ପାଖକୁ ଆସିଛି, ତା ଭିତରେ ଗୋଟିଏ ବି ଚିଠି ନାହିଁ ଯେଉଁଥିରେ 'ପ୍ରାକ୍‌କଥନ' ଲେଖା ସମ୍ବନ୍ଧରେ ଅସମ୍ମତି ରହିଛି ।

ଜଣେ ସଜ୍ଜନ ସୁନ୍ଦର କଥାଟିଏ ଲେଖିଥିଲେ । ସେ ଲେଖିଥିଲେ—'ଆପଣ ପ୍ରଥମ ଖଣ୍ଡରେ ହିଁ ଏହି କଥା ଲେଖିଥିଲେ ଯେ ମୁଁ କିଛି ଲେଖେଁ ନାହିଁ, ଭଗବାନ ଯାହା ଲେଖାନ୍ତି ତାହା ଲେଖିଦିଏଁ । ସେ ଯାହା ଲେଖେଇବେ ଲେଖି ଦେଉଥିବ । ତା'ହେଲେ ଏ ସମ୍ମତି ଅସମ୍ମତିର ପ୍ରଶ୍ନ କାହିଁକି ଉଠିଲା ? ପାଠକମାନଙ୍କ ମଧ୍ୟରେ ଅନେକ ପ୍ରକାରର ବ୍ୟକ୍ତି ଅଛନ୍ତି, କିଏ କ'ଣ କିଏ ଆଉ କ'ଣ କହିବ । ତେଣୁ ଆପଣ କାହାରି ହେଲେ ସମ୍ମତିର ଅପେକ୍ଷା ନ ରଖି ଯାହା ଭଗବତ୍ ପ୍ରେରଣା, ତାହା ହିଁ

Digitized by srujanika@gmail.com

କରନ୍ତୁ । ଭଗବାନ ଲେଖାଇଲେ ଲେଖିବେ ନ ହେଲେ ନାହିଁ ।' ଏହା ଏକ ସୁନ୍ଦର କଥା । ଜୀବ ଭିତରେ ଏଇ ତ ବଡ଼ ତ୍ରୁଟି, ସେ ଥରେ ତ ବୁଦ୍ଧି ଲଗେଇ ବିଗ୍ଭର କରେ ଯେ ସବୁ ଈଶ୍ୱର କରୁଛନ୍ତି; ମାତ୍ର ପରେ ଭ୍ରମିଯାଏ । ପରେ ଆପଣାର କର୍ତ୍ତୃତ୍ୱର ଆରୋପ କରେ । ଏହି ସମ୍ମତି ନେବାର ଉଦ୍ଦେଶ୍ୟ ଭିତରେ 'ପ୍ରଶଂସା ଶୁଣିବାର ଭାବନା'ଟି ନିହିତ ହୋଇ ରହିଥିଲା । 'ମୋ ଲେଖାର ଲୋକେ ଆଦର କରୁଛନ୍ତି ନା ନାହିଁ । ଅଚ୍ଛା, ଏହା ବି ଈଶ୍ୱରଙ୍କର ପ୍ରେରଣା ହୋଇପାରେ, ସେ ପାଠକଙ୍କ ମୁହଁରେ କୁହେଇ ମୋତେ ପୁନଃ-ପ୍ରେରିତ କରିବାକୁ ଗ୍ଭହୁଁଥିବେ । ପ୍ରଭୁ ! ଏଭଳି କୃପାକର ଯେଭଳି ତୁମର କାର୍ଯ୍ୟ ପାଇଁ ମୋ ଭିତରେ ମୁଁ ତ୍ୱର ଗର୍ବ ନ ରହୁ ।

'ଭୂମିକା', 'ପ୍ରସ୍ତାବନା', ପ୍ରାକ୍‌କଥନ', 'ଦୁଇପଦ', 'ନିଜ କଥା', 'ମୁଖବନ୍ଧ', 'ପ୍ରାରମ୍ଭିକ ବକ୍ତବ୍ୟ' ଆଦି ଆଦି ନାମରେ ପୁସ୍ତକ ନିମନ୍ତେ ଯେଉଁ ମୁଖବନ୍ଧ ଲେଖାଯାଏ, ସେଥିରେ ଦୁଇଟି କଥା ଥାଏ । ପୁସ୍ତକର ବିଷୟ ପ୍ରସଙ୍ଗରେ ଏବଂ ପୁସ୍ତକର ଲେଖକ ସମ୍ବନ୍ଧରେ । ବର୍ତ୍ତମାନ ଏକ ତୃତୀୟ କଥାର ସମାବେଶ ମଧ୍ୟ ହୋଇଯାଇଛି, ପୁସ୍ତକର ମୁଦ୍ରଣ ପ୍ରକାଶନ ପାଇଁ ସୁବିଧା-ଅସୁବିଧାର ସୂଚନା ଦେବା । ଏଇ ତିନୋଟି କଥା ଭିତରୁ ମୋତେ କେଉଁ କଥାଟି ଉପରେ ଲେଖିବାକୁ ହେବ । ପୁସ୍ତକ ବିଷୟରେ କ'ଣ ଲେଖିବି, ପ୍ରତ୍ୟେକ ଅଧ୍ୟାୟ ପ୍ରାରମ୍ଭରେ ଶ୍ଳୋକ ଭୂମିକାଟିଏ ତ ରହିଛି । ମୁଦ୍ରଣ ଆଦି ସମ୍ବନ୍ଧରେ ପ୍ରକାଶକୀୟ ବକ୍ତବ୍ୟରେ ସମସ୍ତ ସମୟରେ କୁହା ହେଉଛି ତ ! ତା'ହେଲେ ଆପଣା କଥାଟି ରହିଗଲା । ତେବେ ନିଜ କଥା କ'ଣ ଲେଖିବି ? କେତେକ ବନ୍ଧୁ ସ୍ନେହଭାବ ନେଇ ଲେଖନ୍ତି, ଆପଣଙ୍କର ଚରିତ ସମ୍ବନ୍ଧରେ କିଛି କିଛି ପ୍ରକାଶିତ କରନ୍ତୁ । ଚରିତ ଚରିତ୍ରବାନମାନଙ୍କର ଲେଖାଯାଏ । ମୁଁ ଶପଥ କରି କହୁଛି ଯେ ମୁଁ ନିଜକୁ ସେଭଳି ଚରିତ୍ରବାନ ପୁରୁଷ ମନେକରେ ନାହିଁ । କେତେକ କହନ୍ତି—'ଆପଣାର ଅନୁଭୂତି ଲେଖନ୍ତୁ ଯାହାଦ୍ୱାରା ଅନ୍ୟାନ୍ୟ ପରମାର୍ଥ ପଥର ପଥିକମାନଙ୍କର ଲାଭ ହେବ ।' ଅନୁଭବ ଦୁଇଟି ମାତ୍ର କାରଣରୁ ବୁଦ୍ଧିମାନ ପୁରୁଷମାନଙ୍କର ହୋଇଥାଏ—

''ବୁଦ୍ଧିଶ୍ଚ ପୁଂସା ବୟସାର୍ଯ୍ୟସେବୟା ।''

ମନୁଷ୍ୟମାନଙ୍କର ବୁଦ୍ଧି ବୟସର ବୃଦ୍ଧି ସହିତ ଏବଂ ଗୁରୁଜନଙ୍କର ସେବାଦ୍ୱାରା ସ୍ୱୟଂ ଆସିଥାଏ । ତା'ର ଅନୁଭୂତି ଆସି ବସେ । ଗୁରୁଜନଙ୍କର ସେବା ତ ଏ ଜୀବନରେ ହୋଇପାରିଲା ନାହିଁ । ହଁ, ଅସ୍ଥିର ବୃଦ୍ଧି ସହିତ 'ଅନୁଭବ' ଅବଶ୍ୟ ହେଲା । ଆପଣାର ପ୍ରାଚୀନ ପାପମାନଙ୍କର ପ୍ରାୟଶ୍ଚିତ କରିବା ବିଷୟରେ ଚିନ୍ତା କରୁଛି । ମୁଁ ଅନୁଭବ କରିଛି ପରମାର୍ଥ ପଥରେ ପରଦୋଷ ଦର୍ଶନଠାରୁ ବଳି କୌଣସି ପାପ ନାହିଁ । ଅନ୍ୟର ଯେଉଁ ଦୋଷଟିର ଚିନ୍ତା ଆମେ ଆମର ମନ ମଧ୍ୟରେ କରିବା, ତାକୁ ବାଣୀ ଦ୍ୱାରା ମଧ୍ୟ କରିବା । ତା'ର ସଂସ୍କାରର ପ୍ରଭାବ ଆମ ଉପରେ ଅବଶ୍ୟ ପଡ଼ିବ; ନ ପଡ଼ି ରହିବ କାହିଁ । ଦର୍ପଣ ସାମନାକୁ ଯେ ଆସିବ, ତହିଁରେ ତା'ର ପ୍ରତିବିମ୍ବ ନିଶ୍ଚୟ

Digitized by srujanika@gmail.com

ପଡ଼ିବ । ସେହିଭଳି ଗୁଣର ମଧ୍ୟ । ଯଦି ଆମେ କା'ର ଗୁଣର ପ୍ରଶଂସା କରିବା ତା'ହେଲେ ସେଇ ଗୁଣ ଆମ ଭିତରକୁ କେବେ ନା କେବେ ଅବଶ୍ୟ ଆସିବ ଏବଂ ଲାଭସ୍ୱରୂପ ତା'ର ପୁଣ୍ୟ ଆମକୁ ମିଳିବ । ସେପରି ଆମେ ଯା'ର ଦୋଷର ବର୍ଣ୍ଣନା କରିବା, ଚିନ୍ତା କରିବା ସେ ଦୋଷ ମଧ୍ୟ କେବେ ନା କେବେ ଆମ ଭିତରକୁ ଆସିବ ଏବଂ ଆମକୁ ସେଇ ପାପର ଭାଗୀଦାର ହେବାକୁ ପଡ଼ିବ । ଜଣେ ସାଧୁଙ୍କୁ ଏକ ସୁନ୍ଦର ବଢ଼ିଆ ଭବନରେ ଦିବ୍ୟ ଆରାମରେ ହୁକ୍କା ଟାଣୁଥିବା ଦେଖି ଜଣେ ସାଧକ ତାଙ୍କର ନିନ୍ଦା କଲେ । ଅନ୍ୟ ଜଣେ ମହାତ୍ମା କହିଲେ—'ଆରେ, ଏମିତି କାହିଁକି କହୁଛ, କେଜାଣି ତମକୁ ବି ଦିନେ ସେହିଭଳି ହେବାକୁ ପଡ଼ିବ ।' କେହି କେହି କହନ୍ତି —'ସତ କହିବାରେ ଦୋଷ କ'ଣ ? ଦୋଷା ବାଚ୍ୟା ଗୁରୋରପି ? ଯେ ପର୍ଯ୍ୟନ୍ତ ଆମେ ନିନ୍ଦିତ ବ୍ୟକ୍ତିମାନଙ୍କର କାର୍ଯ୍ୟର ନିନ୍ଦା କରିବା ନାହିଁ, ସେ ପର୍ଯ୍ୟନ୍ତ ସେମାନେ ସେ କାର୍ଯ୍ୟରୁ ନିବୃତ୍ତ କିଭଳି ହେବେ ? ସମୁଚିତ ଭାବରେ ସମାଜର ବ୍ୟବସ୍ଥା କିପରି ରହିବ ?' ଏ କଥା ଆପଣା ଦୋଷର ସମର୍ଥନ ସ୍ୱରୂପ । ନିନ୍ଦାକରି କିଏ ପାପରୁ ନିବୃତ୍ତ ହୋଇଛି ? ତା'ପରେ, ଯେଉଁମାନେ ଅଧିକାରୀ, ଯେଉଁମାନଙ୍କର ଦଣ୍ଡ ଦେବାର ସାମର୍ଥ୍ୟ ରହିଛି, ସେମାନଙ୍କ ପାଇଁ ତ ଏହା ମଧ୍ୟ କୁହାଯାଇପାରେ, ଯା'ର ସମସ୍ତଙ୍କୁ ଅଭୟ ଦାନ କରି ନ୍ୟସ୍ତ ଦଣ୍ଡ ହୋଇ ପରମାର୍ଥ ପଥ ଆଡ଼କୁ ଆଗେଇବାକୁ ଅଛି, ତା'ର ଅନ୍ୟର ଦୋଷ ଦେଖିବା ଏବଂ ତାକୁ ପ୍ରଚାର କରିବାର ଅବସର କେଉଁଠି ଅଛି ? ଯଦି ସେ ଅନ୍ୟର ଦୋଷ ଦେଖୁଛି, ତା'ହେଲେ ଧରିନେବା କଥା ଯେ ସେ ପରମାର୍ଥ ପଥରେ ପାଦେ ବି ଆଗେଇ ନାହିଁ । ଏହା ଧ୍ରୁବ ସତ୍ୟ, ମୋର ଅନୁଭୂତିର କଥା । ଯେ ଯେଉଁ କଥା ଭାବିବ, ତା'ର ପ୍ରଭାବ ତା' ମନ ଉପରେ ନିଶ୍ଚୟ ପଡ଼ିବ । ଏ ସୃଷ୍ଟି ସଂକଳ୍ପମୟୀ । ତେଣୁ ବୈଦିକ ଋଷିମାନେ ନିତ୍ୟ ବେଦମନ୍ତ୍ର ଦ୍ୱାରା ପ୍ରାର୍ଥନା କରୁଥିଲେ, ମୋର ସଂକଳ୍ପ ଶୁଭ ହେଉ । ଆପଣାର ତ୍ୟାଗ ଓ ବୈରାଗ୍ୟର ମିଥ୍ୟା ଅଭିମାନ ହେତୁ ମୁଁ ଅନ୍ୟର ଯେ ନିନ୍ଦା କଲି, ସେ ସବୁ ମୋ ଭିତରକୁ ଆସିଗଲେ । ଯେଉଁ ଅପରାଧଗୁଡ଼ିକ ନିମନ୍ତେ ମୁଁ ଆପଣାର ବନ୍ଧୁମାନଙ୍କର ଅତ୍ୟଧିକ ଭର୍ତ୍ସନା କଲି, ସେମାନଙ୍କର ବଡ଼ ବଡ଼ ପ୍ରାୟଶ୍ଚିତ୍ତ କରାଇଲି, ସେସବୁ ଅପରାଧର କିଛି ନା କିଛି ଅଂଶ ମୋ ଭିତରକୁ ଆସିଗଲେ । ଯେଉଁମାନଙ୍କର ଦର୍ଶନ ଏବଂ ସ୍ପର୍ଶ ହେତୁ ବ୍ରତଭଙ୍ଗ ହୁଏ, ଅତ୍ୟନ୍ତ ଲଜ୍ଜା, ଦୁଃଖ ଓ ଗ୍ଳାନି ସହିତ ମୁଁ ସ୍ୱୀକାର କରୁଛି ଯେ ସେମାନଙ୍କଠାରୁ ମୁଁ ନିର୍ମୁକ୍ତ ରହିପାରିଲି ନାହିଁ ଏବଂ ମୋର ଚିନ୍ତା ମଧ୍ୟ ସର୍ବଥା ବିଶୁଦ୍ଧ ରହିପାରିଲା ନାହିଁ । ଆପଣା ଶରୀରର ରକ୍ତ ବାହାର କରି ତାଦ୍ୱାରା ସ୍ୱାକ୍ଷର କରି ମୁଁ ସ୍ୱୟଂ ଏବଂ ଆପଣାର ସାଥୀମାନଙ୍କୁ କାମିନୀ କାଞ୍ଚନ ସ୍ପର୍ଶ ନ କରିବାକୁ ପ୍ରତିଜ୍ଞାବଦ୍ଧ ହେଲି ଓ କରାଇଲି ଏବଂ ପରିଶେଷରେ ମୋର ଜୀବନ ଆଡ଼ମ୍ବର ମାତ୍ର ହୋଇ ରହିଗଲା । ଧନ ବିଷୟରେ ମୁଁ କେବେ କଳ୍ପନା ସୁଦ୍ଧା କରି ନ ଥିଲି ଯେ ମୁଁ କେବେ କାହା ନିକଟରୁ ଧନ ଯାଚନା କରିବି ବା ତାହା ନେଇ ଚିନ୍ତା କରିବି, ମାତ୍ର ବର୍ତ୍ତମାନ ଉଭୟ କଥା ହେଉଛି । ମୋତେ ଧନ ନିମନ୍ତେ ସଂକଳ୍ପ ମଧ୍ୟ ନେବାକୁ

Digitized by srujanika@gmail.com

ପଡ଼ୁଛି । ସ୍ୱୟଂ ଛୁଅଁ ନାହିଁ ଅନ୍ୟ ଦ୍ୱାରା ଛୁଆଁଅ । ନିଜେ ରଖନାହିଁ, ଅନ୍ୟଦ୍ୱାରା ରଖାଅ । ଏକା କଥା । ସେଠ୍ ସାହୁକାରମାନେ ବି ଅଣ୍ଟାରେ ବାନ୍ଧି ବୁଲନ୍ତି ନାହିଁ ବେଙ୍କ୍ ମାନଙ୍କର କୋଷାଧ୍ୟକ୍ଷ ପାଖରେ ଜମା ଦେଇ ଦିଅନ୍ତି । ଏଇ ଦମ୍ଭ ବ୍ରହ୍ମଚର୍ଯ୍ୟ ସମ୍ବନ୍ଧରେ ବି ପ୍ରଯୋଜ୍ୟ, ଏଇଆ ବୁଝ । କେବଳ ମାତ୍ର 'ଅଧିବସାୟ' ମାତ୍ରାରୁ ନିବୃତ୍ତ ହେବା ହିଁ ବ୍ରହ୍ମଚର୍ଯ୍ୟ ନୁହେଁ । ସ୍ମରଣ, ଦର୍ଶନ, ସ୍ପର୍ଶ ଆଦିରୁ ମଧ୍ୟ ନିର୍ମୁକ୍ତ ରହିବା ଉଚିତ୍ । ତାହା ଆଉ ରହୁନାହିଁ । ଏ ବିଷୟ ଏଭଳି ଯେ ସ୍ପଷ୍ଟଭାବରେ କହି ମଧ୍ୟ ହେଉ ନାହିଁ ଏବଂ ପରମାର୍ଥରେ ବିନା କହି କାମ ବି ଚଳୁ ନାହିଁ । ଅତଃ ଶ୍ରେୟସ୍କର ଏଇଆ ଯେ —

'ଅନ୍ୟସ୍ୟ ଦୋଷ ଗୁଣ ଚିନ୍ତନମାଶୁ ତ୍ୟକ୍ତ୍ୱା ।
ସେବାକଥାରସମହୋ ନିତରାଂ ପିବ ତ୍ୱମ୍ ॥'

ଅନ୍ୟର ଦୋଷଗୁଣ ବିଷୟରେ ଚିନ୍ତା କରିବା ତ୍ୟାଗକରି ନିରନ୍ତର ସେବା-କଥାର ରସପାନରେ ଲାଗିଯାଅ । ଯଦି କୌଣସି ପ୍ରକାରେ ତାହା ହେଉ ନାହିଁ, ତା'ହେଲେ କେବଳ ମାତ୍ର ଗୁଣ ଦେଖ । ଦୋଷର ଉପେକ୍ଷା କର । ଏହା ସମ୍ଭବ ନୁହଁ ଯେ କାହା ଭିତରେ କୌଣସି ଗୁଣ ନ ଥିବ । ଯଦି ଆମର ବୃତ୍ତି ଗୁଣ ଦେଖିବାରେ ଲାଗିଯିବ, ତେବେ ସବୁଥିରେ କିଛିନା କିଛି ଗୁଣ ହିଁ ଦିଶିବ । ଦୋଷ ଦେଖିବାର ସ୍ୱଭାବ ହୋଇଗଲେ ଏଭଳି କିଛି ଦେଖାଯିବ ନାହିଁ ଯେଉଁଠି ଦୋଷ ନାହିଁ । ଗୁଣ ଅପେକ୍ଷା ଦୋଷର ପ୍ରଭାବ ଅଧିକ ପଡ଼େ । ପୁଣ୍ୟକର୍ମ ଅପେକ୍ଷା ପାପକର୍ମର ପ୍ରଭାବ ଶୀଘ୍ର ବଢ଼େ । ସହସ୍ର ବର୍ଷ ତପ କର, ବ୍ରହ୍ମଚର୍ଯ୍ୟ ପାଳନ କରି ରହ, ମୁହୂର୍ତ୍ତିକ ମଧ୍ୟରେ ବ୍ରହ୍ମହତ୍ୟା, ସୁରାପାନ ଅଥବା ଗୁରୁପତ୍ନୀ ଗମନ ଭଳି ମହାପାତକ ହେଲା, ସେଇଠି ସବୁ ପୁଣ୍ୟ ଶେଷ । ପାପ ତ ମୁହୂର୍ତ୍ତିକ ମଧ୍ୟରେ ହେଲା ତାକୁ ଭୋଗ କରିବାକୁ କେତେ ଯୁଗ, ଲକ୍ଷ କୋଟି ବର୍ଷ ଦରକାର । ଆମେମାନେ ଅଭିମାନବଶତଃ କହୁଁ—'ଆମେ ପାପୀ-ମାନଙ୍କର, ଦୁରାତ୍ମାମାନଙ୍କର ନିନ୍ଦା ଏହେତୁ କରିଥାଉଁ, ଯେପରି ସେ ଦୋଷ ଆମ ଭିତରକୁ ନ ଆସୁ । ଏଇ ବିଷ୍ୱର ଦ୍ୱାରା ପ୍ରେରିତ ହୋଇ ମୁଁ ମଧ୍ୟ ନିନ୍ଦା କରୁଥିଲି, କରୁଛି । କିନ୍ତୁ ଏହା ମୁହଁ ଉପରେ ଚଟକଣି ମାରି ଲାଲ କଲାଭଳି । ନିଜ ମୁହଁରେ ନିଜେ କସିକରି ଚଟକଣି ମାରିଲେ ମୁହଁ କିଛି ସମୟ ପାଇଁ ନିଶ୍ଚୟ ଲାଲ ହୋଇଯିବ, ମାତ୍ର ତାହା ମୁହୂର୍ତ୍ତିକର ଲାଲିମା । ତା'ର ପୀଡ଼ା ରହିବ । ସେ ଭଳି ମନ୍ଦ ଲୋକଙ୍କର ଭଲକରି ନିନ୍ଦା କରାଯାଉ, ତା'ହେଲେ କିଛି ସମୟ ପାଇଁ ସେଥିପ୍ରତି ଅବଶ୍ୟ ଘୃଣା ଜାତ ହେବ, ମାତ୍ର ତା'ର ସଂସ୍କାର ଆମ ମନରେ ରହିଯିବ ଏବଂ ଅବସର ପାଇଲା ମାତ୍ରକେ ତାହା ପ୍ରକଟିତ ହେବ । ପୃଥିବୀ ଉପରେ ଅନେକ ପ୍ରକାରର ବୀଜ ପଡ଼ି ରହିଥାଏ, ଯାହା ଦେଖାଯାଏ ନାହିଁ । ଚୈତ୍ର ବୈଶାଖରେ ଉଷ୍ଣତା ହେତୁ ସର୍ବତ୍ର ସ୍ୱଚ୍ଛ ଦେଖାଯାଏ । ଯେଉଁଠି ବର୍ଷା ହେଲା, ଅନୁକୂଳ ଅବସର ଆସିଲା, ସେଠାରେ ବୀଜ

Digitized by srujanika@gmail.com

ଅଙ୍କୁରିତ ହୋଇ ଉଠିଲା ଏବଂ ତାହା ଭଳି ଅନେକ ବୀଜ ଉତ୍ପନ୍ନ କଲା । ମନଦ୍ୱାରା ମନ ନଷ୍ଟ ହୁଏ ନାହିଁ । ଆମର ଚିନ୍ତନ ହିଁ ଭଜନ, ଆମେ ଯାହା ଭାବୁଁ ସତରେ ଯେଉଁପରି ତାହା ହିଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଁ । ମରି ଆମେ ସେହି ଲୋକ ପ୍ରାପ୍ତ ହେବା ଯାହା ଏ ଜନ୍ମରେ ପ୍ରାପ୍ତ ହୋଇ ସାରିଥିବା । କୁଣ୍ଡଳିନୀ ଯୋଗର ମତ ଅନୁସାରେ ଆମର ଶରୀରରେ ଷଡ଼ଚକ୍ର ରହିଛି । ଯହିଁ ଚକ୍ରମାନଙ୍କରେ ଭିନ୍ନ ଭିନ୍ନ ବର୍ଣ୍ଣ, ଦେବତା ଏବଂ ଲୋକାଦିର କଳ୍ପନା କରାଯାଇଛି । ସେଇ ଶାସ୍ତ୍ରର ବିଶେଷଜ୍ଞମାନଙ୍କର ମତ ଯେ ଆମେ ଏଠାରେ ଯେଉଁ ସ୍ଥିତି ପ୍ରାପ୍ତ ହେବା, ତାହା ହିଁ ଆମକୁ ସେଠାରେ ମିଳିବ । ଯାହା ଉତ୍ପାଦନ କରିବା ତାହା ହିଁ ଖାଇବା । କେଉଁ ଗତି ପ୍ରାପ୍ତ ହେବା ସହଜରେ ଆମେ ଆମର ମନର ବିଚାର ଦ୍ୱାରା ଜାଣି ପାରିବା । ଯେଉଁମାନେ ନିରନ୍ତର ଘର, ଦ୍ୱାର, କୁଟୁମ୍ବ ପରିବାର ଆଦି କଥା ଚିନ୍ତା କରୁଥାନ୍ତି ତାଙ୍କୁ ପୁଣି ଏଠାକୁ ଫେରିଆସି ସେହି ସେହି ବସ୍ତୁ ପ୍ରାପ୍ତ ହେବେ । ଯେଉଁମାନେ ନିରନ୍ତର ସ୍ତ୍ରୀ ପ୍ରତି ଆସକ୍ତ ହୋଇ ରହିଥାନ୍ତି ତାଙ୍କୁ ତାହା ହିଁ ପ୍ରାପ୍ତ ହେବ । ଯେ ଧର୍ମର ସେବନ କରେ ଏବଂ ମନ ମଧ୍ୟରେ ଧର୍ମର ଚିନ୍ତା ହିଁ କରୁଥାଏ, ତାକୁ ସ୍ୱର୍ଗାଦି ଧର୍ମଲୋକ ପ୍ରାପ୍ତ ହେବ । ଯେ ଶୂନ୍ୟର ଭାବନା କରେ ସେ ଶୂନ୍ୟରେ ବିଲୀନ ହେବ । ଯେ ନିରନ୍ତର ଭଗବତ୍ ଚିନ୍ତାରେ ନିମଗ୍ନ ରହିଛି ତାକୁ ଭଗବତ୍ ଲୋକ ପ୍ରାପ୍ତ ହେବ । ଜ୍ୟୋତିଷକୁ ବାହାରେ ପଚାରିବାର କୌଣସି ଆବଶ୍ୟକତା ନାହିଁ । ଆପଣାର ମନକୁ ହିଁ ଦେଖ ସେଥିରୁ ଆମକୁ ଆମର ସ୍ଥିତି ସମ୍ବନ୍ଧରେ ଜଣା ପଡ଼ିଯିବ । ଅନେକ ସାଧକ ଚିରକାଳ ସାଧନା କରନ୍ତି, ସେମାନଙ୍କୁ ସେମାନଙ୍କର ମନ ବିଷୟକିଛି ଜଣାପଡ଼େ ନାହିଁ । ମନର ମନନ କରାଯାଉ, ଆପଣାର ବିଚାର, କାର୍ଯ୍ୟ ପ୍ରତି ନିରନ୍ତର ଧ୍ୟାନ ରହୁ, ତା'ହେଲେ ଆପଣା ମନର ସ୍ଥିତି ଜଣାଯିବ । ପୂର୍ବଜନ୍ମର ସଂସ୍କାର ଫଳରେ ମୁଁ ଅତ୍ୟନ୍ତ ଶ୍ରେଷ୍ଠ ବୟସରେ ଭଗବାନଙ୍କର ସେବା ପୂଜାରେ ପ୍ରବୃତ୍ତ ହୋଇ ରହିଥିଲି । ଗାଆଁ ଛାଡ଼ି ଯେତେବେଳେ ନଗରକୁ ଆସିଲି, ସେତେବେଳେ ମୋତେ ଜଣେ ଆର୍ଯ୍ୟ ସମାଜୀ ବନ୍ଧୁଙ୍କର ସାହଚର୍ଯ୍ୟ ପ୍ରାପ୍ତ ହେଲା । ସେ ଉନ୍ନତି ସମ୍ବନ୍ଧରେ ଏଭଳି ବକ୍ତୃତା ଦେଲେ ଯେ ମୋର ହୃଦୟ ଅଶେଷ ପ୍ରଭାବିତ ହେଲା । ମୋର ବିଚାରରେ ମଧ୍ୟ ସମାଜତ୍ତ୍ୱ ଆସିଗଲା । ମୋର ଠାକୁର ପୂଜା ସେବା ସବୁ ଗଲା । ସେତିକି ନୁହେଁ, ମୁଁ ଭଗବାନଙ୍କର ସେବା ପୂଜାର ଖଣ୍ଡନ କରିବାକୁ ଲାଗିଲି । ସେତେବେଳ ପର୍ଯ୍ୟନ୍ତ ମୁଁ ପୁରାଣ ଆଦି ପଢ଼ି ନ ଥିଲି, କୌଣସି ଋଷିଙ୍କର କଥା ଏଣୁ ତେଣୁ ଶୁଣିଲି, ଖଣ୍ଡନ କଲି । ଋଷି କ'ଣ ? ବ୍ୟଭିଚାରୀ, ଯେଉଁମାନେ ଆପଣା ମନକୁ ଏତେ ଟିକିଏ ବି ରୋକି ନେଇପାରନ୍ତି ନାହିଁ । ଟିକିଏ କଥାରେ ଖସି ପଡ଼ନ୍ତି । ଏ 'ମଦ' ଅଧିକ ନୁହେଁ, ତିନିବର୍ଷ ପ୍ରାୟ ରହିଲା । ସେତେବେଳେ ଜେଲ୍‌ରେ ମନନ କରିବାର ଅବକାଶ ଆସିଲା, ସେତେବେଳେ ଭୁଲ୍ ବୁଝିପାରିଲି । ବର୍ତ୍ତମାନ ତ ମୋର ଜୀବନର ଆଧାର ହେଉଛି ପୁରାଣ । ଈଶ୍ୱରତୁଲ୍ୟ ଋଷିମାନଙ୍କର ଯେଉଁ ନିନ୍ଦା କରିଛି, ତା'ର ଫଳ ଭୋଗ କରୁଛି । ମୁଁ ମୋର ମନ ଉପରେ, ସଂକଳ୍ପ ଉପରେ, ଇଚ୍ଛା

Digitized by srujanika@gmail.com

ଶବ୍ଦ ଉପରେ ଅଧିକାର ରଖିପାରି ନାହିଁ, ଯେତେ ବିଗ୍ରହ କରୁଛୁ, ଆପଣାକୁ ସେତିକି ପତନ ଆଡ଼କୁ ଆଗଉଥିଲା ଭଳି ମନେ କରୁଛୁ । ଏଇ ଏକମାତ୍ର ଭରସା ଯେ ଭଗବାନ ଆପଣାର ପାବନ ଚରଣମାନଙ୍କ ବିଷୟରେ ଲେଖେଇବାର ଅବସର ପ୍ରଦାନ କରୁଛନ୍ତି ।

କେତେକ କହନ୍ତି—'ଆରେ ଚିନ୍ତନରୁ କ'ଣ ମିଳିବ । କଳିଯୁଗରେ ମାନସ-ପାପ ବୋଲି କିଛି ନାହିଁ ।' କିନ୍ତୁ ମାନସ-ପାପ ତାହା ଯା'ର ମନ ମଧ୍ୟରେ ଉଦୟ ହୋଇ ସେହି ମନ ମଧ୍ୟରେ ବିଳୟ ହେଲା । ନା ଜ୍ଞାନେନ୍ଦ୍ରିୟମାନଙ୍କରେ ତା'ର ଉଦୟ ହେଲା ନା କାମେନ୍ଦ୍ରିୟମାନେ ତା ପାଇଁ କିଛି କାର୍ଯ୍ୟ କଲେ । ଆମେ ଜଣକୁ ନେତ୍ର ଦ୍ୱାରା ଦେଖୁଁ, ବାଣୀଦ୍ୱାରା କହୁଁ, କରଦ୍ୱାରା ସ୍ପର୍ଶ କରୁଁ । ତାହା ମାନସ-ପାପ ତ ନୁହେଁ । ଆମେ ମୌନ ରହି ମଧ୍ୟ ନିନ୍ଦାରୁ ବର୍ତ୍ତିପାରିବା ନାହିଁ । ଯଦି ଏଥିରୁ କୌଣସିମତେ ମୁକ୍ତ ହୋଇପାରିବା, ବାହାରକୁ ନ ଦେଖି ଆପଣାକୁ ଦେଖି ପାରିବା, ବାହାର ଲୋକଙ୍କର ଦୋଷ ନ ଦେଖି ଆପଣାର ଦୋଷ ଖୋଜିବା, ତା'ହେଲେ ଆମେ ପରମାର୍ଥ ପଥରେ ଆଗେଇ ପାରିବା । ଏ ସୃଷ୍ଟି ସଂକଳ୍ପମୟୀ । କଳ୍ପବୃକ୍ଷ ତଳେ ଶୁଭ ସଂକଳ୍ପ କର, ସେ ତୁରନ୍ତ ମୂର୍ତ୍ତିମନ୍ତ ହେବେ । ଅଶୁଭ ସଂକଳ୍ପକର ତେବେ ମଧ୍ୟ ହେବେ । ଜ୍ଞାତସାରରେ, ଅଜ୍ଞାତରେ ଯେପରି ବି ସଂକଳ୍ପ ହେଉ, ତାହା ବ୍ୟର୍ଥ ହେବ ନାହିଁ । ଭାବ-ଭୋଜନ ଆସୁ ।' ଆସିଗଲା । ଭାବ, ସିଂହ ଆସୁ ଓ ମୋତେ ଖାଇଯାଉ । ଆସିଲା, ଖାଇଗଲା । ସଂସାରରେ ବି ଏଇଆ ଅଛି । ସୃଷ୍ଟି ସଂକଳ୍ପ ଦ୍ୱାରା ଚାଲିଛି । ବଡ଼ରୁ ବଡ଼ ପଦରେ ପ୍ରତିଷ୍ଠିତ ହୋଇ ମଧ୍ୟ ଟିକିଏ ମାତ୍ର ଅସତ୍ ସଂକଳ୍ପ ଦ୍ୱାରା ପ୍ରାଣୀ ପତିତ ହୋଇଯିବ । ଏହି ପ୍ରସଙ୍ଗରେ ଏକ ସୁନ୍ଦର କଥା, ଯେଉଁଦିନ ଏଠାରେ ଶରଦୋତ୍ସବ ପାଳିତ ହୋଇଥିଲା, ସେଦିନ ପୂଜ୍ୟପାଦ ଶ୍ରୀହରି ବାବାଜୀ ଶୁଣେଇଥିଲେ । ସେଥିରୁ ବିଦିତ ହେବ ଯେ ଉତ୍ତମ ଲୋକରେ ବି ଯଦି ଅସତ୍ ସଂକଳ୍ପ ହୁଏ, ତେବେ ତତ୍କାଳିକ ଫଳ ଭୋଗ କରିବାକୁ ପଡ଼େ । କଥାଟି ହେଲା—

ଗୋଟିଏ ରାଜସଭାରେ ଜଣେ ସନ୍ନ୍ୟାସୀ ଉପସ୍ଥିତ ହେଲେ । ସନ୍ନ୍ୟାସୀଙ୍କ ପାଖରେ ପିଞ୍ଜରାରେ ପକ୍ଷୀଟିଏ ଥିଲା । ରାଜା ଆସନରୁ ଉଠି ସନ୍ନ୍ୟାସୀଙ୍କର ଆଦର ଅଭ୍ୟର୍ଥନା କରି ପଚାରିଲେ—'ମହାରାଜ, ଆପଣ ସନ୍ନ୍ୟାସୀ ହୋଇ ମଧ୍ୟ ଏ ପକ୍ଷୀଟିକୁ ନେଇ କାହିଁକି ବୁଲୁଛନ୍ତି ? ଏ ପକ୍ଷୀଟି ଭିତରେ କ'ଣ ବିଶେଷତ୍ୱ ଅଛି ?'

ସନ୍ନ୍ୟାସୀ କହିଲେ —'ଏ ପକ୍ଷୀ ସ୍ୱୟଂ ଆପଣା କଥା କହିବ ।'

ରାଜା ଏହା ଶୁଣି ପକ୍ଷୀକୁ କହିଲେ—'ହେ ପକ୍ଷୀରୂପୀ ଦେବି, ଯଦି ଆପଣ ଆପଣଙ୍କର ବୃତ୍ତାନ୍ତ ଶୁଣେଇବାକୁ ସମର୍ଥ, ତା'ହେଲେ ଆମ ସମସ୍ତଙ୍କୁ କହନ୍ତୁ ।'

ଏହା ଶୁଣି ପକ୍ଷୀଦେବୀ ମନୁଷ୍ୟ ଭାଷାରେ କହିଲେ—'ରାଜନ୍ ! ମୁଁ ଆପଣଙ୍କୁ ମୋର କାହାଣୀ ଶୁଣାଉଛି । ପୂର୍ବକାଳରେ ଯେତେବେଳେ ଭଗବାନ ବୁଦ୍ଧ ବୋଧିଦ୍ରୁମ

Digitized by srujanika@gmail.com

ତଳେ ବୁଦ୍ଧତ୍ତ୍ୱ ପ୍ରାପ୍ତି ନିମନ୍ତେ ଘୋର ତପସ୍ୟା କରୁଥିଲେ, ସେତେବେଳେ ବୋଧିଗୟା ସମୀପରେ ଜଣେ ଭୂମିପତି ରାଜା ଥିଲେ । ତାଙ୍କର ପତ୍ନୀଙ୍କର ନାମ ସୁଜାତା । ସେମାନଙ୍କର କୌଣସି ସନ୍ତାନ ସନ୍ତତି ନ ଥିଲେ । ରାଣୀ ସୁଜାତା ବନଦେବତାଙ୍କୁ ପ୍ରାର୍ଥନା କଲେ, 'ମୋର ପୁତ୍ର ହେଲେ ମୁଁ ଆପଣଙ୍କର ବିଧିବଦ୍ଧ ପୂଜା କରିବି ।' ବନଦେବତାଙ୍କ କୃପାରୁ ତାଙ୍କର ଏକ ପୁତ୍ର ଜାତ ହେଲା । ସେ ଅତି ଉତ୍ତମ ସ୍ୱାଦିଷ୍ଟରୁ ସ୍ୱାଦିଷ୍ଟ ପାୟସ ନେଇ ବନଦେବତାଙ୍କର ପୂଜା କରୁଥିଲେ । ରାଜାଙ୍କର ସହସ୍ର ସହସ୍ର ଗାଈ ଏବଂ ସହସ୍ରାଧିକ କୃଷିକ୍ଷେତ୍ର ଥିଲା । ସେ ସୁନ୍ଦର ଉତ୍ତମ ଧରଣର ଧାନ ଅଣେଇ ପାଞ୍ଚଶତ କ୍ଷେତରେ ବୁଣେଇଲେ । ସେଥିରୁ ଯେଉଁ ଫସଲ ହେଲା, ତାର ମଧ୍ୟରୁ ଦୁଇଶ ପଚିଶ ଧରଣର ଉତ୍ତମ ବୀଜ ବାଛି ଅନ୍ୟ କ୍ଷେତରେ ସେଭଳି ଶହେ, ପଚିଶ କରି ପରିଶେଷରେ ଅତ୍ୟନ୍ତ ଉତ୍ତମ ବୀଜ ଗୋଟିଏ ମାତ୍ର କ୍ଷେତରେ ବୁଣାଇଲେ । ସାରାଂଶ ହେଲା ତାହା ସର୍ବୋତ୍ତମ ଚାଉଳ । ସେହିପରି ସୁନ୍ଦର ସୁନ୍ଦର ନିରୋଗ, ଅଧିକ ଦୁଗ୍ଧବତୀ ପାଞ୍ଚଶତ ଗାଈମାନଙ୍କୁ ମିଠା ମିଠା କଅଁଳ ଘାସ ଓ ପଲ୍ଲବିତ ଲତା ଖାଇବାକୁ ଦେଲେ, ଯେପରିକି ତାଙ୍କର ଦୁଧ ମିଠା ହେବ । ସେମାନଙ୍କୁ ଦୁହିଁ ଏକଶତ ଗାଈଙ୍କୁ ପାନ କରାଇ, ଜଳ ସ୍ଥାନରେ ଦୁଗ୍ଧ ଦେଲେ; ଯେପରି ସେମାନଙ୍କର କ୍ଷୀର ଅତ୍ୟଧିକ ସ୍ୱାଦିଷ୍ଟ ଓ ବହଳ ହେବ । ସେହି ଏକଶତ ଗାଈଙ୍କର କ୍ଷୀର ପଚିଶ ଜଣଙ୍କୁ, ସେଇ ପଚିଶଙ୍କର ପାଞ୍ଚଜଣଙ୍କୁ ଦେଲେ, ଯେପରି ସେଇ ପାଞ୍ଚୋଟି ଗାଈଙ୍କର କ୍ଷୀର ଅମୃତତୁଲ୍ୟ ହେବ । ତାହା ହିଁ ହେଲା । ସେଇ ଚାଉଳ ଓ ଦୁଧରେ ବନଦେବତାଙ୍କର ପୂଜା ନିମନ୍ତେ ପ୍ରେମଯୁକ୍ତା ହୋଇ ସୁଜାତା ନିଜେ ପାୟସ ପ୍ରସ୍ତୁତ କରନ୍ତି । ସୁବର୍ଣ୍ଣ ପାତ୍ରରେ ଧରି ନିଜେ ଷୋଡ଼ଶ ଶୃଙ୍ଗାରରେ ମଣ୍ଡି ହୋଇ ବନଦେବତାଙ୍କର ପୂଜା ଉଦ୍ଦେଶ୍ୟରେ ବାହାରିଲେ । ପ୍ରଥମେ ଦାସୀକୁ ପଠେଇଲେ ଯେମିତି ସେ ବନଦେବତାଙ୍କର ମନ୍ଦିରକୁ ଓଲେଇ ସଫା ସୁତୁରା କରି ରଖିବ ।

ବୋଧିଦ୍ରୁମ ନିକଟରେ ହିଁ ଏକ ଜୀର୍ଣ୍ଣଶୀର୍ଣ୍ଣ ପ୍ରାଚୀନ ବନଦେବତାଙ୍କର ମନ୍ଦିର ଥିଲା । ଦାସୀ ସେଇ ମନ୍ଦିରକୁ ଯେତେବେଳେ ସ୍ୱଚ୍ଛ କରି ବସିଲା, ସେତେବେଳେ ସମ୍ମୁଖରେ ପଦ୍ମାସନରେ ତପସ୍ୟାରତ ଭଗବାନ ବୁଦ୍ଧଙ୍କୁ ଦେଖିଲା । ଭଗବାନ ବୁଦ୍ଧ ରାଜକୁମାର ପରମ ସୁନ୍ଦର, ଯୁବା ଏବଂ ଘୋର ତପସ୍ୟା ଫଳରେ ତାଙ୍କର ସଂପୂର୍ଣ୍ଣ ଶରୀରରୁ ଦୈବୀ ତେଜ ଫୁଟି ପଡ଼ୁଥିଲା । ସେ ଆସନ ଲଗେଇ ନିଶ୍ଚଳ ଭାବରେ ବିରାଜିତ ହୋଇଥିଲେ । ଦାସୀ ଦେଖି ଆଶ୍ଚର୍ଯ୍ୟ ଚକିତ ହେଲା ଏବଂ ସେ ରାଣୀ ସୁଜାତାଙ୍କ ନିକଟକୁ ଦଉଡ଼ି ଦଉଡ଼ି ଯାଇ ଊର୍ଦ୍ଧ୍ୱଶ୍ୱାସ ହୋଇ କହିଲା—'ମହାରାଣୀ, ଆପଣ ଅଶେଷ ଭାଗ୍ୟବତୀ । ଆପଣଙ୍କ ଭକ୍ତିଭାବରେ ପ୍ରସନ୍ନ ହୋଇ ବନଦେବତା ମୂର୍ତ୍ତିମନ୍ତ ହୋଇ ମନ୍ଦିର ବାହାରେ ବିରାଜମାନ କରିଛନ୍ତି ।'

ଏହା ଶୁଣି ସୁଜାତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ପ୍ରୀତି-ପାଗଳିନୀ ହୋଇ ସ୍ନେହପୂର୍ଣ୍ଣ ହୃଦୟରେ ସୁବର୍ଣ୍ଣ ପାତ୍ରରେ ପାୟସ ନେଇ ଉପସ୍ଥିତ

Digitized by srujanika@gmail.com

ହେଲେ । ଭଗବାନ ବୁଦ୍ଧ ଧ୍ୟାନମଗ୍ନ ଥିଲେ । ସୁଜାତା ଦେବୀ ଗୋଟିଏ ପାଦରେ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ରହିଲେ । କିଛି ସମୟ ପରେ ଭଗବାନ ବୁଦ୍ଧ ଆଖି ଖୋଲି ଦେଖିଲେ, ଦେବୀ ସୁଜାତା ପୂଜା ସାମଗ୍ରୀ ଧରି ଠିଆହୋଇ ରହିଛନ୍ତି ।

ଭଗବାନ କହିଲେ—'ତୁମେ କିଏ ? କାହିଁକି ଠିଆ ହୋଇଛ !'

ସୁଜାତା କହିଲେ—'ହେ ବନଦେବତା, ଆପଣଙ୍କର କୃପାରୁ ମୁଁ ପୁତ୍ରବତୀ ହୋଇଛି । ମୁଁ ଆପଣଙ୍କର ଆରାଧନା କରିବାକୁ ଚାହୁଁଛି ।'

ଭଗବାନ କହିଲେ—'ଦେବି, ମୁଁ ଦେବତା ନୁହେଁ । ମୁଁ ତୁମ ଭଳି ଜଣେ ମନୁଷ୍ୟ ।'

ଅତ୍ୟନ୍ତ ବିନୀତ ଭାବରେ ସୁଜାତା କହିଲେ—'ପ୍ରଭୁ ! ଆପଣ ଯେ କେହି ବି ହୁଅନ୍ତୁ ନା କାହିଁକି ମୋତେ ପୂଜା କରିବାକୁ ଦିଅନ୍ତୁ ।'

ଶ୍ରଦ୍ଧା ଭକ୍ତିର ପରାକାଷ୍ଠା ଥିଲେ ସମସ୍ତେ ବିବଶ ହୋଇ ଯାଆନ୍ତି । ଭଗବାନ ପୂଜା ନିମନ୍ତେ ସମ୍ମତି ପ୍ରଦାନ କଲେ । ସୁଜାତା ବିଧିପୂର୍ବକ ଭଗବାନଙ୍କର ଆରାଧନା କଲେ । ପାୟସ ଅର୍ପଣ କଲେ । ଭଗବାନ ମଧ୍ୟ କ୍ଷୁଧାର୍ତ୍ତ ଥିଲେ । ଅନେକ ଦିନରୁ ସେ ଆହାର ତ୍ୟାଗ କରିଥିଲେ । ନଦୀତଟରେ ବସି ସେ ପାୟାସ ଖାଇ ସୁବର୍ଣ୍ଣ ପାତ୍ର ସେଇଠାରେ ଫିଙ୍ଗି ଆସିଲେ । ଖାଇ ସାରିବା ପରେ ସେ ପୁନଶ୍ଚ ଆସନ ଉପରେ ବିରାଜମାନ କଲେ । ସୁଜାତାଙ୍କର ନେତ୍ର ଭଗବାନଙ୍କର ଦର୍ଶନରେ ତୃପ୍ତ ହେଉ ନ ଥିଲା । ସେ ଅପଲକ ନେତ୍ରରେ ଭଗବାନଙ୍କୁ ଚାହିଁ ରହିଥିଲେ । ସେ ଆଶ୍ଚର୍ଯ୍ୟ ଚକିତ ନେତ୍ରରେ ଦେଖିଲେ, ଭଗବାନଙ୍କ ଶ୍ରୀଅଙ୍ଗରୁ ଦିବ୍ୟଜ୍ୟୋତି ପ୍ରକଟିତ ହେଉଛି, ଯାହା ପୃଥିବୀରୁ ଆକାଶ ପର୍ଯ୍ୟନ୍ତ ଏକ ଦିବ୍ୟ ସୁବର୍ଣ୍ଣମୟ ବୃତ୍ତର ଆକାରରେ ପରିଣତ ହୋଇଯାଇଛି । ସୁଜାତା ସେହି ଦିବ୍ୟ ପ୍ରକାଶମୟ ବୃତ୍ତର ଦର୍ଶନ କରି ଆନନ୍ଦ ବିଭୋର ହୋଇ ଉଠିଲେ । ସେ ଏତେ ଆନନ୍ଦିତା, ଏତେ ଆହ୍ଲାଦିତା ହେଲେ ଯେ ତାହା ସହନ କରିବା ତାଙ୍କର ଶରୀର ପକ୍ଷରେ ସମ୍ଭବ ହେଲା ନାହିଁ । ସୁଜାତାଙ୍କର ସେଠାରେ ହିଁ ଶରୀରପାତ ହେଲା ।

ପକ୍ଷୀରୂପିଣୀ ଦେବୀ ରାଜାଙ୍କୁ କହିଛନ୍ତି—'ରାଜନ୍, ସେ ସୁଜାତା ଆଉ କେହି ନୁହେଁ, ମୋର ନାମ ହିଁ ସୁଜାତା ଥିଲା । ସେଇ ଦିବ୍ୟ ତେଜର ଦର୍ଶନାନନ୍ଦରେ ତନୁ ତ୍ୟାଗ କରିଥିବା ହେତୁ ମୋତେ ତୁଷିତ ନାମକ ଦିବ୍ୟଲୋକ ପ୍ରାପ୍ତି ହୋଇଥିଲା । ସେହି ଆନନ୍ଦମୟ ଦିବ୍ୟଲୋକରେ ମୁଁ ଦିବ୍ୟ ଶରୀରରେ ସହସ୍ର ବର୍ଷ ପର୍ଯ୍ୟନ୍ତ ଆନନ୍ଦ ଅନୁଭବ କରି ରହିଥିଲି । ସେଠାରେ ମଧ୍ୟ ମୋର ସୂକ୍ଷ୍ମ ଅ◌ମାନର ଅବଶେଷ ରହିଥିଲା । ଦିନେ ମୁଁ ସେଠାରେ ଭଗବାନଙ୍କର ଦିବ୍ୟ ଜ୍ୟୋତିର ସ୍ମରଣ କଲି । ମୁଁ

Digitized by srujanika@gmail.com

ଦେଖିଲି ଭଗବାନ ବୁଦ୍ଧଙ୍କର ଶରୀରରୁ ତେଜପୁଞ୍ଜ ବିଚ୍ଛୁରିତ ହୋଇ ବୃକ୍ଷରେ ପରିଣତ ହୋଇଯାଇଛି ଏବଂ ତାହା ଉପରେ ଦିବ୍ୟ ପକ୍ଷୀଟିଏ ବସିଛି । ମୋର ଦୃଷ୍ଟି ସେହି ପକ୍ଷୀଟି ଉପରେ ନିବଦ୍ଧ ହୋଇ ରହିଲା । ଚିତ୍ତର ସାମାନ୍ୟତମ ବୃତ୍ତି ପକ୍ଷୀଟି ଉପରେ କେନ୍ଦ୍ରିତ ହେବା ଫଳରେ ମୋର ସେହି ଦିବ୍ୟଲୋକରୁ ପତନ ହୋଇଛି ଏବଂ ମୋତେ ଏ ପକ୍ଷୀ ଯୋନି ପ୍ରାପ୍ତ ହୋଇଛି । ମାତ୍ର ପୁଣ୍ୟର ପ୍ରଭାବରୁ ସୌଭାଗ୍ୟବଶତଃ ମୁଁ ପକ୍ଷୀ ସଦୃଶ ହେଲି ବ୍ରଜମଣ୍ଡଳରେ ହେଲି । ଯେଉଁ ମାତା ମୋତେ ଜନ୍ମ ଦେଲେ, ତାଙ୍କର ନୀଡ଼ ଯମୁନା ତଟରେ ଏକ ସଘନ ବୃକ୍ଷ ଉପରେ ଥିଲା । ମୁଁ ସେଠାରେ ମୋର ମାତାଙ୍କସହିତ ବାସ କରିବାକୁ ଲାଗିଲି । ମାତା ଏଠାରୁ ସେଠାରୁ ଅନ୍ନ କ'ଣ ସଂଗୃହୀତ କରି ଆଣନ୍ତି ଓ ମୋତେ ଆହାର ପ୍ରଦାନ କରନ୍ତି ।

ଯେଉଁ ବୃକ୍ଷ ଉପରେ ଆମର ନୀଡ଼ ଥିଲା, ସେଇ ବୃକ୍ଷ ମୂଳରେ ବାନରମାନଙ୍କର ଶ୍ମଶାନ ଘାଟ ଥିଲା । ଯେଉଁ ବାନର ମରୁଥିଲା, ଅନ୍ୟ ବାନରମାନେ ତାକୁ ଆଣି ସେହିଠାରେ ଅନ୍ତିମ ସଂସ୍କାର କରୁଥିଲେ । ସେ ସମୟରେ ମଧ୍ୟ ଗୋଟିଏ ବାନରର ମୃତ୍ୟୁ ହେଲା । ଅନ୍ୟ ବାନରମାନେ ତାକୁ ଆଣିଲେ । ପରସ୍ପର ଦୁଇଟି ପାଷାଣ ଘଷି ସେମାନେ ଅଗ୍ନି ଜାତ କରୁଥିଲେ, ସେଥି ନିମନ୍ତେ କିଛି କୋମଳ ତୃଣ ଆବଶ୍ୟକ ହେଲା । ଗୋଟିଏ ବାନର ଦଉଡ଼ି ଆସି ଆମର ବସା ଭାଙ୍ଗିଦେଲା ଓ ସେଥିରେ ନିଆଁ ଜଳା ହେଲା । ସୌଭାଗ୍ୟବଶତଃ ସେତେବେଳେ ମୁଁ ନୀଡ଼ରେ ନ ଥିଲି । ମୋର ମାତା ମୋତେ ଅନ୍ୟ ଶାଖାରେ ବସେଇ ଭୋଜନ କରାଉଥିଲେ । ଯେତେବେଳେ ଆମର ବସା ଉଜୁଡ଼ିଗଲା, ସେତେବେଳେ ମୋର ମାତା ସେଇ ଶ୍ମଶାନ ଭୂମିରେ ରହିବା ଉଚିତ୍ ମନେକଲେ ନାହିଁ । ସେ ମୋତେ ନେଇ ଶୀଘ୍ର ଶୀଘ୍ର ଉଡ଼ିଗଲେ । ଉଡ଼ି ଉଡ଼ି ମଝିରେ ମଝିରେ ବିଶ୍ରାମ ନେଇ ସେ ପଞ୍ଚନଦ ପ୍ରଦେଶର ଅଟକ ନଦୀତଟରେ ପହଞ୍ଚିଲେ । ସେଠାରେ ନଦୀତଟରେ ଦୁର୍ଗା ଦେବୀଙ୍କର ଏକ ଭବ୍ୟ ମନ୍ଦିର ଥିଲା । ତା'ର ସମୀପରେ ଏକ ସଘନ ଲମ୍ବ ବୃକ୍ଷ ଥିଲା । ମୋର ମାତା ସେହିଠାରେ ନୂତନ ନୀଡ଼ ନିର୍ମାଣ କଲେ । ମୁଁ ସେଠାରେ ସୁଖରେ ରହିବାକୁ ଲାଗିଲି ।

ଦିନେ ମୋର ମାତା ଅନ୍ନ ସଂଗ୍ରହ କରିବାକୁ ଗଲେ, ମାତ୍ର ଫେରିଲେ ନାହିଁ । ମୁଁ ସେତେବେଳେ ଅବୋଧ ଥିଲି । ଯେତେବେଳେ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ମାତା ଫେରିଲେ ନାହିଁ, ମୁଁ ଅତ୍ୟନ୍ତ ଚିନ୍ତିତ ହେଲି । ପ୍ରତି ପଳକ, ପ୍ରତ୍ୟେକ ମୁହୂର୍ତ୍ତ ମୋ ପାଇଁ ଦୁଃସହ ବୋଧହେଲା । ପ୍ରତି ଦିଗକୁ ଘୂରି ତ ମୋର ଆଖି ପଥର ପାଲଟି ଯାଇଥିଲା । ମୁଁ ଅତ୍ୟନ୍ତ କାତର ହୋଇ କାନ୍ଦିବାକୁ ଲାଗିଲି । ଏଭଳି ତିନିଦିନ ବିତିଗଲା । ମୁଁ ଅତ୍ୟନ୍ତ ବିହ୍ୱଳ ହୋଇ କେବଳ ମାତ୍ର ବିଳାପ କରୁଥିଲି । ମୋର ପଥରକୁ ତରଳେଇ ଦେବା ଭଳି କରୁଣ କ୍ରନ୍ଦନ ଶ୍ରବଣ କରି ଦୁର୍ଗାଦେବୀ ଆପଣା ଆସନରେ ସ୍ଥିର ହୋଇ ରହିପାରିଲେ ନାହିଁ । ସେ ଦିବ୍ୟରୂପରେ ପ୍ରକଟିତ ହୋଇ

Digitized by srujanika@gmail.com

ମୋ ନିକଟକୁ ଆସିଲେ । ସେ ତାଙ୍କର ବରଦ ହସ୍ତ ମୋର ମସ୍ତକ ଉପରେ ରଖିଲେ । ଦେବୀଙ୍କର କର ସ୍ପର୍ଶ ମାତ୍ରକେ ମୁଁ ଏକ ପରମ ସୁନ୍ଦରୀ ସୁକୁମାରୀ କୁମାରୀରେ ପରିଣତ ହୋଇଗଲି । ସେତେବେଳେ ଦେବୀ ସ୍ନେହପୂର୍ବକ ମୋତେ କହିଲେ—'ଝିଅ, ତୁ ଚିନ୍ତା କର ନାହିଁ । ତୁ ପକ୍ଷୀ ନୋହୁ, ତୁ ତ ଶ୍ରୀକୃଷ୍ଣଙ୍କର ନିତ୍ୟ ସହଚରୀ, ତୋ ମନରେ କିଛି ଅହଂକାରର ଅଂଶ ଥିଲା, ତାକୁ ହିଁ ନଷ୍ଟ କରିବା ପାଇଁ ତୋତେ ତୋ'ର ସଙ୍କଳ୍ପ ଅନୁସାରେ ପକ୍ଷୀ ଯୋନି ପ୍ରାପ୍ତ ହୋଇଛୁ । ଏଣିକି ତୁ ସାଧନା ଦ୍ୱାରା ସେହି ଅହଙ୍କାରର ବିନାଶ କର ।'

ମୁଁ ବିନୀତ ଭାବରେ କହିଲି—'ମା', ମୁଁ ତ ପକ୍ଷୀ ଯୋନିରେ ଜନ୍ମ ହୋଇଛୁ । ମୁଁ ସାଧନା ଭଜନ କ'ଣ ଜାଣେ ?'

ଦେବୀ କହିଲେ —'ଦେଖ୍, ମୁଁ ତୋତେ କହି ଦେଉଛି । ମୁଁ ତୋତେ ଏକ ଦିବ୍ୟ ମନ୍ତ୍ରର ଉପଦେଶ ଦେଉଛି । ସେହି ନାମର ଉଚ୍ଚାରଣ ତୁ ଅତ୍ୟନ୍ତ ଅନୁରାଗ ସହକାରେ, ପରମ ପ୍ରେମଭାବ ନେଇ, ମଧୁର ବାଣୀରେ, ଲୟ ସହିତ ଏକାଗ୍ର ଚିତ୍ତରେ କରିବୁ । ଅନ୍ୟ ମନ୍ତ୍ରମାନଙ୍କର ଜପ ମନ ମଧ୍ୟରେ କରାଯାଏ; ମାତ୍ର ଏହି ମନ୍ତ୍ର ଉଚ୍ଚାରଣ କରି ଗାନ କରିବୁ । ଏହି ନାମ ଗାୟନ ଫଳରେ ତୋର ଅବଶିଷ୍ଟ ଅଶୁଭ ନଷ୍ଟ ହୋଇଯିବ ଏବଂ ତୁ ଇଷ୍ଟ ବସ୍ତୁ ପ୍ରାପ୍ତହୋଇ ଜନ୍ମ-ମରଣରେ ଚକ୍ରରୁ ସଦା ନିବୃତ୍ତି ପ୍ରାପ୍ତ ହେବୁ । ମନ୍ତ୍ର ଜପରେ ଅନୁରାଗ, ତନ୍ମୟତା ଏବଂ ହୃଦୟୋଲ୍ଲାସ ପ୍ରଧାନ । ଆତ୍ମବିସ୍ମୃତ ହୋଇ ତୁ ଏହି ମନ୍ତ୍ର ଗାନ କରିବୁ ଏବଂ ଦେବୀ କହିଲେ—

'ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ
ହେ ନାଥ ନାରାୟଣ ବାସୁଦେବ ।''

ଏହି ଶ୍ରୁତି ମଧୁର ପରମ ଦିବ୍ୟ ମନ୍ତ୍ରର ଉପଦେଶ ଦେଲେ ଏବଂ କହିଲେ—'ବର୍ତ୍ତମାନ ତୁ ପୁନଃ ବ୍ରଜଭୂମିରେ ଯାଇ ନିବାସ କର ।'

ମୁଁ ହାତ ଯୋଡ଼ି ଦେବୀଙ୍କୁ କହିଲି—'ମା', ମୁଁ ତୁମର ପାଖରେ ରହିବି । ତୁମକୁ ଛାଡ଼ି କୁଆଡ଼େ ଯିବି ନାହିଁ ।'

ଦେବୀ ମୋତେ ଅତ୍ୟନ୍ତ ସ୍ନେହରେ ବୁଝେଇ କହିଲେ—'ଦେଖ୍, ତୁ ମର୍ତ୍ତ୍ୟ-ଲୋକର, କିନ୍ତୁ ମୁଁ ସ୍ୱର୍ଗଲୋକର ଦେବୀ । ତୁ ଏବଂ ମୁଁ କିପରି ଏକାଠି ରହିବା । ତୋର ଶ୍ରେୟ ବ୍ରଜରେ । ତୁ ଇଚ୍ଛା କଲେ ଏହି ମାନବୀ ଶରୀର ରଖିପାରୁ, କିନ୍ତୁ ଯୁବତୀ ସୁନ୍ଦରୀ କନ୍ୟା ରୂପରେ ଅନେକ ବାଧାବିଘ୍ନ ରହିଛି । କାମୀ ପୁରୁଷ ଯୁବତୀ ସୁନ୍ଦରୀକୁ ଏକୁଟିଆ ଦେଖିଲେ ନାନାପ୍ରକାର ବିଘ୍ନ ଉପସ୍ଥିତ କରିବେ । ତେଣୁ ମୋର ସମ୍ମତିକ୍ରମେ ତୁ ପକ୍ଷୀ ରୂପରେ ନିବାସ କର ।' ଏହା କହି ଦୁର୍ଗାଦେବୀ ଅନ୍ତର୍ହିତ ହୋଇଗଲେ । ମୁଁ ପୁନଶ୍ଚ

Digitized by srujanika@gmail.com

ପକ୍ଷିଣୀର ରୂପ ଧାରଣ କଲି । ଭଗବତୀଙ୍କର ପାଦପଦ୍ମରେ ସାଷ୍ଟାଙ୍ଗ ପ୍ରଣାମ କରି, ଅଶ୍ରୁ-ଜଳରେ ତାଙ୍କର ପଦ ପ୍ରକ୍ଷାଳନ କରି ମୁଁ ବ୍ରଜମଣ୍ଡଳ ଅଭିମୁଖେ ଉଡ଼ି ଆସିଲି ।

ଯେଉଁ ବୃନ୍ଦାବନ ଧାମ ପୃଥିବୀର ଭୂଷଣ ଅଟେ । ଯାହା ମାୟିକ ପ୍ରପଞ୍ଚରୁ ସର୍ବଦା ରହିତ, ଯେଉଁଠାରେ ରସିକ ବିହାରୀ ରାସେଶ୍ୱର ଶ୍ରୀକୃଷ୍ଣ ଆପଣାର ନିତ୍ୟ ସହଚରୀମାନଙ୍କ ସହିତ ରାସ-ବିଳାସ କରନ୍ତି, ସେହି ପରମ ଶୋଭାମୟ ଧାମର ଦର୍ଶନ ମାତ୍ରକେ ମୋର ହୃଦୟ ନାଚି ଉଠିଲା । କାଳିନ୍ଦୀର କଳିତ କୂଳ ନିକଟରେ ସ୍ଥିତ ବଂଶୀବଟର ଗୋଟିଏ ଶାଖାରେ ମୁଁ ମୋର ନୀଡ଼ ନିର୍ମାଣ କଲି । ଦିନବେଳେ ତ ଧୀରେ ଧୀରେ 'ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ ।' ମନ୍ତ୍ରର ଜପ କରେଁ; ମାତ୍ର ଯେତେବେଳେ ଅରୁଣୋଦୟ ହୁଏ ମୁଁ ସସ୍ୱର, ଅତ୍ୟନ୍ତ ତାଳଲୟ ରକ୍ଷାକରି ସୁନ୍ଦର ସ୍ୱରରେ ସେହି ମନ୍ତ୍ର ଗାନ କରେଁ । ମୋର ସ୍ୱର ଏତେ ମଧୁର ଥିଲା ଯେ, ଯେ ବି ମୋର ଗୀତ ଶୁଣୁଥିଲା ସେ ମନ୍ତ୍ରମୁଗ୍ଧ ହୋଇ ସ୍ତମ୍ଭିତ ହୋଇଯାଉଥିଲା । ଯମୁନା ସ୍ନାନ କରିବାକୁ ଯେଉଁ ନରନାରୀମାନେ ଆସୁଥିଲେ, ମୋର ସୁମଧୁର ଅଲୌକିକ ଗୀତ ଶୁଣି ସବୁ କାର୍ଯ୍ୟ ଛାଡ଼ି ଚିତ୍ର ପ୍ରତିମା ପରି ଠିଆ ହୋଇ ରହୁଥିଲେ । ପ୍ରତିଦିନ ମେଳା ଭଳି ମନେହୁଏ । କେହି କହେ—'ଏହା ଦିବ୍ୟ ଗାନ ! କିଏ ସ୍ୱର୍ଗୀୟ ବୋଲି କହେ – 'କେଜାଣି କିଏ ଗାଉଛି ।' ମୁଁ ଲୁଚିଛି ଥିଲି । ବଂଶୀବଟର ଶ୍ୟାମଳ ସଘନ ବୃକ୍ଷ ମଧ୍ୟରେ ନୀଡ଼ ଭିତରେ ଏପରି ଲୁଚି ରହୁଥିଲି ଯେ, କାହାରିକୁ ହେଲେ ଦେଖାଯାଉ ନ ଥିଲି । ତା'ପରେ କେହି ଅନୁମାନ ମଧ୍ୟ କରିପାରିବ ନାହିଁ ଯେ ପକ୍ଷୀଟିଏ ମାନବୀ ଭାଷାରେ ଦିବ୍ୟ ଗାନ ଗାଇପାରେ ।

ଦିନେ ମନ୍ତ୍ର ଗାନ କରୁ କରୁ ମୁଁ ତନ୍ମୟ ହୋଇପଡ଼ିଲି । ଶରୀରର ମଧ୍ୟ ବୋଧ ରହିଲା ନାହିଁ । ସେହି ଅଚେତନାବସ୍ଥାରେ ଗାଉ ଗାଉ ମୁଁ ବଂଶୀବଟରୁ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲି । ଏହି ସନ୍ନ୍ୟାସୀ ମହାରାଜ ମଧ୍ୟ ସେହି ବଂଶୀବଟ ସମୀପରେ କୁଟୀର ନିର୍ମାଣ କରି ରହୁଥିଲେ । ଏ ମଧ୍ୟ ମୋର ଗାୟନ-ମୁଗ୍ଧ ଥିଲେ । ଯେତେବେଳେ ମୁଁ ଗାଇ ଗାଇ ପଡ଼ିଗଲି, ସେତେବେଳେ ସେ ନିଃସନ୍ଦେହ ହୋଇଗଲେ ଯେ—ଏ ପକ୍ଷିଣୀ ହିଁ ଗାଉଛି ଏବଂ ସେ ମୋତେ ତୁରନ୍ତ ଧରିନେଇ ପିଞ୍ଜରାବଦ୍ଧ କଲେ ।

ଯେତେବେଳେ ମୋର ମୂର୍ଚ୍ଛା ଭଙ୍ଗ ହେଲା, ଆପଣାକୁ ବନ୍ଦୀ ଅବସ୍ଥାରେ ଦେଖି ବିନୀତ ସ୍ୱରରେ ସ୍ୱାମୀଜୀଙ୍କୁ କହିଲି—'ସ୍ୱାମୀନ୍, ଆପଣ ବୀତରାଗୀ, ଗୃହତ୍ୟାଗୀ ବିରାଗୀ ସନ୍ନ୍ୟାସୀ ଅଟନ୍ତି । ଆପଣ ଯେ ସମସ୍ତଙ୍କୁ ବନ୍ଧନମୁକ୍ତ କରନ୍ତି, ତେବେ ମୋତେ କାହିଁକି ବନ୍ଧନରେ ରଖିବାକୁ ଚାହୁଁଛନ୍ତି !'

ସନ୍ନ୍ୟାସୀ କହିଲେ—'ଦେଖ, ଯଦିଓ ମୁଁ ସନ୍ନ୍ୟାସୀ, ମୋର ମନୁଷ୍ୟ ଶରୀର ତ ଅଛି । ମନୁଷ୍ୟ ଯୋନି ସମସ୍ତ ଯୋନିମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତା'ର ଅଧିକାର ଅଛି । ଯାହାଦ୍ୱାରା ତା'ର କାମ ହେବ, ତାକୁ ବନ୍ଧନରେ ରଖିବ । ସେପରି

Digitized by srujanika@gmail.com

ନ ହେଲେ ତା'ର କାମ ଚଳିବ କେମିତି ? ଗାଈ, ମହିଷୀ, ବଳଦ, ଘୋଡ଼ା, ଗଧ, ଓଟ, ମେଣ୍ଢା, ଛେଳି ତଥା ଅନ୍ୟ ପଶୁ-ପକ୍ଷୀଙ୍କୁ ମନୁଷ୍ୟ ବାନ୍ଧି ରଖିଛି । ତୋର ଗାୟନ ମୋର ଅତ୍ୟନ୍ତ ପ୍ରିୟ । ତୁ ଭଗବନ୍ନାମର ଗାୟନ କରୁଛୁ, ସେଥିରୁ ମୋର ଭଗବତ୍ ସ୍ମୃତି ଜାଗରିତ ହେଉଛି । ମୁଁ ତୋତେ ବାନ୍ଧି ରଖିବି ।

ମୁଁ କହିଲି—'ସ୍ୱାମୀଜୀ, ଯଦି କୌଣସି ପୁଷ୍ପର ସୌନ୍ଦର୍ଯ୍ୟକୁ ଦେଖି ଚିତ୍ତ ପ୍ରସନ୍ନ ହେଉଥାଏ, ତାକୁ ତୋଳିନେଇ ଆପଣାର କରି ପାଖରେ ରଖିନେବା ମୋହ ଅଟେ, ଲୋଭ ଅଟେ, ତାହା ସଂଗ୍ରହ । ଆପଣ ଆପଣଙ୍କର ସ୍ୱାର୍ଥ ହେତୁ ମୋତେ ବନ୍ଧନରେ ରଖିବାକୁ ଚାହୁଁଛନ୍ତି, ଏହା ଅନ୍ୟାୟ ।'

ସ୍ୱାମୀଜୀ କହିଲେ—'ଆପଣା ସ୍ୱାର୍ଥପାଇଁ ତ ସବୁ କିଛି କରାଯାଏ । ସେପରି ନ କଲେ ଶରୀରଯାତ୍ରା ହିଁ ଚାଲିବ ନାହିଁ । ତୋତେ ମୁଁ କଷ୍ଟ ଦେବି ନାହିଁ । ଗାୟନ ଶୁଣିବି । ଏଥିରେ ତ ମୁଁ ଅନ୍ୟାୟ ବୋଲି କିଛି ଦେଖୁନାହିଁ ।'

ମୁଁ କହିଲି—'ଠିକ୍ ଅଛି । ଚାଲନ୍ତୁ କୌଣସି ରାଜାଙ୍କ ନିକଟକୁ ଯିବା, ସେ ଯେଉଁପରି ନିର୍ଣ୍ଣୟ କରିବେ, ସେପରି କାର୍ଯ୍ୟ କରିବା ।' ସ୍ୱାମୀଜୀ ଏ କଥା ସ୍ୱୀକାର କଲେ ।

ସ୍ୱାମୀଜୀ ମୋତେ ନେଇ ଜଣେ ରାଜାଙ୍କ ନିକଟକୁ ଗଲେ । ଯଦ୍ୟପି ରାଜା ମୋର ସପକ୍ଷ ଥିଲେ, ତାଙ୍କର ମନ୍ତ୍ରୀମାନେ ବିପକ୍ଷରେ ଥିଲେ । ତେଣୁ ବହୁମତ ସ୍ୱାମୀଜୀଙ୍କର ପକ୍ଷରେ ହେବା ହେତୁ କୌଣସି ନିଶ୍ଚିତ ନିର୍ଣ୍ଣୟ ହୋଇପାରିଲା ନାହିଁ । ତା'ପରେ ମୁଁ ସ୍ୱାମୀଜୀଙ୍କ ନିକଟରେ ପ୍ରାର୍ଥନା କଲି—'ଜଗନ୍ନାଥପୁରୀର ମହାରାଜା ଅତି ଧର୍ମାତ୍ମା, ପ୍ରଜାବତ୍ସଳ ଓ ସତ୍ୟବାଦୀ, ନ୍ୟାୟାନ୍ୟାୟ ଓ ଯୁକ୍ତ ଅଯୁକ୍ତର ନିର୍ଣ୍ଣୟ କରିବା ନିମନ୍ତେ ପରମପଟୁ ଅଟନ୍ତି । ତାଙ୍କ ନିକଟକୁ ଚାଲନ୍ତୁ । ସେ ଯାହା ବି ନିର୍ଣ୍ଣୟ ନେବେ, ତାହା ଉଭୟଙ୍କର ମାନ୍ୟ ହେବ ।' ସ୍ୱାମୀ ମୋର ଏ ପ୍ରାର୍ଥନା ମଧ୍ୟ ସ୍ୱୀକାର କଲେ । ତେଣୁ ସେ ମୋତେ ଆପଣଙ୍କ ନିକଟକୁ ନେଇ ଆସିଛନ୍ତି । ବର୍ତ୍ତମାନ ଆପଣ ଯାହା ବି କରନ୍ତୁ ନା କାହିଁକି ତାହା ଆମ ଉଭୟଙ୍କର ପକ୍ଷରେ ମାନ୍ୟ ହେବ ।' ଏହା କହି ସେ ପକ୍ଷିଣୀ ନୀରବ ହେଲା ।

ପକ୍ଷିଣୀର କଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ଚକିତ ହେଲେ । କିଛି ସମୟ ନିମନ୍ତେ ନୀରବ ରହି କଟକାଧିପ ମହାରାଜ କରଯୋଡ଼ି ସ୍ୱାମୀଜୀଙ୍କୁ କହିଲେ—'ଭଗବନ ! ଆପଣଙ୍କର ନିଷ୍ଠା ଏବଂ କୀର୍ତ୍ତନ ଶ୍ରବଣର ଅନୁରାଗ ସ୍ତୁତ୍ୟ । ଆପଣ ଏଠାରେ ରାଜଗୁରୁପଦ ସ୍ୱୀକାର କରନ୍ତୁ । ମୋତେ ସତ୍ଶିକ୍ଷା ଦିଅନ୍ତୁ । କାହାକୁ ବନ୍ଧନରେ ରଖିବା ନ୍ୟାୟ ନୁହେଁ, ତେଣୁ ଆପଣ ଏ ପକ୍ଷୀଟିକୁ ଛାଡ଼ି ଦିଅନ୍ତୁ ।

Digitized by srujanika@gmail.com

ରାଜାଙ୍କର କଥା ମାନି ସ୍ୱାମୀଜୀ ପକ୍ଷିଣୀକୁ ପିଞ୍ଜରାର ଦ୍ୱାର ଖୋଲି ମୁକ୍ତ କରିଦେଲେ ।

ପିଞ୍ଜରା ବାହାରେ ଯେତେବେଳେ ସେ ପକ୍ଷିଣୀ ରାଜାଙ୍କୁ କୃତଜ୍ଞତାପୂର୍ଣ୍ଣ ଦୃଷ୍ଟିରେ ଦେଖିଲା, ସେତେବେଳେ ରାଜା କହିଲେ— 'ହେ ଦେବି, ତୁମେ ବର୍ତ୍ତମାନ ଉଡ଼ିଯାଇ ବୃନ୍ଦାବନ ନିକଟରେ, ଯମୁନା ତଟସ୍ଥିତ ବଂଶୀବଟବୃକ୍ଷ ଉପରେ ହିଁ ରୁହ । ଏଣିକି ତୁମେ ତୁମର ଗାୟନ କୀର୍ତ୍ତନ ମଧ୍ୟରାତ୍ର ସମୟରେ ହିଁ କରିବ, ଯେପରି କେହି ଶୁଣିପାରିବେ ନାହିଁ ।' ଏହା ଶୁଣି ପକ୍ଷିଣୀ ସ୍ୱାମୀଜୀ ଓ ରାଜାଙ୍କୁ ପ୍ରଣାମ କରି ଉଡ଼ିଯାଇ ବୃନ୍ଦାବନରେ ବଂଶୀବଟ ଉପରେ ରହିଲା । ଏବେ ସେ ଅର୍ଦ୍ଧରାତ୍ର ସମୟରେ 'ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ; ହେ ନାଥ ନାରାୟଣ ବାସୁଦେବ' ଏହି ଦିବ୍ୟମନ୍ତ୍ରର ଗାୟନ କରିବାକୁ ଲାଗିଲା । ଗାଢ଼ ଗାଢ଼ ଶରତ ପୂର୍ଣ୍ଣିମାର ପରମ ସୁଷମାମୟୀ ଦିବ୍ୟଚନ୍ଦ୍ରଜ୍ୟୋତ୍ସ୍ନା ବିଷିବସ୍ତ ଉପଗତ ହେଲା ।

ଭଗବାନଙ୍କର ନିତ୍ୟ ରାସ । ନିତ୍ୟ ସେ ଆପଣାର ସଖୀ ସହଚରୀଙ୍କ ସହିତ ବୃନ୍ଦାବନର ପୁଣ୍ୟଭୂମିରେ ରାସ କରନ୍ତି । କେହି କେହି ଭାଗ୍ୟଶାଳୀଙ୍କର ଦର୍ଶନପ୍ରାପ୍ତି ମଧ୍ୟ ହୋଇଥାଏ । ସେଦିନ ସେ ପକ୍ଷିଣୀକୁ ଏକ ରାମମୟୀ ଦିବ୍ୟବାଣୀ ଶୁଣାଗଲା । ସେ ବାଣୀର ଶ୍ରବଣ ମାତ୍ରକେ ତା'ର ସମସ୍ତ ଅହଙ୍କାର ନଷ୍ଟ ହୋଇଗଲା । ତୁରନ୍ତ ସେ ତା'ର ପଞ୍ଚ ଭୌତିକ ଶରୀର ତ୍ୟାଗକରି ଦିବ୍ୟ ବ୍ରଜାଙ୍ଗନାର ରୂପ ଧାରଣ କଲା । ରାସେଶ୍ୱରୀ ଶ୍ରୀରାଧା ତାକୁ ତାଙ୍କର ପରିକର କରିନେଲେ । ସେ ନିତ୍ୟ ଲୀଳାର ଅଧିକାରିଣୀ ସହଚରୀ ହେଲା ।

ଏ ଆଖ୍ୟାନରୁ ଏଇ ଶିକ୍ଷା ମିଳୁଛି ଯେ, ଯେତେବେଳ ପର୍ଯ୍ୟନ୍ତ କୌଣସି ବାସନା ଅବଶେଷ ରହିଛି, ସେତେବେଳ ପର୍ଯ୍ୟନ୍ତ ତା'ର ପ୍ରଭୁପ୍ରେମ ପ୍ରାପ୍ତି କିଭଳି ହେବ ? ଯେତେବେଳ ପର୍ଯ୍ୟନ୍ତ ବିଷୟବାର୍ତ୍ତା ଶ୍ରବଣରେ ସୁଖ ପ୍ରତୀତ ହୋଇଥାଏ, ସେତେବେଳ ପର୍ଯ୍ୟନ୍ତ ବୁଝିବା ଉଚିତ୍ ଯେ ତାକୁ ଭଗବତ୍ ଗୁଣ ଶ୍ରବଣ ରସ ସ୍ପର୍ଶ ସୁଦ୍ଧା କରିନାହିଁ । ଭଗବତ୍ ଗୁଣ ଶ୍ରବଣ ରସର କିଞ୍ଚିତ୍ ମାତ୍ର ଆସ୍ୱାଦନ କରିଥିଲେ ମଧ୍ୟ ତାକୁ ବିଷୟବାର୍ତ୍ତା ବିଷଠାରୁ ବଳି ଦୁଃଖଦ ପ୍ରତୀତ ହେବ । ଯେ ହୃଦୟରେ କେବଳ ମାତ୍ର ଥରେ ବି ବ୍ରହ୍ମ ସଂସ୍ପର୍ଶରେ ଆସିଛି, ତାକୁ ଏଇ ହାଡ଼-ମାଂସଦ୍ୱାରା ରଚିତ ମଳ-ମୂତ୍ର ପରିପୂର୍ଣ୍ଣ ଶରୀରର ସ୍ପର୍ଶରୁ ବା କେଉଁ ସୁଖ ମିଳିବ ? ଯା'ର ଘ୍ରାଣ ଭଗବାନଙ୍କର ଚରଣକମଳସ୍ଥ ଦିବ୍ୟ ତୁଳସୀର ସୁଗନ୍ଧ ଅନୁଭବ କରିଛି, ତାକୁ ଏ ଭୌତିକ ପଦାର୍ଥ-ମାନଙ୍କରୁ କେଉଁ ସୁଖ ପ୍ରାପ୍ତ ହେବ ? ଯେ କେତେବେଳେ ବି ସ୍ୱପ୍ନରେ ହେଉ ପଛେ, ସେଇ ଦିବ୍ୟଛଟା ଅପୂର୍ବ ଶୋଭା ଦେଖିଛି ତାକୁ ହାଡ଼-ମାଂସ ନିର୍ମିତ କଳାଗୋରା ମଳପିଣ୍ଡ ମୁଖ କେଉଁପରି ଆକର୍ଷିତ କରିବ ? ସେ ତ ପ୍ରତ୍ୟେକ ବସ୍ତୁରେ ଆପଣାର

Digitized by srujanika@gmail.com

ସେଇ ହୃଦୟ-ଧନର ମନୋହର ରୂପ ଅବଲୋକନ କରୁଥିବ ! ଯା'ର ରସନାକୁ କ୍ଷଣିକ ଲାଗି ବି ନାମାମୃତରସର ସ୍ୱାଦ ମିଳିଛି, ସେ ଅନ୍ୟର ଦୋଷ-ଗୁଣର କିପରି ବର୍ଣ୍ଣନା କରିପାରିବ ? ମୁଁ ତାଙ୍କଠାରୁ ଅନେକ ଦୂରରେ ରହିଛି, ନର୍କର ଦ୍ୱାରଭୂତ କାମ, କ୍ରୋଧ ତଥା ଲୋଭ ମୋର ପିଣ୍ଡ ଛାଡ଼ୁ ନାହାଁନ୍ତି । ଅହଙ୍କାର ହେତୁ ଆପଣାକୁ ମୁଁ ଯେ ତ୍ୟାଗୀ ବିରାଗୀ ମନେ କରିଥିଲି, ତାହା ମୋର ମିଥ୍ୟାଭିମାନ, ଦମ୍ଭ ! ମୁଁ ଚାହୁଁଛି ନିରନ୍ତର ଭଗବତ୍ ଚିନ୍ତନ, ଭଗବତ୍ ଗୁଣ-ଶ୍ରବଣ ହେଉଥାଉ, ତାହା ହୋଇପାରୁ ନାହିଁ । ସାଂସାରିକ ବସ୍ତୁମାନଙ୍କ ମଧ୍ୟରେ ଆକର୍ଷଣ କମ୍ ନ ଥାଏ । ମୁଁ ମୋର ଏହି ଉଭୟ ଭ୍ରଷ୍ଟ ସ୍ଥିତି ହେତୁ ଲଜ୍ଜିତ, ଦୁଃଖିତ । 'ଭାଗବତ କଥା'ର ପାଠକମାନେ ଆଶୀର୍ବାଦ କରନ୍ତୁ, ଯଦି ଆଶୀର୍ବାଦ ଏକ ଭାରି ଶବ୍ଦ ବୋଲି ମନେ କରୁଥାନ୍ତି, ତା'ହେଲେ ମନୋକାମନା କରନ୍ତୁ, ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରନ୍ତୁ ଯେ ମୋର ଚକ୍ଷୁ ସାଂସାରିକ ପଦାର୍ଥମାନଙ୍କୁ ନ ଦେଖି ପ୍ରଭୁ ପାଦପଦ୍ମରେ ଲାଗିରହୁ । ମୋର ଜିହ୍ୱା ନିରନ୍ତର ନାମାମୃତ ରସପାନ କରୁଥାଉ । ମୋର ହୃଦୟପଟଳରେ ନିରନ୍ତର ସେହି ତ୍ରିଭଙ୍ଗ ଲଳିତ ମାଧୁରୀ ମୂର୍ତ୍ତି ନୃତ୍ୟ କରୁଥାଉ । ମୋର କର୍ଣ୍ଣ କୁହରରେ ସେଇ ଏକ ଧ୍ୱନି ସଦା ଧ୍ୱନିତ ହେଉଥାଉ ।

**ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ**
**ହେ ନାଥ ନାରାୟଣ ବାସୁଦେବ ।**

ଝୁସୀ ସଂକୀର୍ତ୍ତନ ଭବନ,
ପ୍ରତିଷ୍ଠାନପୁର (ପ୍ରୟାଗ)
କାର୍ତ୍ତିକ ପୂର୍ଣ୍ଣିମା ୨୦୦୫ ବି

ସମସ୍ତଙ୍କର ସ୍ନେହ ଭାଜନ
**ପ୍ରଭୁଦତ୍ତ**

Digitized by srujanika@gmail.com

# ଛଦ୍ମବେଶୀ ଇନ୍ଦ୍ରଦ୍ୱାରା ଦିତିଙ୍କର ଗର୍ଭୋଚ୍ଛେଦ

ମାତୃଷ୍ୱସୁରଭିପ୍ରାୟମିନ୍ଦ୍ର ଆଜ୍ଞାୟ ମାନଦ ।
ଶୁଶ୍ରୂଷଣେନାଶ୍ରମସ୍ଥାଂ ଦିତିଂ ପର୍ଯ୍ୟଚରତ୍କବିଃ ॥
ନିତ୍ୟଂ ବନାତ୍ସୁମନସଃ ଫଲମୂଳସମିତ୍କୁଶାନ୍ ।
ପତ୍ରାଙ୍କୁରମୃଦୋଽପଶ୍ଚ କାଲେ କାଲ ଉପାହରତ ।

( ଶ୍ରୀ ଭା ୬ ସ୍କ ॥ ୧୮ ଅ ॥ ୪୭।୪୭ ଶ୍ଳୋକ )

## ଛପ୍ପୟ

ଯୌଁ କହି ବଧି କେ ସହିତ ବଢାୟୋ ମୁନିବର କେ ବ୍ରତ ।
ଧାରୟୋ ଦିତି ନେ ତୁରତ ଲଗାୟୋ ନିଜ ହିତମହଁ ଚିତ ॥
ମୌସୀ କୋ ସଂକଲ୍ପ ଜାନି ସୁରପତି ଘବରାୟେ ।
ପରେ ଶୋଚ ମେ ଅଧିକ ତୁରତ ତିହି ଆଶ୍ରମ ଆୟେ ॥
ଛିଦ୍ରାନ୍ୱେଷନ କେ ନିମିତ୍ତ, ବେଷ ବଦଲି ବାଲକ ବନେ ।
କରେଁ ଟହଲ ନିତ କପଟ ତୈଁ, ସଦାରହେଁ ଚିତ୍ତ ଅନମନେ ॥

ମନୁଷ୍ୟ ସୁଖରେ ଜୀବନର ଆଶାରେ ଧୈର୍ଯ୍ୟପୂର୍ବକ ସହନ କରିପାରେ । ଯଦି ତା'ର ଜୀବନ ପ୍ରତି ଭୟ ଜାତ ହୁଏ, ତା'ହେଲେ ଧୈର୍ଯ୍ୟ ରହିବ ନାହିଁ ଏବଂ ସେ ସେତେବେଳେ ପ୍ରାଣ ପଣେ ମୃତ୍ୟୁକୁ ଦୂରେଇ ଦେବାକୁ ଚେଷ୍ଟା କରେ । ପ୍ରତ୍ୟେକ ପ୍ରାଣୀ ମୃତ୍ୟୁମୁଖରୁ ବଞ୍ଚି ଯିବାକୁ ନିରନ୍ତର ଚେଷ୍ଟା କରିଥାନ୍ତି । କୌଣସିମତେ ମୃତ୍ୟୁ ନ ଆସୁ, ଆମେ ଜୀବିତ ରହିଥାଉଁ, ଏହା ହିଁ ପ୍ରାଣୀ ମାତ୍ରର ଭାବନା । ଯେଉଁମାନଙ୍କର ହୃଦୟରୁ ମୃତ୍ୟୁଭୟ ଚାଲିଗଲା, ଯେଉଁମାନେ ସ୍ୱେଚ୍ଛାରେ ମୃତ୍ୟୁକୁ ସ୍ୱୀକାର କରିନେଲେ, ସେମାନେ ସଂସାର ବନ୍ଧନରୁ ମୁକ୍ତ ହୋଇ ମୁକ୍ତପଦର ହୋଇଗଲେ । ତତ୍ତ୍ୱଜ୍ଞ ହୋଇଗଲେ, ଯେତେବେଳ ପର୍ଯ୍ୟନ୍ତ ଜୀବିତ ରହିବାର ଆଶା ଅଛି, ସେତେବେଳ ଯାଏଁ ମୃତ୍ୟୁକୁ ଘଉଡ଼ି ଦେବାର ଚେଷ୍ଟା ଚାଲିଥାଏ ।

Digitized by srujanika@gmail.com

ଶ୍ରୀ ଶୁକଦେବ କହୁଛନ୍ତି—'ରାଜନ୍, କେତେ ବି ଲୁଚଛପି ପାପପୁଣ୍ୟ କରନ୍ତୁ ସେ କେବେନା କେବେ ନିଶ୍ଚୟ ପ୍ରକଟିତ ହେବ । କାରଣ ଆଦିତ୍ୟ, ଚନ୍ଦ୍ର, ସୂର୍ଯ୍ୟ, ପଞ୍ଚଭୂତ, ଦିଶାଗଣ, ଧର୍ମ ଏମାନେ ଯେ ସମସ୍ତଙ୍କର ମନକଥା ଜାଣି ଯାଆନ୍ତି । ଇନ୍ଦ୍ରଙ୍କୁ ମଧ୍ୟ ଏ କଥା ମୟଦାନବଠାରୁ ଜଣାପଡ଼ିଲା ଯେ ମାଉସୀ ଦିତିଦେବୀ ମୋତେ ମାରିବା ନିମନ୍ତେ ପୁଂସବନ ବ୍ରତ ଧାରଣ କରିଛନ୍ତି । ତାଙ୍କର ଗର୍ଭରେ ମୋର ତେଜସ୍ୱୀ ପିତାଙ୍କର ଅମୋଘ ବୀର୍ଯ୍ୟ ସ୍ଥାପିତ ହୋଇସାରିଛି । ମୋର ପିତା ସତ୍ୟ ସଙ୍କଳ୍ପ ଅଟନ୍ତି, ସେ କେତେବେଳେ ପରିହାସରେ ମଧ୍ୟ ମିଥ୍ୟା କହନ୍ତି ନାହିଁ । ଯଦି ମୋର ମାଉସୀଙ୍କର ଏକବର୍ଷର ବ୍ରତ ନିର୍ବିଘ୍ନରେ ସମାପ୍ତ ହୋଇଯିବ, ତେବେ ତାଙ୍କର ଗର୍ଭରୁ ମୋର ସଂହାରକାରୀ ପୁତ୍ର ନିଶ୍ଚିତ ଭାବରେ ଜନ୍ମଗ୍ରହଣ କରିବ । ଯଦି କୌଣସିମତେ ବିଘ୍ନ ଉପସ୍ଥିତ ହେବ, ତା'ହେଲେ ଗର୍ଭ ବ୍ୟର୍ଥ ହେବ । ବର୍ତ୍ତମାନ ଯେ କୌଣସି ମତେ ତାଙ୍କର ବ୍ରତରେ ବିଘ୍ନ ଉତ୍ପନ୍ନ କରିବା ଉଚିତ ହେବ । ବିଘ୍ନ ମଧ୍ୟ ମୁଁ କ'ଣ କରିପାରିବି ? ଯେତେବେଳ ପର୍ଯ୍ୟନ୍ତ ସେ ନିୟମପୂର୍ବକ ରହିଥିବେ, ସଦାଚାରପୂର୍ଣ୍ଣ ଜୀବନଯାପନ କରୁଥିବେ, ସେତେବେଳ ପର୍ଯ୍ୟନ୍ତ ମୁଁ କ'ଣ, କେହି ମଧ୍ୟ ଦୃକ୍‌ପାତ କରିପାରିବେ ନାହିଁ । ବର୍ତ୍ତମାନ ମୋତେ କ'ଣ କରିବାକୁ ହେବ ?'

ଏ କଥା ଶୁଣି ଶୌନକ ପ୍ରଶ୍ନ କଲେ—'ହେ ସୂତ, ଦିତିଙ୍କର ଗର୍ଭ ବିଷୟ ମୟଙ୍କୁ କେଉଁପରି ଜଣାଗଲା ଏବଂ ଯଦି ଜଣାଗଲା, ତେବେ ଆପଣା ଘର କଥା ସେ ଦେବତାମାନଙ୍କର ରାଜା ଇନ୍ଦ୍ରଙ୍କ ନିକଟରେ କିପରି ପ୍ରକାଶ କଲେ ?'

ଏହା ଶୁଣି ସୂତ କହିଲେ—'ମହାଭାଗ, ମୟାସୁର ସମସ୍ତଙ୍କ ଭିତରେ ପଣ୍ଡିତ । ସେ ଆପଣାର ମାୟାଦ୍ୱାରା ସବୁ କିଛି ଜାଣିପାରେ । ସେ ବି ତ ଅସୁର ଥିଲା । ଦିତିଙ୍କର ଘର କଥା ସେ ସବୁ ଜାଣୁଥିଲା । ମିତ୍ରତାର ବଶୀଭୂତ ହୋଇ ସେ ଇନ୍ଦ୍ରଙ୍କ ନିକଟରେ ସମସ୍ତ ସତ କଥା ପ୍ରକାଶିତ କରିଦେଲା ।

ଏ କଥା ଶୁଣି ଆହୁରି ଆଶ୍ଚର୍ଯ୍ୟ ହୋଇ ଶୌନକ ପଚାରିଲେ—'ହେ ସୂତଦେବ, ଆପଣ ଏକୁ ବଳି ଆରେକ ଅଦ୍‌ଭୁତ କଥା କହୁଛନ୍ତି । ଦେବତା ଓ ଅସୁରମାନଙ୍କ ମଧ୍ୟରେ ସ୍ୱାଭାବିକ ବୈରଭାବ ରହିଛି । ମୁଁ ଶୁଣିଛି, ମାୟାସୁରର ଭାଇ ନମୁଚିକୁ ଇନ୍ଦ୍ର ବଜ୍ରଦ୍ୱାରା ସଂହାର କରିଛନ୍ତି, ତେବେ ଭ୍ରାତୃହନ୍ତା ଇନ୍ଦ୍ରଙ୍କ ସହିତ ମୟାସୁରର ମିତ୍ରତା କେଉଁପରି ସ୍ଥାପିତ ହେଲା !'

ଏହା ଶୁଣି ସୂତ କହିଲେ—'ଶୁଣନ୍ତୁ, ଏ ବିଷୟରେ ଏକ ପୌରାଣିକ କଥା ଅଛି । ମୁଁ ତାହା ଆପଣଙ୍କୁ ଶୁଣାଇବି । ପ୍ରଥମରେ ନମୁଚି ସମସ୍ତ ଦୈତ୍ୟଙ୍କର ରାଜା ଥିଲା । ସେତେବେଳେ ଇନ୍ଦ୍ର ଦେବତାମାନଙ୍କର ରାଜା ଥିଲେ । ଉଭୟଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଇନ୍ଦ୍ର ତ ପରାଜିତ ହେବାର ଅଭିଶାପ ପ୍ରାପ୍ତ ହୋଇଥିଲେ, ସେ

Digitized by srujanika@gmail.com

ପରାଜିତ ହୋଇ ପଳାୟନ କଲେ । ଇନ୍ଦ୍ରଙ୍କୁ ପଳାୟନ କରୁଥିବା ଦେଖି ନମୁଚି ମଧ୍ୟ ତାଙ୍କର ଅନୁଧାବନ କଲା । ଇନ୍ଦ୍ର ଆପଣା ପଛରେ ନମୁଚିକୁ ଆସୁଥିବା ଦେଖି ଅତ୍ୟନ୍ତ ଭୟଭୀତ ହେଲେ । ସେ ଐରାବତକୁ ଛାଡ଼ି ସମୁଦ୍ରର ଫେନ ମଧ୍ୟରେ ଆତ୍ମଗୋପନ କଲେ । ନମୁଚି ଶାପଗ୍ରସ୍ତ ହୋଇଥିଲା ଯେ ତା'ର କୌଣସି ଆର୍ଦ୍ର ବସ୍ତୁଦ୍ୱାରା ମୃତ୍ୟୁ ହେବ, ଶୁଷ୍କ ବସ୍ତୁରେ ନୁହେଁ । ସେତେବେଳେ ଇନ୍ଦ୍ର ବଜ୍ରକୁ ଫେନ ଆଚ୍ଛାଦିତ କରି ତାହା ଉପରେ ପ୍ରହାର କଲେ ଏବଂ ତା'ର ମୃତ୍ୟୁ ହେଲା । ଇନ୍ଦ୍ର ପ୍ରସନ୍ନ ହେଲେ ।'

ମୟାସୁର ନମୁଚିର ଜ୍ୟେଷ୍ଠଭାଇ । ଆପଣାର ବଡ଼ଭାଇର ଇନ୍ଦ୍ରଙ୍କଦ୍ୱାରା ହତ୍ୟା ସମ୍ବାଦ ଶୁଣି ସେ ଅତ୍ୟନ୍ତ କ୍ରୋଧିତ ହେଲା । ସେ ଆପଣାର ଭ୍ରାତୃହନ୍ତାକୁ ମାରିବା ସଂକଳ୍ପ କରି କଠୋର ତପସ୍ୟା କଲା । ତପସ୍ୟାର ପ୍ରଭାବରେ ସେ ଏପରି ମାୟା ପ୍ରାପ୍ତ ହେଲା ଯେ ତାହା ଦେବତାମାନେ ମଧ୍ୟ ଜାଣିପାରିବେ ନାହିଁ; ବ୍ୟର୍ଥ କରିବା ତ ଦୂରର କଥା । ସେ ଆପଣାର କଠୋର ତପଶ୍ଚର୍ଯ୍ୟାରେ ଚରାଚର ସ୍ୱାମୀ ଶ୍ରୀହରିଙ୍କୁ ମଧ୍ୟ ପ୍ରସନ୍ନ କଲା ଏବଂ ତାଙ୍କ ନିକଟରୁ ଶ୍ରେଷ୍ଠବର ପ୍ରାପ୍ତି ହେଲା । ମୟାସୁର ବରିଷ୍ଠ ଯଜ୍ଞ ଅନୁଷ୍ଠାନ କରେ, ବ୍ରାହ୍ମଣମାନଙ୍କର ପୂଜାକରେ, ଯାଚକମାନଙ୍କୁ ଯଥେଷ୍ଟ ଦାନ କରେ । ତା'ର ଦାନର ଖ୍ୟାତି ସର୍ବତ୍ର ପ୍ରସ୍ଫୁରିତ ହେଲା । ବ୍ରାହ୍ମଣମାନେ ତାକୁ ପ୍ରସନ୍ନ ଚିତ୍ତରେ ଆଶୀର୍ବାଦ ପ୍ରଦାନ କରିବାକୁ ଲାଗିଲେ । ସେତେବେଳେ ଇନ୍ଦ୍ର ଅତ୍ୟନ୍ତ ଭୟ କଲେ । ତାଙ୍କୁ ନା ଭୋଜନ ଭଲ ଲାଗିଲା ନା ସ୍ୱର୍ଗ ସୁଖ । ରାତିଦିନ ସେ ଏହି ଚିନ୍ତା କରିବାକୁ ଲାଗିଲେ, ମୟ କବଳରୁ କିଭଳି ଉଦ୍ଧାର ଲାଭ କରିବେ । ଯେ ଏତେ ଧର୍ମ କରୁଛି, ଆପଣାର ସେବାଦ୍ୱାରା ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରୁଛି, ତାକୁ ମୁଁ ଯୁଦ୍ଧରେ କୌଣସି ପ୍ରକାରେ ପରାଜିତ କରିପାରିବି ନାହିଁ । ତଦୁପରି ସେ ବିଷ୍ଣୁଙ୍କ ନିକଟରୁ ବରପ୍ରାପ୍ତ ହୋଇଛି । ଅନେକ ମାୟାର ଜ୍ଞାତା ହୋଇଛି । ତାହା ସହିତ ମିତ୍ରତା ସ୍ଥାପନ ହିଁ କଲ୍ୟାଣକର । ଏହି ବିଚାର କରି ଇନ୍ଦ୍ର ବ୍ରାହ୍ମଣବେଶ ଧାରଣ କରି ମୟ ନିକଟରେ ଉପସ୍ଥିତ ହେଲେ ଏବଂ ଯାଚକବତ୍ ଦୀନବାଣୀରେ କହିଲେ—"ରାଜନ୍ ! ଆଜିକାଲି ସଂସାରରେ ଆପଣଙ୍କର ଦାନର ଖ୍ୟାତି ସର୍ବତ୍ର ପ୍ରସ୍ଫୁରିତ । ମୁଁ ଶୁଣିଛି ଆପଣଙ୍କ ଦ୍ୱାରରୁ କୌଣସି ଯାଚକ ବିମୁଖ ହୋଇ ଫେରିନାହିଁ । ସେଇ ଆଶାରେ ମୁଁ ଏଠାରେ ଉପସ୍ଥିତ। ଆପଣ ମୋର ଇଚ୍ଛା ପୂରଣ କରନ୍ତୁ । ମୋତେ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରନ୍ତୁ ।"

ସେଭଳି ଏକ ଯୋଗ୍ୟ ବ୍ରାହ୍ମଣଙ୍କୁ ଦେଖି ମୟାସୁରର ସର୍ବାଙ୍ଗ ରୋମାଞ୍ଚିତ ହୋଇଉଠିଲା । ସେ ଅତ୍ୟନ୍ତ ପ୍ରସନ୍ନ ଚିତ୍ତରେ କହିଲେ—"ବିପ୍ରବର ! ମୁଁ କୃତାର୍ଥ ହେଲି । ଆପଣ ଆପଣଙ୍କ ଇଚ୍ଛା ପୂର୍ଣ୍ଣ ହୋଇଛି ମନେକରନ୍ତୁ ଏବଂ ଯାହା ଇଚ୍ଛା ବିଜ୍ଞ ନିଃସଙ୍କୋଚରେ ମାଗନ୍ତୁ ।"

Digitized by srujanika@gmail.com

ଛଦ୍ମବେଶଧାରୀ ଇନ୍ଦ୍ର କହିଲେ—"ଆପଣ ଯଦି ମୋର ମନୋଭିଳଷିତ ବସ୍ତୁ ପ୍ରଦାନ କରିବାକୁ ଚାହାଁନ୍ତି ତେବେ ମୁଁ ଆପଣଙ୍କର ମୈତ୍ରୀ ଚାହୁଁଛି । ଆପଣ ମୋତେ ମିତ୍ର ଭାବରେ ଗ୍ରହଣ କରନ୍ତୁ ।"

ଆଶ୍ଚର୍ଯ୍ୟ ସହକାରେ ମୟ କହିଲେ—"ବ୍ରହ୍ମନ୍ ! ଆପଣ ଏପରି କ'ଣ କହୁଛନ୍ତି ? ମୁଁ ତ ବ୍ରାହ୍ମଣଙ୍କର ଦାସ । ମୋର ଆପଣଙ୍କ ସହିତ କେବେ ଶତ୍ରୁତା ହୋଇଥିଲେ ସିନା ମିତ୍ରତାର ଆବଶ୍ୟକ ! ମୋର ତ ଆଜି ଆପଣଙ୍କ ସହିତ ପ୍ରଥମ ପରିଚୟ ହେଉଛି ! ମିତ୍ରତା କ'ଣ, ମୁଁ ତ ଆପଣଙ୍କର ଆଜ୍ଞାକାରୀ ସେବକ ! ଆପଣ ଆଉ କିଛି ମାଗନ୍ତୁ ।"

ମୟାସୁରର ଏଭଳି ସ୍ନେହପୂର୍ଣ୍ଣ ଉଦାରତା ପରିପ୍ଲୁତ ବାଣୀ ଶୁଣି ଇନ୍ଦ୍ର ଆପଣାର ପ୍ରକୃତ ରୂପରେ ପ୍ରକଟିତ ହେଲେ । ତା'ପରେ ମୟ କରନ୍ତା କ'ଣ ? ସଜ୍ଜନମାନଙ୍କର ବଚନ ଥରେ ମାତ୍ର ପ୍ରକାଶିତ ହୋଇଥାଏ, ଯାହା ସେମାନେ ଯାବ୍ୟ-ଜୀବନ ପାଳନ କରନ୍ତି । ସେ ଦୁଃଖ ପ୍ରକାଶ କଲେନାହିଁ । ଅତ୍ୟନ୍ତ ପ୍ରସନ୍ନ ଚିତ୍ତରେ ବିସ୍ମୟ ପ୍ରକାଶକରି ଇନ୍ଦ୍ରଙ୍କୁ କହିଲେ—"ଆରେ ଆପଣ ଯେ ବଜ୍ରପାଣି ଇନ୍ଦ୍ର ! ଦେଖନ୍ତୁ, ଏଭଳି ଦୀନଭାବରେ ଭିକ୍ଷାର୍ଥୀ ହେବା ଆପଣଙ୍କର ଅନୁରୂପ ହେଲା ନାହିଁ ।"

ଇନ୍ଦ୍ର ପ୍ରୀତିରେ ଏବଂ ସଲ୍ଲଜ ହୋଇ ମଥା ନତକରି କହିଲେ—"ବନ୍ଧୁବର, ଯେତେବେଳେ ପ୍ରାଣର ସଙ୍କଟକାଳ ଉପସ୍ଥିତ ହୁଏ, ବୁଦ୍ଧିମାନ ପୁରୁଷ ପକ୍ଷରେ ଯେ କୌଣସି ପ୍ରକାରେ ଆପଣାକୁ ରକ୍ଷା କରିବା ଉଚିତ । ମୁଁ ଜାଣେ ଯେ ଆପଣଙ୍କ ସହିତ ଯୁଦ୍ଧ କରି କୌଣସିମତେ ଜିଣିପାରିବି ନାହିଁ । ତେଣୁ ଏ ଉପାୟ ଅବଲମ୍ବନ କଲି । ଅସ୍ତୁ, ଏଇନେ ତ ଆମେମାନେ ମିତ୍ର !"

ମୟାସୁର ପ୍ରସନ୍ନ ହୋଇ କହିଲେ—"ହଁ, ସପ୍ରତି ଆମ ଭିତରେ ପ୍ରଗାଢ଼ ମୈତ୍ରୀ ସ୍ଥାପିତ ହୋଇଛି । ଏହା କହି ମୟ ଆଦର ସହକାରେ ଇନ୍ଦ୍ରଙ୍କୁ ଆଲିଙ୍ଗନ କଲେ ଏବଂ ଦୁହେଁ ଆନନ୍ଦରେ ରହିବାକୁ ଲାଗିଲେ । ମୟ ଇନ୍ଦ୍ରଙ୍କୁ ସମସ୍ତ ମାୟାର ମଧ୍ୟ ଶିକ୍ଷା ଦେଲେ ଏବଂ ତାଙ୍କ ସହିତ ନିଷ୍କପଟ ମୈତ୍ରୀ ରଖିଲେ ।"

ଯେତେବେଳେ ସେ ଶୁଣିଲେ ଯେ ଦିତି ମାତା ଇନ୍ଦ୍ରଙ୍କର ବିନାଶ ନିମନ୍ତେ ଭଗବାନ କଶ୍ୟପଙ୍କଠାରୁ ଗର୍ଭଧାରଣ କରିଛନ୍ତି ଏବଂ ତାଙ୍କର ବ୍ରତ ପୂର୍ଣ୍ଣ ହେଲେ ଇନ୍ଦ୍ରଙ୍କର ସଂହାରକାରୀ ପୁତ୍ରଜାତ ହେବ, ସେତେବେଳେ ସେ ଇନ୍ଦ୍ରଙ୍କ ନିକଟକୁ ଆସି ମୈତ୍ରୀ ଭାବରେ ସବୁ କଥା ସତ ସତ କହିଦେଲେ ।

ଏକଥା ଶୁଣି ଇନ୍ଦ୍ର ଅତ୍ୟନ୍ତ ଭୟଭୀତ ହେଲେ । ସେ ଆପଣାର ମିତ୍ର ମୟାସୁରଙ୍କୁ ପ୍ରଶ୍ନକଲେ—"ହଜ, ଏବେ ତୁମେ କହ କ'ଣ କରିବାକୁ ହେବ ! ଏ

Digitized by srujanika@gmail.com

ବିପତ୍ତିରୁ ଏବେ କିପରି ଉଦ୍ଧାର ହେବ ! କିଭଳି ମୁଁ ଦଢଙ୍କର ଗର୍ବର ଭୟରୁ ତ୍ରାଣ ପ୍ରାପ୍ତ ହେବି ! ସେତେବେଳେ ମନ୍ୟୁ ଇନ୍ଦ୍ରଙ୍କୁ କହିଲେ ବର୍ତ୍ତମାନ ଦଢ ମହର୍ଷି ଅଗସ୍ତିଙ୍କର ଆଶ୍ରମରେ ଅଛନ୍ତି । ତମେ ମଧ୍ୟ ଯାଇ ସେଠାରେ ରହି ଏବଂ ବିଘ୍ନ ଉପସ୍ଥିତ କର ।''

ମନ୍ୟୁଙ୍କର କଥା ଶୁଣି ଦେବରାଜ ଇନ୍ଦ୍ର କହିଲେ—''ବନ୍ଧୁ, ବର୍ତ୍ତମାନ ମୋର ବୁଦ୍ଧି କିଛି କାର୍ଯ୍ୟ କରୁନାହିଁ । ଯଦି ଏଣୁ ତେଣୁ କୌଣସି ରାଜସ ତାମସ ଦେବତାଙ୍କର ବ୍ରତ ହୋଇଥାନ୍ତା, ତେବେ ମୁଁ କୌଣସି ଉପାୟରେ ବିଘ୍ନ ଉପସ୍ଥିତ କରିପାରନ୍ତି । ମାତ୍ର ଏହା ବୈଷ୍ଣବ ବ୍ରତ । ଏଥିରେ ବିଘ୍ନ ଉପସ୍ଥିତ କରିବାକୁ ମୁଁ କଦାପି ସମର୍ଥ ନୁହେଁ । ହଁ, ଦୈବଯୋଗରେ ତାଙ୍କର ଯଦି କୌଣସି ତ୍ରୁଟି ହୁଏ, ତା'ହେଲେ ଅବଶ୍ୟ ବିଘ୍ନ ଉପସ୍ଥିତ ହେବ; କାରଣ ପିତା ତାଙ୍କୁ ସେହିଭଳି କହିଛନ୍ତି । ବର୍ତ୍ତମାନ ମୋ ପକ୍ଷରେ ଯେକୌଣସିମତେ ସର୍ବଦା ଏକବର୍ଷ ପର୍ଯ୍ୟନ୍ତ ତାଙ୍କର ବ୍ରତର ଛିଦ୍ର ନିରୀକ୍ଷଣ କରିବା ଉଚିତ ହେବ ।''

ଏ ସବୁ କଥା ମନ୍ୟୁଙ୍କୁ କହି ତାଙ୍କର ସମ୍ମତି ପ୍ରାପ୍ତ ହୋଇ ଦେବରାଜ ଇନ୍ଦ୍ର ଏକ ସାତ ଆଠ ବର୍ଷୀୟ ବାଳକ ରୂପରେ ଆସି ଦଢଙ୍କ ସମୀପରେ ରୋଦନ କରିବାକୁ ଲାଗିଲେ ! ମାତାମାନଙ୍କର ସ୍ୱଭାବ ତ ସର୍ବଦା ଦୟାଯୁକ୍ତ । ବିଶେଷତଃ ଦୁଃଖୀ ବାଳକକୁ ଦେଖି ମାତୃ ହୃଦୟ ତରଳିବାକୁ ଲାଗେ । ସେ ବାଳକ କା'ର ବି ହୋଇନା କାହିଁକି ! ଦଢ ଆଦରକରି ପଚାରିଲେ—''ପୁଅ, ତୁ କିଏ ? କାହିଁକି କାନ୍ଦୁଛୁ ? କ'ଣ ଲୋଡ଼ା ତୋତେ ? କହ, ମୋତେ କହ !''

ବାଳକ ବେଶଧାରୀ ଦେବେନ୍ଦ୍ର ଲୁହ ପୋଛି କହିଲେ—''ମା', ମୁଁ ଅନାଥ, ମୋର କେହି ନାହିଁ । ମୋର ଜୀବନର ବି ଆଶା ନାହିଁ । ଯଦି ଆପଣ ମୋତେ ଆଶ୍ରୟ ଦେବେ ତା'ହେଲେ ମୁଁ ବଞ୍ଚି ଯାଇପାରେ । ମୁଁ ଶକ୍ତି ମତେ ଆପଙ୍କର ସେବା କରିବି । ମୋର ଖାଇବା ପାଇଁ ଅନ୍ନମାତ୍ର ଆବଶ୍ୟକ ।''

ଦଢ ସେଇ ବାଳକର ସରଳତାରେ ମୋହିତ ହେଲେ । ସେ ଅତ୍ୟନ୍ତ ସ୍ନେହରେ କହିଲେ—''ପୁଅ, ତୁ ଆନନ୍ଦରେ ରହ । ତୋର ଯାହା ଇଚ୍ଛା ହେବ ସେ କାମ କରିଦେବୁ । ଯାହା ଇଚ୍ଛା ହେବ ନାହିଁ କରିବୁ ନାହିଁ । ତୋର କୌଣସି କଥାରେ କଷ୍ଟ ହେବ ନାହିଁ ।''

ଦଢ ଆଶ୍ରମରେ ଏକାନ୍ତରେ ରହି ଅତ୍ୟନ୍ତ ସାବଧାନ ଭାବରେ ବ୍ରତପାଳନ କରୁଥିଲେ । ସେହି ଛଦ୍ମ ବାଳକ ଅତି ନିଷ୍ଠା ସହକାରେ ତାଙ୍କର ସେବା କରିବାକୁ ଲାଗିଲା । ସେ ପ୍ରତିଦିନ ଭୋରରୁ ଶଯ୍ୟାତ୍ୟାଗ କରନ୍ତି, ଦୂର ଜଙ୍ଗଲକୁ ଯାଇ ଭଲ ଭଲ ପାଚିଲା ଫଳ ନେଇ ଆସନ୍ତି । ସୁନ୍ଦର ସୁଗନ୍ଧିତ ଫୁଲ ଆଣିଦିଅନ୍ତି । ଜାଳିବାପାଇଁ ଏବଂ ହବନ ନିମନ୍ତେ ସମିଧା ଆଣି ଦିଅନ୍ତି । ସବୁଜ ସୁନ୍ଦର କୁଶ ସଂଗ୍ରହ କରି ଆଣନ୍ତି ।

Digitized by srujanika@gmail.com

ତୁଳସୀ, ବେଲ ତଥା ପ୍ରସାଦ ରଖିବାକୁ ବଡ଼ ବଡ଼ କଦଳୀପତ୍ର ଆଣି ଦିଅନ୍ତି । ପୂଜା-ନିମନ୍ତେ ଦୂବ ଆଣନ୍ତି । ହାତ ପାଦ ଧୋଇବା ନିମନ୍ତେ ଶୁଦ୍ଧ ସ୍ଥାନରୁ କୋମଳ ପୀତବର୍ଣ୍ଣୀ ମୃତ୍ତିକା ଆଣି ଦିଅନ୍ତି । ଏ ସବୁ ସଂଗ୍ରହକରି ନେଇ ଆସି ସଜାଡ଼ି ରଖନ୍ତି । ତା ଭିତରେ ମାତା ଆପଣାର ନିତ୍ୟକର୍ମ ସାରି ଥାଆନ୍ତି । ଇନ୍ଦ୍ର ଜଳ ଆଣନ୍ତି । ତାଙ୍କର ସ୍ନାନ ସମାପନ କରି ନିଜେ ସ୍ନାନ କରନ୍ତି । ପୂଜାର ସାମଗ୍ରୀ ସଜାଡ଼ି ଦେଇ ଅଗ୍ନି ପ୍ରଜ୍ଜ୍ୱଳିତ କରି ଦିଅନ୍ତି । ଦୁଧ ଆଦି ଗରମ କରନ୍ତି । ମାତାଙ୍କର ବାସନକୁସନ ଓ ପୂଜାର ପାତ୍ରମାନଙ୍କୁ ଶୁଦ୍ଧ କରିଦିଅନ୍ତି । ପୂଜା କରିସାରି ମା' ପ୍ରସାଦ ପାଇବା ପରେ ସେ ତାଙ୍କର ଉଚ୍ଛିଷ୍ଟ ପାତ୍ର ମାଜି ଦିଅନ୍ତି, ଘର ଓଳେଇ ଗୋବରେଇ ବ୍ୟବସ୍ଥା କରି ପୁଣି ଜଙ୍ଗଲକୁ ଯାଇ ସେହି ସମସ୍ତ ଆବଶ୍ୟକ ବସ୍ତୁ ସଂଗ୍ରହ କରି ଆଣନ୍ତି ଓ ପୁନଶ୍ଚ ସେବାରେ ଉପସ୍ଥିତ ହୁଅନ୍ତି । ସେ ଅତ୍ୟନ୍ତ ସାବଧାନ ସହକାରେ ମାତାଙ୍କର ସେବାରେ ନିୟୋଜିତ ରହୁଥିଲେ । ସାମାନ୍ୟ ସଙ୍କେତ ମାତ୍ରକେ ଦଉଡ଼ି ଯାଉଥିଲେ । ସେ ଶୋଇ ସିବାପରେ ମଧ୍ୟ ତାଙ୍କର ସେବା ତଥା ପଙ୍ଖା କରିବା ଆଦି କାମରେ ସେ ଆପଣାକୁ ନିଯୁକ୍ତ ରଖୁଥିଲେ ।

ସେହି ଶ୍ରେଷ୍ଠ ବାଳକଟିର ଏଭଳି ନିଷ୍ଠାପର ସେବାରେ ଦିତି ତାହା ଉପରେ ଅତ୍ୟଧିକ ପ୍ରସନ୍ନ ହେଲେ । ତାକୁ ଜୀବନରୁ ବଳି ଭଲ ପାଇବାକୁ ଲାଗିଲେ । ବାରମ୍ବାର ମନା କରନ୍ତି—'ଏତେ ପରିଶ୍ରମ କରନା, କିଛି ବିଶ୍ରାମ କର' ମାତ୍ର ଇନ୍ଦ୍ରଙ୍କର ତ ଛନକା ପଶିଥିଲା ତାଙ୍କର, ଭୋଜନ ବିଶ୍ରାମ ନିମନ୍ତେ ବେଳ କେଉଁଠି ଥିଲା !''

ଇନ୍ଦ୍ର ପ୍ରତ୍ୟକ୍ଷ ସେବା ତ କରୁଥିଲେ; ମାତ୍ର ପରୋକ୍ଷରେ ତାଙ୍କୁ ସର୍ବଦା ଭୟ ଆଚ୍ଛନ୍ନ କରି ରଖିଥିଲା । ସେ ଭାବୁଥିଲେ—''ଏହାଙ୍କର ବ୍ରତ ନିର୍ବିଘ୍ନରେ ସମ୍ପୂର୍ଣ୍ଣ ହେଲେ ମୋର ମଙ୍ଗଳ ହେବ ନାହିଁ । ସେ ସର୍ବଦା ଦିତିଙ୍କର ବ୍ରତରେ ଛିଦ୍ର ଅନ୍ୱେଷଣ କରିବାରେ ନିମଗ୍ନ ରହୁଥିଲେ । ସାମାନ୍ୟତମ ତ୍ରୁଟି ଦେଖିଲେ ତାଙ୍କର ଗର୍ଭହାନି କରିବାକୁ ସୁଯୋଗର ଅପେକ୍ଷାରେ ଥିଲେ । ଯେପରି ଗର୍ଭରେ ସମସ୍ତ ବଢି ଯାଉଥିଲା, ସେପରି ତାଙ୍କର ଚିନ୍ତା ମଧ୍ୟ ବଢ଼ି ବଢ଼ି ଯାଉଥିଲା । ସେ ଆପଣାକୁ ସେହି ଭଳି ଗୋପନ କରି ରଖିଥିଲେ, ଯେପରି ବ୍ୟାଧ ମୃଗଚର୍ମ ଘୋଡ଼େଇ ହୋଇ ମୃଗକୁ ପାଶବଦ୍ଧ କରିବା ନିମନ୍ତେ ଆପଣାକୁ ଲୁଚେଇ ରଖେ । ସେ ଆପଣାକୁ ଏଭଳି ପ୍ରକଟ କରି ନ ଥିଲେ, ଯେପରି ବିଧବା ଆପଣାର ଗର୍ଭ ପ୍ରକଟିତ କରେ ନାହିଁ, ଯେପରି କୃପଣ ଆପଣାର ଧନ ଗୋପନରେ ରଖିଥାଏ, ଯେପରି ରାଜା ଆପଣାର ଗୁପ୍ତ ମନ୍ତ୍ରଣା ଲୁଚେଇ ରଖେ, ଯେପରି ଚୋର ଅପହୃତ ଦ୍ରବ୍ୟ ଗୋପ୍ୟ କରେ, ଯେପରି କୁଳୀନା ସ୍ତ୍ରୀ ଆପଣାର ଅଙ୍ଗ ଅପ୍ରକାଶିତ କରି ରଖିଥାଏ, ଯେପରି ଶୀଳବନ୍ତ ପୁରୁଷ ଆପଣାର ଦାନ ପୁଣ୍ୟ ଓ ସତ୍କର୍ମକୁ ଗୋପନ ରଖନ୍ତି । ଇନ୍ଦ୍ର ଏହା ପ୍ରକଟିତ ହେବାକୁ ଦେଉ ନ ଥିଲେ ଯେ ମୁଁ ଇନ୍ଦ୍ର ଏବଂ କୌଣସି ସ୍ୱାର୍ଥବଶତଃ ସେବା କରୁଛି । ସେ ଆପଣାର

Digitized by srujanika@gmail.com

ବ୍ୟବହାରରେ ଆପଣାକୁ ନିଃସ୍ୱାର୍ଥ ସିଦ୍ଧ କରିବାକୁ ଚାହୁଁଥିଲେ । ସେ ବ୍ରତସ୍ଥିତା ଦିତିଙ୍କର ବ୍ରତ ଭଙ୍ଗ କରିବାକୁ ଅବସର ଅନ୍ୱେଷଣ କରି କରି ତାଙ୍କର ସେବା କରିବାକୁ ତତ୍ପର ରହିଥିଲେ ।

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍, ଏଭଳି ସେବା କରି କରି ପ୍ରାୟ ଏକବର୍ଷ ହେଲା । ବର୍ଷ ପୂର୍ଣ୍ଣ ହେବାକୁ ମାତ୍ର ଦୁଇ ଚାରିଦିନ ରହିଥାଏ । ସେ ନିରନ୍ତର ଛିଦ୍ରାନ୍ୱେଷଣରେ ଆପଣାକୁ ନିୟୋଜିତ କରି ରଖିଥାନ୍ତି । ଦିନକର କଥା । ବ୍ରତ ଧାରଣ କରି ସେ ଅତ୍ୟନ୍ତ କ୍ଷୀଣ ହୋଇ ଯାଇଥିଲେ । ବିଧିର ବିଧାନରେ ସେ ବିମୋହିତ ଭଳି ଥିଲେ । ଶରୀରରେ ଆଳସ୍ୟ ଅନୁଭବ କରିବାକୁ ଲାଗିଲେ । ସନ୍ଧ୍ୟା ସମୟ । ସେ କିଛି ଆହାର କରି ନେଇଥିଲେ । ଖାଇସାରି ନା ଆଚମନ କଲେ ନା ମୁହଁ ଧୋଇଲେ । ସେହି ଭଳି ଭାବରେ ହାତ ପାଦ ନ ଧୋଇ ସେ କେଶ ଖୋଲି ଶୋଇଗଲେ ଏବଂ ଶୋଇବା ମାତ୍ରକେ ନିଦ ଆସିଗଲା ।"

ଏଭଳି ଅବସ୍ଥାରେ ତାଙ୍କୁ ଶୋଇଥିବା ଦେଖି ଇନ୍ଦ୍ର ଅତ୍ୟନ୍ତ ପ୍ରସନ୍ନ ହେଲେ । ଏକ ତ ସନ୍ଧ୍ୟା ସମୟରେ ଶୋଇବା ପାପ । ତା ଉପରେ ଉଚ୍ଛିଷ୍ଟ ମୁଖରେ ହାତ ପାଦ ନ ଧୋଇ, ବାଳ ମୁକୁଳା କରି ମୁହଁମାଡ଼ି ଶୋଇବା । ଏହା ବ୍ରତଚାରୀ ପକ୍ଷରେ ଏକ ଅସଦାଚାର । ଆଉ କ'ଣ ବାକି ରହିଲା । ଇନ୍ଦ୍ର ତ ନିଜେ ଯୋଗୀ । ଆପଣାର ଯୋଗ ବଳରେ ଅତ୍ୟନ୍ତ ଲଘୁରୂପ ଧାରଣକରି, ବଜ୍ର ଧାରଣ କରି ତାଙ୍କର ଉଦର ମଧ୍ୟରେ ପ୍ରବେଶ କଲେ । ଗର୍ଭ ପୂର୍ଣ୍ଣ ହୋଇ ସାରିଥିଲା । ଦିତି ଶ୍ରମ ହେତୁ ଅଚେତ ପ୍ରାୟ ହୋଇ ରହିଥିଲେ । ସେ ପେଟରେ କ'ଣ ହେଉଛି ଜାଣି ପାରିଲେ ନାହିଁ । ଇନ୍ଦ୍ର ବଜ୍ରଦ୍ୱାରା ସେଇ ସୁବର୍ଣ୍ଣବର୍ଣ୍ଣ କାନ୍ତିବନ୍ତ ତେଜ ଜାଜ୍ୱଲ୍ୟ ଗର୍ଭକୁ ସାତଖଣ୍ଡ କରିଦେଲେ । ଖଣ୍ଡିତ ହେବା ହେତୁ ସେମାନେ ସମସ୍ତେ ରୋଦନ କରିବାକୁ ଲାଗିଲେ । ଇନ୍ଦ୍ର ଭୟଭୀତ ହେଉଥିଲେ । ଏମାନେ କ୍ରନ୍ଦନ କଲେ ହୋଇପାରେ ଦିତି ଉଠିପଡ଼ିବେ ଏବଂ ମୋତେ ଅଭିଶାପ ଦେଇ ଭସ୍ମ କରିଦେବେ । ତେଣୁ ସେ ବାରମ୍ବାର ମାରୁଦ ମାରୁଦ ଉଚ୍ଚାରଣ କରୁଥିଲେ—ଅର୍ଥାତ୍ କାନ୍ଦ ନାହିଁ, କାନ୍ଦ ନାହିଁ, କହୁଥିଲେ । ଯେତେବେଳେ ସାତଖଣ୍ଡ କରିବା ପରେ ମଧ୍ୟ ସେମାନେ ମଲେ ନାହିଁ; ବରଂ ଗୋଟିଏ ବାଳକ ସାତୋଟି ବାଳକରେ ପରିଣତ ହେଲେ, ସେତେବେଳେ ଇନ୍ଦ୍ର ସେଇ ସାତୋଟିକୁ ପୁନଶ୍ଚ ସାତ ସାତ ଖଣ୍ଡରେ ପରିଣତ କଲେ । ଏପରି ଭାବରେ ସେମାନେ ଅଣଚାଶ ଖଣ୍ଡ ହେଲେ । ସେମାନେ ସମସ୍ତେ ହାତ ଯୋଡ଼ି ଇନ୍ଦ୍ରଙ୍କୁ କହିଲେ—"ହେ ଦେବେନ୍ଦ୍ର ! ତୁମେ ଆମକୁ କାହିଁକି ମାରିବାକୁ ଚାହୁଁଛ ? ତୁମର ଏବଂ ଆମମାନଙ୍କର ପିତା ଜଣେ । ଆମେ ତ ତୁମର ଭାଇ । ଭାଇକୁ କ'ଣ କିଏ ମାରେ ?' ଏହା ଶୁଣି ଇନ୍ଦ୍ର ପ୍ରସନ୍ନ ହେଲେ ଏବଂ କହିଲେ—'ତମେମାନେ ମୋତେ ମାରିବ ନାହିଁ ତ ? ଯଦି ଭାଇକୁ ଭାଇ ମାରେ ନାହିଁ, ତା'ହେଲେ ମୁଁ ମଧ୍ୟ ତମମାନଙ୍କୁ ମାରିବି ନାହିଁ । ଆଜିଠାରୁ ତୁମେ ଅଣଚାଶ ମରୁଦଗଣ ମୋର ପ୍ରଧାନ ପାର୍ଷଦ ହେଲ ।"

Digitized by srujanika@gmail.com

ଏହା ଶୁଣି ରାଜା ପରୀକ୍ଷିତ ପଚାରିଲେ—"ପ୍ରଭୋ ! ଗୋଟିଏ ଗର୍ଭ ଅଣଚାଶ ଖଣ୍ଡ ହୋଇ ମଧ୍ଯ କପରି ମଲେ ନାହିଁ ? ସମସ୍ତେ କଭଳି ଜୀବିତ ରହିଲେ ?"

ଏହା ଶୁଣି ଶୁକଦେବ କହିଲେ —"ରାଜନ୍, ଏ ବିଷୟରେ କ'ଣ କହିବି ? କାହିଁକି କହିବାକୁ ହେବ – ଈଶ୍ଵରଙ୍କର ମାୟା । ତାଙ୍କର ସେହିଭଳି ଇଚ୍ଛା । ଭଗବାନଙ୍କ ମାୟା ପାଖରେ ଅସମ୍ଭବ କ'ଣ ? ତାଙ୍କୁ 'କର୍ତ୍ତୁମକର୍ତ୍ତୁ ମନ୍ୟଥା କର୍ତ୍ତୁ-ଶକ୍ୟଃ' କୁହାଯାଏ । ସେ ସମ୍ଭବକୁ ଅସମ୍ଭବ ଏବଂ ଅସମ୍ଭବକୁ ସମ୍ଭବ କରିପାରନ୍ତି । ମରୁଦ୍‌ଗଣ ତ ନିତ୍ୟ ଅଟନ୍ତି । ସେମାନଙ୍କର ଶରୀର ଧାରଣ କରିବାକୁ ଥିଲା । ସେମାନେ ଦିତିଙ୍କର ଗର୍ଭରେ ପ୍ରବେଶ କଲେ । ଗର୍ଭ ଏକମାତ୍ର ମରୁଦ୍‌ଗଣ ସଂଖ୍ୟାରେ ଅଣଚାଶ, ଅତଃ ଇନ୍ଦ୍ରଙ୍କୁ ସେ ଏକ ନିମିତ୍ତ ମାତ୍ର କରି ତାଙ୍କ ଦ୍ଵାରା ଅଣଚାଶ ଖଣ୍ଡ କରାଇଲେ । ତା'ପରେ ମରୁଦ୍‌ଗଣ ତ ନିତ୍ୟ, ସେମାନଙ୍କୁ କିଏ ବା ମାରିପାରିବ ? ତଦୁପରି ଯେଉଁ ଭଗବାନଙ୍କର ନାମୋଚ୍ଚାରଣ ନିର୍ମଳ ହୃଦୟରେ ପ୍ରେମପୂର୍ବକ ମୃତ୍ୟୁକାଳରେ କଲେ ମଧ୍ୟ ମନୁଷ୍ୟ ଅମର ହୋଇଯାଏ, ସେହି ଭଗବାନଙ୍କର ପୂଜା ଆରାଧନା ଦିତି କିଛିଦିନ କମ୍ ଏକବର୍ଷ ପର୍ଯ୍ୟନ୍ତ କରିଥିଲେ । ତେଣୁ ଗୋଟିଏକୁ ଅଣଚାଶ ଖଣ୍ଡ କଲେ ମଧ୍ୟ ସେମାନଙ୍କର ମୃତ୍ୟୁ ହେଲା ନାହିଁ ।"

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍, ଯେତେବେଳେ ଗର୍ଭ ମଧ୍ୟରେ ଉଭୟଙ୍କ ଭିତରେ ବୁଝାମଣା ହୋଇଗଲା, ସେତେବେଳେ ଅଣଚାଶ ମରୁଦ୍ ଏବଂ ପଚାଶତମ ଇନ୍ଦ୍ର ଏଭଳି ଏମାନେ ସମସ୍ତେ ମରୁଦ୍‌ଗଣ ଭାବରେ ପରିଚିତ ହେଲେ ଏବଂ ଦିତିଙ୍କର ଗର୍ଭରୁ ଜାତ ହୋଇ ମଧ୍ୟ ଏମାନେ ଦୈତ୍ୟ ହେଲେ ନାହିଁ । ଇନ୍ଦ୍ରଙ୍କର ସମ୍ବନ୍ଧ ହେତୁ ଦେବତାମାନଙ୍କ ମଧ୍ୟରେ ଏମାନଙ୍କୁ ଗଣାଯାଏ । ଯେଉଁଠାରେ ଯଜ୍ଞରେ ଇନ୍ଦ୍ରଙ୍କୁ ଏବଂ ଅନ୍ୟ ଦେବତାମାନଙ୍କୁ ହବିର୍ଭାଗ ଓ ସୋମଭାଗ ମିଳେ, ସେଠାରେ ଇନ୍ଦ୍ରଙ୍କ ସହିତ ଅନ୍ୟାନ୍ୟ ମରୁଦ୍‌ଗଣଙ୍କୁ ମଧ୍ୟ ତାହା ପ୍ରାପ୍ତ ହୁଏ । ଏଭଳି ଯଜ୍ଞକୁ ଭାଗ୍‌ଭୁକ୍ କୁହାଯାଏ । ଏଭଳି ଭାବରେ ଦିତିଙ୍କର ଗର୍ଭରୁ ଜନ୍ମଗ୍ରହଣ କରି ମଧ୍ୟ ମରୁଦ୍‌ଗଣ ଦେବତା ଭାବରେ ସ୍ଵୀକୃତ ହୋଇଛନ୍ତି । ରାଜନ୍, ଆପଣ ମୋତେ ପ୍ରଶ୍ନ କଲେ ମୁଁ ତା'ର ଉତ୍ତର ଦେଲି, କହନ୍ତୁ ଆଉ କ'ଣ ଶୁଣିବାକୁ ଚାହାଁନ୍ତି ?"

ଏହା ଶୁଣି ପରୀକ୍ଷିତ ମହାରାଜ କହିଲେ—"ପ୍ରଭୋ ! ମରୁଦ୍‌ଗଣଙ୍କର କଥା ଶୁଣି ମୁଁ ସୁଖୀ ହୋଇଛି । ମୁଁ ଶୁଣିବାକୁ ଇଚ୍ଛା କରୁଛି, ଯେତେବେଳେ ଦିତିଙ୍କୁ ଏସବୁ ଜଣା ପଡ଼ିଲା ସେ କ'ଣ କଲେ ?" ସେ କ୍ରୋଧ ଇନ୍ଦ୍ରକୁ ଅଭିଶାପ ଦେଲେ ନାହିଁ ତ ?

ଶ୍ରୀ ଶୁକଦେବ କହିଲେ –"ସାଧୁ ରାଜନ୍, ମୁଁ ପରବର୍ତ୍ତୀ କଥା ମଧ୍ୟ କହିବି, ଆପଣ ସାବଧାନ ହୋଇ ଶ୍ରବଣ କରନ୍ତୁ ।"

Digitized by srujanika@gmail.com

—ଛପ୍ପୟ—

ଲଭ୍ୟେଁ ନିତ ପ୍ରତି ଫୁଲ ମୂଲ ଜଲ ଫଲ ଅରୁ ଅଙ୍କୁର ।
ଛିଦ୍ରାନ୍ୱେଷୀ ବନେ ରହେଁ ସେବା ମହିଁ ତତ୍‌ପର ॥
ବିନୁ ପଗ ଧୋୟେ ସାଁଝ ସମୟେ ସୋଇ ଇକ ଦିନ ଦିତି ।
ବ୍ରତ କୋ ଛିଦ୍ର ନିହାରି ଉଦର ମଁହ ପ୍ରବିଶେ ସୁରପତି ॥
କରେ ବଜ୍ର ତେଁ ଗର୍ଭ କେ, ସାତ ଖଣ୍ଡ ପୁନି ରୁଦନ ସୁନି ।
ମା-ରୁଦ୍ କହି ମାରୁତ୍ ଭୟେ, ଏକ ଏକ କେ ସାତ ପୁନି ॥

Digitized by srujanika@gmail.com

# ମରୁଦ୍‌ଗଣ ଚରିତ-ସମାପ୍ତି

ଇନ୍ଦ୍ରସ୍ତୟାଭ୍ୟନୁଜ୍ଞାତଃ ଶୁଦ୍ଧଭାବେନ ତୁଷ୍ଟୟା ।
ମରୁଦ୍ଭିଃ ସହ ତାଂ ନତ୍ୱା ଜଗାମ ତ୍ରିଦିବଂ ପ୍ରଭୁଃ ?
( ଶ୍ରୀ ଭା ° ॥ ୬ ସ୍କ ॥ ୧୮ ଅ ॥ ୭୭ ଶ୍ଳୋ )

## ଛପ୍ପୟ

ଉନଂଶ୍ରେଣ ସୁତ ଭୟେ ଇନ୍ଦ୍ର ପ୍ରକଟେ ସୁର ପାଳକ ।
ଦିତ ପୂଛେ ବ୍ରତ କର୍‌ୟୋ ଏକ ହିତ ଚୌଁ ବହୁ ବାଲକ ॥
ଇନ୍ଦ୍ର ଆଦରତେଁ ଅନ୍ତ ସତ୍ୟ ସବ ବୃତ୍ତ ବତାୟୋ ।
ଛଦ୍ମବେଷ ଚୌଁ ଧରୟୋ ବିନା ଛଲ କହି ସମୁଝାୟୋ ॥
ସୁନି ଦିତ ଅତି ସନ୍ତୁଷ୍ଟ ହ୍ୱୈ, ବୋଲି କାଟ୍‌ୟୋ ଗର୍ଭକୁଁ ।
ହୋହି ବନ୍ଧୁ ତବ ମରୁଦ୍‌ଗନ, ସବ ଜାଓ ମିଲି ସ୍ୱର୍ଗକୁଁ ॥

ସତ୍ୟ ଏପରି ଏକ ବସ୍ତୁ, ଯା'ର ପ୍ରଭାବ ଶତ୍ରୁ ହୃଦୟରେ ମଧ୍ୟ ପଡ଼ିଥାଏ । ଆମେ ଦୁଃଖ ଦୂର କରିବା ନିମନ୍ତେ ଅସତ୍ୟ ଭାଷଣ କରୁଁ । କିନ୍ତୁ ତାଦ୍ୱାରା ଦୁଃଖ କିଛି କାଳ ନିମନ୍ତେ ଲାଘବ ହେବା ଭଳି ମନେହେଲେ ହେଁ ତା'ର ପରିଣାମ ଦୁଃଖଦ ହିଁ ହୋଇଥାଏ । ମାତ୍ର ସତ୍ୟ ଭାଷଣ ହେତୁ ଆରମ୍ଭରେ ଦୁଃଖ ଏବଂ ବିପତ୍ତି ବି ଆସୁଥିବା ଭଳି ମନେହେଲେ ହେଁ ତାକୁ ପରିତ୍ୟାଗ କରିବା ଉଚିତ୍ ନୁହେଁ । କାରଣ ବିଜୟ ସର୍ବଦା ସତ୍ୟର ହିଁ ହୋଇଥାଏ । ଅସତ୍ୟର ବିଜୟ ହୁଏ ନାହିଁ । ଆମର କେହି ଜ୍ୟେଷ୍ଠଙ୍କ ପାଇଁ ଅପରାଧ ହୋଇଛି ଏବଂ ଆମେ ନମ୍ରଭାବରେ ପଶ୍ଚାତାପ ସହିତ ସତାସତ କହିଦେଲେ, ତାଙ୍କ ଉପରେ ସେ ସତ୍ୟର ପ୍ରଭାବ ପଡ଼ିଥାଏ । ଗୋଟିଏ କାହାଣୀ ଅଛି । କେତେଜଣ ଲୋକଙ୍କ ସହିତ ତୀର୍ଥଯାତ୍ରାରେ ଗୋଟିଏ ବାଳକ ମଧ୍ୟ ଯାଉଥିଲା । ରାସ୍ତାରେ ଡକାୟତମାନେ ଆସି ପହଞ୍ଚିଲେ । ସେମାନଙ୍କୁ ଲୁଟିନେଲେ । ସବୁ କିଛି ଲୁଟ୍‌କରି ସେମାନେ ଯେତେବେଳେ ଯିବାକୁ ବସିଲେ, ସେତେବେଳେ ସେହି ଧବଳ ବାଳକଟି ପାଖକୁ ଆସି ଡକାୟତମାନଙ୍କର ସରଦାର ପଚାରିଲା—"କଣରେ

Digitized by srujanika@gmail.com

ପିଲା, ତୋ ପାଖରେ ତ କିଛି ନାହିଁ ?'' ସେ ଉତ୍ତର ଦେଲା—''ଆଜ୍ଞା, ମୋ ପାଖରେ ପଚିଶଟି ମୋହର ଅଛି ।'' ଡକାୟତମାନଙ୍କର ସରଦାର ତା'ର ଶରୀରର ସବୁ ଅଂଶ ଖୋଜି ମଧ୍ୟ ତାହା ପାଇଲା ନାହିଁ । ତା'ପରେ ସେ ରାଗିଯାଇ କହିଲା—''କ'ଣ ରେ ପିଲା ମୋ ସାଙ୍ଗରେ ଥଟ୍ଟା କରୁଛୁ ? ତୋ-ପାଖରେ ତ କିଛି ନାହିଁ !''

ପିଲାଟି କହିଲା—''ଆପଣ ମୋର ଶେଯ ଚିରି ଦେଖନ୍ତୁ, ତା'ର ତୁଳା ସାଙ୍ଗରେ ଲୁଚେଇ ସିଲେଇ କରାଯାଇଛି ।'' ସରଦାର ଚିରି ଦେଖିଲା, ସତକୁ ସତ ସିଲେଇ ହୋଇ ପଚିଶଟି ମୋହର ରହିଛି । ସରଦାର ପଚାରିଲା ''ଆରେ ପିଲା, ତୁ ଲୁଚେଇଥିବା ଧନ କଥା କାହିଁକି କହିଦେଲୁ ! ତୁ କହି ନ ଥିଲେ ଏ ଧନ ବଞ୍ଚି ଯାଇଥାନ୍ତା, କାହିଁକି ନା କେହି ଏ ମଇଳା ଲୋଚାକୋଚା ଶେଯ ଦେଖି ଅନୁମାନ ସୁଦ୍ଧା କରିପାରିବ ନାହିଁ ଯେ ଏହା ଭିତରେ ପଚିଶଟି ମୋହର ରହିଛି ।'' ତାହା ଶୁଣି ସେ ବାଳକ କହିଲା—''ସରଦାର୍, ଆସିଲାବେଳେ ମୋର ମା' କହିଛି—ମିଛ କହିବୁ ନାହିଁ । ତେଣୁ ମୁଁ ସତ କହିଦେଲି ।'' ପିଲାଟିର ସତ କଥାର ଅନେକ ପ୍ରଭାବ ପଡ଼ିଲା ଡକାୟତମାନଙ୍କ ସରଦାର ଉପରେ ଏବଂ ସେ ସମସ୍ତଙ୍କୁ ଲୁଟି ନେଇଥିବା ଧନ ଫେରାଇ ଦେଲା । ଜଣକର ସତ୍ୟ ପାଇଁ ସମସ୍ତଙ୍କର ଧନ ବଞ୍ଚିଗଲା । ତେଣୁ ସତ୍ୟ ଭାଷଣ ଦ୍ୱାରା ସଭିଁଙ୍କର ମଙ୍ଗଳ ହିଁ ହୋଇଥାଏ, ଅମଙ୍ଗଳ ନୁହେଁ ।

ଶ୍ରୀ ଶୁକଦେବ କହୁଛନ୍ତି—''ରାଜନ୍, ଯେତେବେଳେ ଦିତିଙ୍କର ଗର୍ଭରେ ଇନ୍ଦ୍ର ପ୍ରବେଶ କରି ଗର୍ଭକୁ ଅଣଚାଶ ଖଣ୍ଡ କରିଦେଲେ; ସେଇ ମୂଳ ସାତଖଣ୍ଡ ପୃଥକ୍ ପୃଥକ୍ ସାତ ସାତ ଗଣରେ ପରିଣତ ହେଲେ, ସେତେବେଳେ ଇନ୍ଦ୍ର ସେମାନଙ୍କ ସହିତ ଗର୍ଭରୁ ବାହାରି ଆସିଲେ । ସେ ସମୟରେ ଦିତିଙ୍କର ନିଦ ଭାଙ୍ଗିଗଲା । ସେ ଆଖି ଖୋଲି ଦେଖିଲେ, ଇନ୍ଦ୍ରଙ୍କ ସହିତ ଅଣଚାଶ ଜଣ ବାଳକ ଆନନ୍ଦ ମନରେ ଭାଇ ଭାଇ ଭଳିଖେଳୁଛନ୍ତି । ସେ ବିସ୍ମିତ ହେଲେ । ଏଇ ପିଲାଟି ସହିତ ଏମାନେ ଭାଇ-ଭାଇର ବ୍ୟବହାର କିଭଳି କରୁଛନ୍ତି ଏବଂ ମୁଁ ତ କେବଳମାତ୍ର ଗୋଟିଏ ପୁତ୍ର ପାଇଁ ପୁଂସବନ ବ୍ରତ ଧାରଣ କରିଥିଲି ' ଏମାନେ ଅଣଚାଶ ବାଳକ କେଉଁପରି ହେଲେ ? ଏସବୁ ଭାବି ସେ ସେହି ବାଳକବେଶୀ ଇନ୍ଦ୍ରଙ୍କୁ ପଚାରିଲେ—''ପୁଅ, ମୁଁ ତ ମୋର ସଉତୁଣୀ ଅଦିତିର ପୁତ୍ରମାନଙ୍କୁ ଭୟଭୀତ କରିବା ନିମନ୍ତେ ଗୋଟିଏ ମାତ୍ର ପୁତ୍ରପାଇଁ ଏ ବ୍ରତ ଅନୁଷ୍ଠାନ କରିଥିଲି । ମୋର ସଂକଳ୍ପ ଏକମାତ୍ର ପ୍ରବଳ ପରାକ୍ରମୀ ଇନ୍ଦ୍ରହନ୍ତା ପୁତ୍ର ନିମନ୍ତେ ଥିଲା । ତେବେ ଅଣଚାଶ ପୁତ୍ର କିପରି ହେଲେ ? ତଦୁପରି ଏମାନେ ତୋ ସହିତ ଭାଇ ଭାଇର ବ୍ୟବହାର କିଭଳି କରୁଛନ୍ତି ? ଯଦି ତୁ ଏହାର କୌଣସି ରହସ୍ୟ ଜାଣୁ ତାହାଲେ ମୋତେ ସତ କହିଦେ । ଛଳନା କରିବୁ ନାହିଁ ।''

ଆପଣା ମାଉସୀ ଦିତିଙ୍କର କଥା ଶୁଣି ଇନ୍ଦ୍ର ତାଙ୍କର ଛଦ୍ମ ରୂପ ପରିତ୍ୟାଗ କଲେ । ସେ ବଜ୍ରହସ୍ତ ହୋଇ ଦେବେନ୍ଦ୍ର ରୂପରେ ପ୍ରକଟିତ ହୋଇ ହାତଯୋଡ଼ି

Digitized by srujanika@gmail.com

ଅତ୍ୟନ୍ତ ବିନୟ ସହକାରେ କହିଲେ—"ମା' ମୁଁ ତୁମର ସଂକଳ୍ପ ଶୁଣି ସର୍ବଦା ତମର ସେବାରେ ଲାଗି ରହିଥିଲି ।"

ଦିତି ପଚାରିଲେ—"ତୁ ମୋର ସେବା ତନ୍ମୟ ହୋଇ ନିଃସ୍ୱାର୍ଥପର ଭାବେ କରିଛୁ ।"

ଦେବେନ୍ଦ୍ର କହିଲେ—"ମା', ମୁଁ ନିଃସ୍ୱାର୍ଥଭାବରେ ସେବା କରି ନ ଥିଲି । ମୁଁ ସ୍ୱାର୍ଥଭାବକୁ ଗୋପନ ରଖିଥିଲି । ଉପରେ ଉପରେ ନିଃସ୍ୱାର୍ଥତା ପ୍ରକଟିତ କରୁଥିଲି । ମୋର ଧର୍ମର କୌଣସି ବିଚାର ନଥିଲା । ମୁଁ ଅତ୍ୟନ୍ତ ସାବଧାନ ସହକାରେ ଆପଣଙ୍କ ପାଖରେ ରହି ବ୍ରତରେ ଛିଦ୍ରାନ୍ୱେଷଣ କରୁଥିଲି । ଦେଖୁଥିଲି କେତେବେଳେ ଆପଣଙ୍କର ବ୍ରତରେ ତ୍ରୁଟି ଉପସ୍ଥିତ ହେବ ଏବଂ ବ୍ରତଭଙ୍ଗ ହେବ । ଦେବି ! ଆଜି ଆପଣ କେଶ ମୁକୁଳାକରି ସନ୍ଧ୍ୟା ସମୟରେ ମୁହଁମାଡ଼ି, ଉତ୍ତର ଦିଗକୁ ମୁଣ୍ଡ କରି ଶୋଇଥିଲେ । ଏକେତ ସନ୍ଧ୍ୟା ସମୟରେ ଶୋଇବା ପାପ, ଦ୍ୱିତୀୟତଃ ମୁହଁମାଡ଼ି କେଶ ମୁକୁଳାକରି ଶୋଇବା ତଥା ତୃତୀୟତଃ ଉଚ୍ଛିଷ୍ଟ ମୁଖ ହେବା ତତୋଧିକ ତ୍ରୁଟି । ଆଉ ମଧ୍ୟ ଆପଣ ହାତପାଦ ନ ଧୋଇ ଶୋଇ ପଡ଼ିଥିଲେ । ଏହି ଦୋଷଗୁଡ଼ିକ ହେତୁ ଆପଣଙ୍କର ବ୍ରତରେ ବିଘ୍ନ ଉପସ୍ଥିତ ହେଲା । ବ୍ରତରେ ଛିଦ୍ର ଉପସ୍ଥିତ ହେବାରୁ ମୋର ସାହସ ହେଲା ଏବଂ ମୁଁ ଆପଣଙ୍କର ଉଦର ମଧ୍ୟରେ ପ୍ରବେଶ କରି ଆପଣଙ୍କର ଗର୍ଭ ଅଣଞ୍ଚାଶ ଖଣ୍ଡରେ ଖଣ୍ଡିତ କଲି । ପ୍ରଥମରେ ମୁଁ ସାତଖଣ୍ଡ କରିଥିଲି । ଯେତେବେଳେ ସାତଖଣ୍ଡ କରି ମଧ୍ୟ ସେମାନଙ୍କର ମୃତ୍ୟୁ ହେଲା ନାହିଁ, ମୁଁ ପୁଣି ସେହି ସାତଖଣ୍ଡକୁ ସାତ ସାତ ଖଣ୍ଡରେ ପରିଣତ କରିଛି । ଅଣଞ୍ଚାଶ ଖଣ୍ଡରେ ବିଭକ୍ତ ହୋଇ ଯେତେବେଳେ ସେମାନଙ୍କର ମୃତ୍ୟୁ ହେଲା ନାହିଁ, ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ ବୁଝିଗଲି ଯେ ଏହା ସମସ୍ତଙ୍କର ଜୀବନ ଦାତା ପରମ ପୁରୁଷ ଶ୍ରୀମନ୍ନାରାୟଣଙ୍କର ଉପାସନାରୁ ପ୍ରାପ୍ତ ସିଦ୍ଧି ବ୍ୟତୀତ ଅନ୍ୟ କିଛି ନୁହେଁ । ମା', ମୁଁ ମୋର ଜୀବନ ରକ୍ଷା ନିମନ୍ତେ ସ୍ୱାର୍ଥଭାବରେ ପ୍ରେରିତ ହୋଇ ଆପଣଙ୍କର ସେବା କରିଛି । ମୁଁ ଅତ୍ୟନ୍ତ ନୀଚ । ନିଃସ୍ୱାର୍ଥପର ଭାବରେ ସେବା କରିବା ଉଚିତ । ମୋକ୍ଷର କାମନା ନ ରହିବା ଉଚିତ । ଯେଉଁମାନଙ୍କର ସଂସାର ପ୍ରତି ଆକାଙ୍କ୍ଷା ନାହିଁ, ବାସ୍ତବିକ ସେହିମାନେ ହିଁ ଉତ୍ତମ ମନୁଷ୍ୟ । ଯେଉଁମାନେ ଭୋଗ ବିଳାସରେ ମତ୍ତ ରହି ଭଗବାନଙ୍କୁ ବିନା ଭକ୍ତିରେ ଭୋଜନ ପ୍ରଦାନ କରନ୍ତି, ସେମାନେ ଜାଣି ଶୁଣି ଆପଣା ନିମନ୍ତେ ଗାତ ଖୋଳନ୍ତି । ନର୍କର ମାର୍ଗ ପ୍ରଶସ୍ତ କରନ୍ତି ।"

ଦିତି କହିଲେ—"ଏତେ କଥା ଜାଣି ମଧ୍ୟ ତୁ ଏପରି ଭାବରେ ଗର୍ଭହତ୍ୟାର ପାପ କାହିଁକି କଲୁ ?"

ଇନ୍ଦ୍ର ଲଜ୍ଜିତ ହୋଇ କହିଲେ "ମାତା, ମୁଁ ତା'ର କି ଉତ୍ତର ଦେଇ ପାରିବି । ଏହା ମୋର କ୍ଷୁଦ୍ରତା ଛଡ଼ା ଅଉ କ'ଣ ? କ୍ଷୁଦ୍ରତା କ୍ଷୁଦ୍ର ବ୍ୟକ୍ତି ସର୍ବଦା ହିଁ

Digitized by srujanika@gmail.com

କରିବ । ବଡ଼ ଲୋକମାନଙ୍କର ସର୍ବଦା ବଡ଼ କଥା । ମା', ତୁମେ ମୋଠାରୁ ସବୁ ଦିଗରୁ ବଡ଼ । ତୁମେ ମୋର ମାତାଙ୍କର ସହୋଦରୀ ଭଗିନୀ, ମୋର ପୂଜ୍ୟ ପିତାଙ୍କର ସ୍ନେହଶୀଳା ପତ୍ନୀ ଏବଂ ମୋର ମାତୃତୁଲ୍ୟା । ବର୍ତ୍ତମାନ ତ ମୁଁ ତୁମର ଉଦର ମଧ୍ୟରେ ପ୍ରବେଶ କରି ତୁମର ବାଳକମାନଙ୍କ ସହିତ ପୁନଶ୍ଚ ଜନ୍ମଗ୍ରହଣ କରିଛି । ପୁନଶ୍ଚ ମୋର ନବଜୀବନ ଆରମ୍ଭ ହୋଇଛି । ଏଣୁ ମୁଁ ତୁମର ପୁତ୍ର । ମୁଁ ତ କେବଳ ମାତ୍ର ଦୁଷ୍କୃତା ହିଁ କରିଛି । କିନ୍ତୁ ଯା'ର ରକ୍ଷକ ନିଜେ ଶ୍ରୀହରି, ତାଙ୍କର କେହି କୌଣସି ପ୍ରକାର କ୍ଷତି କରିପାରିବ ନାହିଁ । ସୌଭାଗ୍ୟ ବଶତଃ ମୋର ଏଭଳି କ୍ରୂରତା ସତ୍ତ୍ୱେ ଆପଣଙ୍କର ସମସ୍ତ ସନ୍ତାନ ଜୀବିତ ଅଛନ୍ତି ଏବଂ ମୋ ପ୍ରତି କ୍ରୋଧ ନ ହୋଇ ସହୋଦର ଭ୍ରାତା-ମାନଙ୍କ ପରି ସ୍ନେହ ଆଚରଣ କରନ୍ତୁ ।

ଇନ୍ଦ୍ରଙ୍କର ଏଭଳି ସତ୍ୟ ଏବଂ ତଥ୍ୟପୂର୍ଣ୍ଣ କଥା ଶୁଣି ଦିତି ପ୍ରସନ୍ନ ହେଲେ । ସେ କହିଲେ—"ଉତ୍ତମ କଥା, ଭଗବାନଙ୍କର ଯାହା ଇଚ୍ଛା, ତାହା ହିଁ ହୋଇଥାଏ । ମନୁଷ୍ୟ ଗୋଟିଏ କଥା ଭାବେ; ମାତ୍ର ଆଉ ଏକ କଥା ହୁଏ । ସୌଭାଗ୍ୟର କଥା ଯେ ଏମାନେ ତୋତେ ଭାଇ ଭଳି ମାନୁଛନ୍ତି । ତୁ ମଧ୍ୟ ମୋର ଗର୍ଭରୁ ପୁନର୍ବାର ଜନ୍ମଗ୍ରହଣ କରିଛୁ । ତୁ ଏବଂ ଏମାନଙ୍କୁ ମିଶାଇ ଏପରି ତୁମେମାନେ ପଚାଶ ମରୁଦ୍‌ଗଣ ଭାବରେ ପରିଚିତ ହେବ । ଏମାନେ ତୋର ପ୍ରଧାନ ପାର୍ଷଦ ହେବେ । ସର୍ବଦା ତୋର ସେବାରେ ଉପସ୍ଥିତ ରହିବେ । ତୁ ଏହି ସମସ୍ତଙ୍କୁ ସାଙ୍ଗରେ ନେଇ ସ୍ୱର୍ଗକୁ ଗମନ କର । ମୁଁ ତୋର ଶୁଦ୍ଧଭାବ ନିମନ୍ତେ ଅତ୍ୟନ୍ତ ପ୍ରୀତ ହୋଇଛି ।"

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍, ଦିତିଙ୍କର ଭାବ ଦେଖି ଇନ୍ଦ୍ର ହାର୍ଦ୍ଦିକ ପ୍ରସନ୍ନ ହେଲେ । ସେ ଆପଣାର ନବଜନ୍ମ ହୋଇଥିବା ଅନୁଭବ କଲେ । ସେ ଦିତିଙ୍କୁ ପ୍ରଣାମ କରି ମରୁଦ୍‌ଗଣଙ୍କ ସହିତ ସ୍ୱର୍ଗକୁ ଗମନ କଲେ । ଏପରି ଭାବରେ ମରୁଦ୍‌ଗଣ ଦିତିଙ୍କର ଗର୍ଭରୁ ଜାତ ହୋଇ ମଧ୍ୟ ସୋମପାୟୀ ଦେବତା ହେଲେ । ମୁଁ ଅତ୍ୟନ୍ତ ସଂକ୍ଷେପରେ ମରୁଦ୍‌ଗଣଙ୍କର ଉତ୍ପତ୍ତିର ପ୍ରସଙ୍ଗ କହିଛି । ବର୍ତ୍ତମାନ ଆଉ କେଉଁ ବିଷୟ ଶୁଣିବାକୁ ଚାହୁଁଛନ୍ତି ?"

ଏହା ଶୁଣି ରାଜା ପରୀକ୍ଷିତ କହିଲେ—"ପ୍ରଭୋ ! ଯେଉଁ ପୁଂସବନ ବ୍ରତ ଦେବୀ ଦିତି ପାଳନ କଲେ, ସେଇ ବ୍ରତର ବିଧି ନିୟମ ସମ୍ବନ୍ଧରେ ଜାଣିବାକୁ ଇଚ୍ଛା ହେଉଛି; କାରଣ ଏହା ବୈଷ୍ଣବ ବ୍ରତ । ସେହି ବ୍ରତ ପାଳନ କଲେ ଭଗବାନ ବିଷ୍ଣୁ ପ୍ରସନ୍ନ ହୁଅନ୍ତି । ସେ ବିଧି ସମ୍ବନ୍ଧରେ ମୋତେ କହନ୍ତୁ । କେଉଁ ଦିନରୁ ତାହାର ପାଳନ କରାଯାଏ, କେଉଁ ଭଳି ପୂଜନାଦି କ୍ରିୟା ହୋଇଥାଏ ?"

ସୂତ ଶୌନକାଦି ଋଷିମାନଙ୍କୁ କହୁଛନ୍ତି—"ହେ ମୁନିଗଣ, ମହାରାଜ ପରୀକ୍ଷିତଙ୍କର ପ୍ରଶ୍ନ ହେତୁ ଶ୍ରୀ ଶୁକଦେବ ଏହି ପାବନ ବୈଷ୍ଣବ ବ୍ରତର ବିଧି ସମ୍ବନ୍ଧରେ କହିଲେ । କେଉଁ ମନ୍ତ୍ରରେ ପୂଜା ହେବ, କେଉଁ ମନ୍ତ୍ରର ଜପ ଏବଂ କେଉଁ ମନ୍ତ୍ରର

Digitized by srujanika@gmail.com

ହବନ ହେବ ତାହା କହିଲେ । କୋଉଁଦିନଠାରୁ ବ୍ରତ ପାଳନୀୟ, ତାହା ମଧ୍ୟ ବୁଝେଇ ଦେଲେ ।''

ଏହା ଶୁଣି ଶୌନକ କହିଲେ—''ହେ ସୂତ ! ଆମକୁ ମଧ୍ୟ ଏ ବ୍ରତ ସମ୍ବନ୍ଧରେ କହନ୍ତୁ ।''

ଶ୍ରୀ ସୂତ କହିଲେ—''ମହାରାଜ, ଏହି କଥା ପ୍ରସଙ୍ଗରେ ଅଙ୍ଗନ୍ୟାସ, କରନ୍ୟାସ ଆଦି କହି ବସିଲେ, କଥାର ପ୍ରବାହରେ ବାଧା ଉପସ୍ଥିତ ହେବ । ଏଣୁ ମୋର ଇଚ୍ଛା ଏହି ବ୍ରତମାନଙ୍କ ବିଷୟରେ ଏକାଥରକେ ପ୍ରସଙ୍ଗାନୁସାରେ କହିବି । ତା'ପରେ ଆପଣଙ୍କର ଯାହା ଆଜ୍ଞା ହେବ ।''

ଶୌନକ କହିଲେ—''ଉଚିତ କହୁଛନ୍ତି । ମାତ୍ର ଆମେ ଅନ୍ତତଃ ସେଇ ଅଣଚାଶ ମରୁଦ୍‌ଗଣଙ୍କର ନାମ ଶୁଣିବାକୁ ଇଚ୍ଛା କରୁଛୁଁ । ଆପଣଙ୍କର ସ୍ମରଣ ଥିଲେ କହନ୍ତୁ ।''

ଶ୍ରୀ ସୂତ କହିଲେ—''ମହାରାଜ, ଆପଣଙ୍କ କୃପାରୁ ମୋର ସବୁ କିଛି ସ୍ମରଣ ଅଛି । ସେମାନେ ସମସ୍ତେ ଏକତ୍ର ମରୁଦ୍‌ଗଣ ଭାବରେ ଖ୍ୟାତ । ତେବେ ସେମାନଙ୍କର ସ୍ୱତନ୍ତ୍ର ନାମ ମଧ୍ୟ ଅଛି । ଶୁଣନ୍ତୁ—

୧ । ଏକଜ୍ୟୋତି, ୨ । ଦ୍ୱିଜ୍ୟୋତି, ୩ । ତ୍ରିଜ୍ୟୋତି, ୪ । ଚତୁର୍ଜ୍ୟୋତି, ୫ । ଜ୍ୟୋତି, ୬ । ଏକଶକ୍ର, ୭ । ଦ୍ୱିଶକ୍ର, ୮ । ତ୍ରିଶକ୍ର, ୯ । ଇନ୍ଦ୍ରଗତି, ୧୦ । ପ୍ରତି-ସକୃତ, ୧୧ । ମିତ, ୧୨ । ସମ୍ମିତ, ୧୩ । ଅମିତ, ୧୪ । ଋତ-ଜିତ୍, ୧୫ । ସତ୍ୟଜିତ୍, ୧୬ । ସୁଷେଣ, ୧୭ । ସତ୍ୟଜିତ୍ (ଦ୍ୱିତୀୟ), ୧୮ । ଅତିମିତ୍ର, ୧୯ । ଜମିତ୍ରେ, ୨୦ । ପୁରୁମିତ୍ର, ୨୧ । ପୁରାଜିତ୍, ୨୨ । ଋତ, ୨୩ । ଋତଧାତା, ୨୪ । ବିଧାତା, ୨୫ । ଧାରଣ, ୨୬ । ଧ୍ରୁବ, ୨୭ । ବିଧାରଣ, ୨୮ । ମହାତେଜା, ୨୯ । ଈଦୃକ୍ଷ, ୩୦ । ଅଦୃକ୍ଷ, ୩୧ । ଏତାଦୃକ, ୩୨ । ଅମିତାଶନ, ୩୩ । କ୍ରୀଡନ, ୩୪ । ପ୍ରସଦୃକ୍ଷ, ୩୫ । ସରଭ, ୩୬ । ଧାତୁ, ୩୭ । ଦ୍ୟୁତି, ୩୮ । ଧ୍ୱନି, ୩୯ । ଭୀମ, ୪୦ । ଅଭିଯୁକ୍ତ, ୪୧ । କ୍ଷିପ, ୪୨ । ସହ, ୪୩ । ଦ୍ୟୁତି, ୪୪ । ବପୁ, ୪୫ । ଅନାଧୃଷ୍ୟ, ୪୬ । ବାସ, ୪୭ । କାମ, ୪୮ । ଜୟ, ୪୯ । ବିରାଟ୍ ।

ଶ୍ରୀ ସୂତ କହୁଛନ୍ତି—''ହେ ମୁନିଗଣ, ମୁଁ ଆପଣମାନଙ୍କୁ ମରୁଦ୍‌ଗଣଙ୍କର ଉତ୍ପତ୍ତି ପ୍ରକରଣ ଶୁଣେଇଲି । ଏହା ଶୁଣିବା ଓ ଶୁଣେଇବାରେ ଭଗବାନ ବିଷ୍ଣୁ ପ୍ରସନ୍ନ ହୁଅନ୍ତି । ଏହି ଦେବାସୁର ବଂଶର ଶ୍ରବଣାନନ୍ତର ମହାରାଜ ପରୀକ୍ଷିତ ଯେଉଁ ଭକ୍ତ ପକ୍ଷବନକାରୀ ପ୍ରଶ୍ନ ପଚାରିଛନ୍ତି, ତାହା ମୁଁ ଆପଣମାନଙ୍କୁ ଶୁଣେଇବି । ସେଥିରେ ଦୈତ୍ୟକୁଳ ଭୂଷଣ ଭକ୍ତାଗ୍ରଗଣ୍ୟ ମହାମନା ପ୍ରହ୍ଲାଦଙ୍କର ପରମ ପବିତ୍ର ଆଖ୍ୟାନ ରହିଛି ।''

Digitized by srujanika@gmail.com

## ଛପ୍‌ପୟ୍

ଦିତି ଆୟୁସୁ ସିର ଧାରି ମରୁଦ୍‌ଗଣ ସ୍ୱର୍ଗ ସିଧାୟୋ ।
ଇନ୍ଦ୍ର ଭୟେ ଅତି ମୁଦିତ ପ୍ରାନ ଫିରିତେଂ ଜନୁ ପାୟେ ॥
ୟୌଁ ଦିତି କେ ୟେ ପୁତ୍ର ଇନ୍ଦ୍ର ପାର୍ଷଦ କହଲାୟେ ।
ମାତୃଦୋଷ କୌଁ ତ୍ୟାଗ ଅସୁର କୁଲତେ ବିଲଗାୟେ ॥
ପରମ ପୁଣ୍ୟପ୍ରଦ ମରୁଦ୍‌ଗଣ, କୋ ଚରିତ୍ର ତୁମତେ କହ୍ୟୋ ॥
ଅନ୍ୟ ପ୍ରଶ୍ନ ପୂଛୋ ନୃପତି ! ୟହ ପ୍ରସଙ୍ଗ ପୂରନ ଭୟୋ ॥

---

Digitized by srujanika@gmail.com

# ଭଗବାନଙ୍କ ମଧ୍ୟରେ ବିଷମତା କାହିଁକି ?

ସମଃ ପ୍ରିୟଃ ସୁହୃଦ୍ ବ୍ରହ୍ମନ୍ ଭୂତାନାଂ ଭଗବାନ୍ ସ୍ୱୟମ୍ ।
ଇନ୍ଦ୍ରସ୍ୟାର୍ଥେ କଥଂ ଦୈତ୍ୟାନବଧୀଦ୍ ବିଷମୋ ଯଥା ॥
( ଶ୍ରୀ ଭା ୭ ସ୍କ ॥ ୧ମ ଅ ॥ ୧ମ ଶ୍ଲୋକ )

## ଛପ୍ପୟ

ଅବ ପୂଛେଁ ପୁନି ନୃପତି ପ୍ରଭୋ ! ଶଂକା ଇକ ଭାରୀ ।
ସମଦରଶୀ ଭଗବାନ୍ ସୁହୃଦ୍ ସବକେ ସୁଖକାରୀ ॥
ତବ କ୍ୟୌଁ ଦେବନି ହେତୁ ଫେରି ଦୈତ୍ୟନି କୁଁ ମାରେଂ ।
କ୍ୟୌଁ ଅମରନି କୋ ପକ୍ଷ ଲେହିଁ ଅସୁରନି ସଂହାରେଂ ॥
ନାରାୟନ କେ ଗୁନନି ପ୍ରତି, ଶଂକା ମୋ ମନ ମହିଁ ଭଇ ।
ତାହି ନାଶ ଭଗବନ୍ କରେଂ, ବାତ ହୃଦୟେ କୀ କହି ଦଈ ॥

ବେଦ ଶାସ୍ତ୍ରର ବଚନ ପ୍ରତି ବିଶ୍ୱାସ ନ କରିବା ହିଁ ନାସ୍ତିକତା ବୋଲାଏ । ବେଦଶାସ୍ତ୍ରର ବଚନକୁ ସତ୍ୟ ମନେକରି ତା'ର ଆଧାରରେ ପରସ୍ପର ବିରୋଧୀ ପ୍ରତୀତ ହେଉଥିବା ବଚନ ମଧ୍ୟରେ ସମନ୍ୱୟ ସ୍ଥାପନ କରିବା, ମୀମାଂସା କରିବା, ଏହାର ନାମ ଆସ୍ତିକ ଦର୍ଶନ । ସେହିଭଳି, ଈଶ୍ୱର ଯାହା କରନ୍ତି ଭଲ ହିଁ କରନ୍ତି, ଏହି କଥା ଉପରେ ବିଶ୍ୱାସ ରଖିବା ଉଚିତ । ତେବେ ଯଦି କୌଣସି କଥା ବିରୋଧୀ ଭଳି ମନେ-ହୁଏ ତାହେଲେ ସେ ବିଷୟରେ ଶ୍ରଦ୍ଧାପୂର୍ବକ ଶଂକା ପ୍ରକାଶ କରିବାରେ କୌଣସି ଦୋଷ ନାହିଁ । ଯେଉଁମାନଙ୍କ ମନରେ ସନ୍ଦେହ ଉତ୍ପନ୍ନ ହୁଏ ନାହିଁ, ସେମାନେ ତ ବଡ଼ ଭାଗ୍ୟବାନ ପୁରୁଷ । ମାତ୍ର ଯେଉଁମାନଙ୍କ ମନରେ ସନ୍ଦେହ ଜାତ ହୋଇଥାଏ ସେମାନଙ୍କ ପକ୍ଷରେ ମହତ୍ପୁରୁଷଙ୍କ ନିକଟକୁ ଯାଇ ତା'ର ସମାଧାନ କରିନେବା ଉଚିତ । ମହାରାଜ ପରୀକ୍ଷିତ ସେହିଭଳି ଏକ ସୁନ୍ଦର ଶାସ୍ତ୍ରୀୟ ଶଙ୍କା ପ୍ରକାଶ କଲେ ।

ଶ୍ରୀ ସୂତ କହୁଛନ୍ତି --''ଶୁଣନ୍ତୁ, ଯେତେବେଳେ ଦକ୍ଷଙ୍କର ଷାଠିଏ କନ୍ୟାଙ୍କର ବଂଶକଥା ସମାପ୍ତ ହେଲା, ସେତେବେଳେ ମହାରାଜ ପରୀକ୍ଷିତ କଥାର ଖିଅ ନ ଛିଡ଼ୁ ବୋଲି ଶଙ୍କା ପ୍ରକାଶ କଲେ । ମହାରାଜ ଭଗବାନ ଶୁକଦେବଙ୍କୁ ପ୍ରଶ୍ନ କଲେ— ''ପ୍ରଭୋ ! ମୁଁ ଆପଣଙ୍କ ମୁଖରୁ ଅତ୍ୟନ୍ତ ସୁନ୍ଦର ବୃତ୍ର ମୋକ୍ଷେୟ ସମ୍ବାଦ ଶ୍ରବଣ

Digitized by srujanika@gmail.com

କଲି, ଏହି ପ୍ରସଙ୍ଗରେ ହିରଣାକ୍ଷ ବଧ, ଦେବାସୁର ସଂଗ୍ରାମ, ବୃତ୍ରବଧ, ଦକ୍ଷ-ପ୍ରଜାପତିଙ୍କର କନ୍ୟାମାନଙ୍କର ବଂଶର ବର୍ଣ୍ଣନା, ଦେବତା ତଥା ଦୈତ୍ୟମାନଙ୍କର ଉତ୍ପତ୍ତି ତଥା ମରୁଦ୍‌ଗଣଙ୍କର ଚରିତ ଶ୍ରବଣ କଲି । ଏହି ସବୁ କଥାରୁ ମୁଁ ଅନୁଭବ କରୁଛି ଭଗବାନ ଦେବତାମାନଙ୍କ ନିମନ୍ତେ ପକ୍ଷପାତ କରନ୍ତି । ସେ ଅମରବାସୀଙ୍କର କହିବା ଅନୁସାରେ ଦୈତ୍ୟମାନଙ୍କୁ ସଂହାର କରନ୍ତି । ଦେବତାମାନଙ୍କର ପକ୍ଷରୁ ଅସୁରମାନଙ୍କର ବିନାଶ କରନ୍ତି । ଇନ୍ଦ୍ର ସହିତ ସ୍ୱୟଂ ଗରୁଡ଼ାରୂଢ଼ ହୋଇ ଯୁଦ୍ଧକରି ସେମାନଙ୍କୁ ପରାସ୍ତ କରନ୍ତି । ଭଗବାନ ଏପରି କାହିଁକି କରନ୍ତି ? ଏ ତାଙ୍କପାଇଁ ଦେବତା ଯେପରି ଅସୁର ମଧ୍ୟ ସେହିପରି !

ମନୁଷ୍ୟ ଦୁଇଟି କାରଣରୁ ଅନ୍ୟର ଚକ୍ଷୁଶୂଳ ହୋଇଥାଏ । ଏକେତ କାହାରି ପ୍ରତି ଅନୁରାଗ ଓ ଅନ୍ୟପ୍ରତି ଦ୍ୱେଷ ଅଥବା କୌଣସି ପ୍ରକାର ଲୋଭର ବଶବର୍ତ୍ତୀ ହୋଇ ସେ ସେପରି କରିଥାଏ । ଭଗବାନଙ୍କର ଦୃଷ୍ଟିରେ ତ ପ୍ରାଣୀମାନଙ୍କେ ଏକ । ସମସ୍ତେ ତାଙ୍କର ସନ୍ତାନ । ତାଙ୍କର ଦୈତ୍ୟମାନଙ୍କ ପ୍ରତି ଦ୍ୱେଷଭାବ ନ ଥାଏ କିମ୍ବା ଦେବତାମାନଙ୍କ ପ୍ରତି ଅନୁରାଗ ମଧ୍ୟ ନ ଥାଏ । ବର୍ତ୍ତମାନ ଲୋଭର କଥା ଶୁଣନ୍ତୁ । ଯେ ଅପ୍ରାପ୍ୟ ବସ୍ତୁର ପ୍ରାପ୍ତି କାମନା କରେ, ଲୋଭ ତା'ର ଜାତ ହୁଏ । ଭଗବାନଙ୍କ ନିମନ୍ତେ କୌଣସିବସ୍ତୁ ଅପ୍ରାପ୍ୟ ନୁହେଁ । ବ୍ରହ୍ମା ଆଦି ଦେବତାମାନେ ମଧ୍ୟ ତାଙ୍କର ପ୍ରଦତ୍ତ ବିଭୂତି ଉପଭୋଗ କରନ୍ତି । ତାଙ୍କର ଅଣୁମାତ୍ର ଐଶ୍ୱର୍ଯ୍ୟ ପାଇବା ହେତୁ ସେମାନେ ଐଶ୍ୱର୍ଯ୍ୟଶାଳୀ ହୋଇଛନ୍ତି । ସେ ସାକ୍ଷାତ୍ କଲ୍ୟାଣ ସ୍ୱରୂପ । ତେଣୁ ଏହା ମଧ୍ୟ କହି ହେବ ନାହିଁ ଯେ ସେ କୌଣସି ପ୍ରକାର ଲୋଭ ହେତୁ ଦେବତାମାନଙ୍କର ପକ୍ଷ ନେଉଥିବେ; ତା'ହେଲେ ସେ ସେଭଳି ମଣିଷ ବିଷମ ବ୍ୟବହାର କିଭଳି କରନ୍ତି ! ଏ ବିଷୟରେ ମୋର ଅତ୍ୟନ୍ତ ସନ୍ଦେହ ରହିଛି । ଭଗବାନ, ଆପଣ ସର୍ବଜ୍ଞ ଏବଂ ଏ ବିଷୟର ଜ୍ଞାତା । ଆପଣ ମୋର ଶଙ୍କା ସମାଧାନ କରନ୍ତୁ ।

ଶ୍ରୀ ସୂତ କହୁଛନ୍ତି—''ହେ ମୁନିଗଣ ! ମହାରାଜ ପରୀକ୍ଷିତଙ୍କର ଏହି ସନ୍ଦେହ କଥା ଶୁଣି ଶ୍ରୀ ଶୁକଦେବ କ୍ରୋଧିତ ହେଲେ ନାହିଁ । ସେ ରାଜାଙ୍କୁ ଭର୍ତ୍ସନା କରି କହିଲେ ନାହିଁ ଯେ ତୁମେ ଜଣେ ନାସ୍ତିକ, ଭଗବାନଙ୍କ ବିଷୟରେ ଶଂକା କରୁଛ ? ସେ ତାଙ୍କର ଶଂକାକୁ ଅସଙ୍ଗତ ବୋଲି କହିଲେ ନାହିଁ । ବରଂ ସେହି ସନ୍ଦେହର ପ୍ରଶଂସା କଲେ । ଏକଥା ଶୁଣି ସେ ରୋମାଞ୍ଚିତ ହୋଇଉଠିଲେ ଏବଂ ରାଜାଙ୍କ ପ୍ରତି ସାଧୁବାଦ ଜ୍ଞାପନ ପୂର୍ବକ କହିଲେ—''ମହାରାଜ, ଆପଣ ଏକ ଅତ୍ୟନ୍ତ ସୁନ୍ଦର ପ୍ରଶ୍ନ କରିଛନ୍ତି । ଏହି ଶଂକାର ତ ପରମଭାଗବତ ଏମାନଙ୍କ ଶ୍ରୀହରିଙ୍କର ବିଭିନ୍ନ ଚରିତ୍ର ସହିତ ରହିଛି । ଏହି ଶଂକାର ସମାଧାନ ନିମନ୍ତେ ଉଦାହରଣ ସ୍ୱରୂପ ମୁଁ ପରମ ଭାଗବତ ଶ୍ରୀ ପ୍ରହ୍ଲାଦଙ୍କର ଚରିତ୍ର କହିବି । ଆପଣ କହୁଛନ୍ତି ଭଗବାନ ଅସୁରମାନଙ୍କ ପ୍ରତି ଦ୍ୱେଷ ଆଚରଣ କରନ୍ତି । ପ୍ରହ୍ଲାଦ ବି ତ ଅସୁର ! ସେ ସଂସାରରେ ସର୍ବଶ୍ରେଷ୍ଠ ଭକ୍ତଭାବରେ

Digitized by srujanika@gmail.com

ସ୍ୱୀକୃତ । ଯେଉଁଠାରେ ପରମ ଭାଗବତ ଭଗବତ୍ ଭକ୍ତମାନଙ୍କର ଗଣନା କରାଯାଏ, ସେଠାରେ ସର୍ବପ୍ରଥମେ ଶ୍ରୀ ପ୍ରହ୍ଲାଦଙ୍କର ନାମୋଲ୍ଲେଖ କରାଯାଏ । ଅସୁର ହିଁ ତାଙ୍କର ଯଶ କୀର୍ତ୍ତନ କରନ୍ତି ତାହା ନୁହେଁ, ତାଙ୍କର ଯଶୋଗାନ ନାରଦାଦି ମହର୍ଷି ଦେବର୍ଷି ପର୍ଯ୍ୟନ୍ତ କରନ୍ତି । ମୁଁ ମୋର ପିତା ଭଗବାନ କୃଷ୍ଣ ଦ୍ୱୈପାୟନଙ୍କ ମୁଖରୁ ଏହି ବିବର୍ଣ୍ଣିତ କଥା ଶ୍ରବଣ କରିଥିଲି, ଏଣୁ ସେହି କଥା ତାଙ୍କରି ପାଦପଦ୍ମରେ ପ୍ରଣାମ କରି ଆରମ୍ଭ କରିବି । ପ୍ରଥମରେ ଆପଣଙ୍କ ସନ୍ଦେହ ମୋଚନ ସଂକ୍ଷେପରେ କରି ତା'ପରେ ମହା-ଭାଗବତ ପ୍ରହ୍ଲାଦଙ୍କର ପରମ ପବିତ୍ର କଥା ପ୍ରସଙ୍ଗ କହିବି ।

ଦେଖନ୍ତୁ, ଏ ଜଗତରେ ଯାହା କିଛି ଅଛି ସବୁ ଭଗବାନଙ୍କର ବିଳାସ ମାତ୍ର । ଭଗବତ ସତ୍ତାରୁ ହିଁ ଏହି ପ୍ରପଞ୍ଚ ସତ୍ତା ସର୍ଜିତ । ଭଗବାନଙ୍କୁ ଏହାଠାରୁ ପୃଥକ କରି ଦିଅନ୍ତୁ ତା'ପରେ କିଛି ବୋଲି କିଛି ରହିବ ନାହିଁ । କଦଳୀ ଗଛ ନେଇ ତା'ର ବଲ୍କଳ ଖୋଲି ଇଚ୍ଛା କରିବା ଯେ ଗଛଟି ରହିଥାଉ, ତା'ହେଲେ ତାହା ରହିବ ନାହିଁ । ତା'ର ବଲ୍କଳ ଖୋଲି ପ୍ରଥମ ପରେ ଦ୍ୱିତୀୟ, ଦ୍ୱିତୀୟ ପରେ ତୃତୀୟ ଖୋଲି ଖୋଲିଯିବ; ଶେଷରେ କିଛି ରହିବ ନାହିଁ । ପିଆଜର ଆବରଣ ଖୋଲି ଇଚ୍ଛା କରିବେ ଯେ ପିଆଜର ଅସ୍ତିତ୍ୱ ରହିଥାଉ ତାହା ରହିବ ନାହିଁ । ସବୁ ପରସ୍ତ ପୃଥକ କରି ଦିଅନ୍ତୁ କିଛି ରହିବ ନାହିଁ । ସେହିପରି ଭଗବାନଙ୍କ ବାସ୍ତବରେ ନିର୍ଗୁଣ, ଅଜନ୍ମା, ଅବ୍ୟକ୍ତ ଏବଂ ପ୍ରକୃତିର ଅତୀତ ଅଟନ୍ତି । ତଥାପି ମଧ୍ୟ ଆପଣାର ବିଚିତ୍ର ରୂପ ମାୟାର ଆଶ୍ରୟ ନେଇ ସ୍ୱୟଂ ବାଧ୍ୟବାଧକ ଭାବ ପ୍ରାପ୍ତ କରିଥାନ୍ତି ।

ସ୍ୱୟଂ ସଂସାର ହୋଇଛନ୍ତି ଏବଂ ସ୍ୱୟଂ ତାକୁ ପ୍ରକାଶିତ କରୁଛନ୍ତି । ଯେପରି ସୂର୍ଯ୍ୟ ଚକ୍ଷୁ ମଧ୍ୟରେ ରହି ଜ୍ୟୋତିପ୍ରଦାନ କରୁଛନ୍ତି । ଯଦି ଚକ୍ଷୁର ଅଧିଷ୍ଠାତୃଦେବ ସୂର୍ଯ୍ୟ ରହିବେ ନାହିଁ ତେବେ ଆଖି ଥାଇ ମଧ୍ୟ କିଛି ଦେଖିପାରିବ ନାହିଁ । ସେ ଚକ୍ଷୁ ମଧ୍ୟରେ ଅଧିଷ୍ଠାତୃ ରୂପରେ ଅଛନ୍ତି ଏବଂ ବାହାରେ ପ୍ରକାଶ ରୂପରେ ଅଛନ୍ତି । ଆଖି ଥାଇ ମାତ୍ର ବାହାରେ ପ୍ରକାଶ ନ ଥିଲେ କୌଣସି କଥା ଦେଖାଯିବ ନାହିଁ । ଏପରି ଭାବରେ ସେ ନିଜେ ପ୍ରକାଶ୍ୟ ଏବଂ ସେ ପ୍ରକାଶକ । ଆତ୍ମା ତ ନିର୍ଗୁଣ । ଏ ଯେଉଁ ସତ୍ତ୍ୱ ରଜ, ତମ ତିନୋଟି ଗୁଣ ରହିଛି, ତାହା ଆତ୍ମାର ଗୁଣ ନୁହେଁ, ପ୍ରକୃତିର ଗୁଣ । ଯେତେବେଳେ ଭଗବାନ ମାୟାର ଆଶ୍ରୟ ନେଇ ପ୍ରକୃତିର ଗୁଣମାନଙ୍କ ମଧ୍ୟରେ ବିହାର କରୁଥିବା ଭଳି ଦୃଷ୍ଟିଗୋଚର ହୁଅନ୍ତି, ସେତେବେଳେ ଏହି ଗୁଣମାନଙ୍କରେ ନ୍ୟୂନାଧିକତା ପରି-ଲକ୍ଷିତ ହୋଇଥାଏ । ସାମ୍ୟରେ ସୃଷ୍ଟି ନାହିଁ । ଯେତେବେଳେ ଏହି ତିନି ଗୁଣ ସାମ୍ୟାବସ୍ଥାରେ ରହିଥାନ୍ତି, ସେତେବେଳେ ପ୍ରକୃତି ସୁପ୍ତ ହୋଇଥାଏ । ସେ କିଛି ବୋଲି କିଛି କରିପାରେ ନାହିଁ । ଯେଉଁଠାରେ ଗୁଣମାନଙ୍କର ବିଷମତା ଅଛି, ସଂସାର ରଚନା ସେଇଠାରୁ ଆରମ୍ଭ କରେ । କୌଣସି ଗୁଣ କମ୍, କେହି ଅଧିକ ହୁଏ ।

Digitized by srujanika@gmail.com

ଏହା ଶୁଣି ମହାରାଜ ପଗ୍ଭରିଲେ—"ପ୍ରଭୋ, କେତେବେଳେ କେଉଁ କେଉଁ ଗୁଣର ପ୍ରାବଲ୍ୟ ଆସେ ଏବଂ କେତେବେଳେ ତା'ର ନ୍ୟୂନତା ଆସେ ?"

ଏହା ଶୁଣି ଶୁକଦେବ କହିଲେ—"ଏହି ଗୁଣମାନଙ୍କର ବୃଦ୍ଧି ଏବଂ ହ୍ରାସର କାରଣରୁ ହିଁ ସତ୍ୟ, ତ୍ରେତୟା, ଦ୍ୱାପର ଏବଂ କଳିଯୁଗର କଳ୍ପନା କରାଯାଇଛି । ମାତ୍ର ଏମାନଙ୍କ ମଧ୍ୟରେ ଭଗବାନଙ୍କର ଇଚ୍ଛା ହିଁ ପ୍ରଧାନ । ତାଙ୍କର ଇଚ୍ଛାକୁ କ'ଣ ବୋଲି ବୁଝାଯିବା ଉଚିତ । ତାଙ୍କର କ୍ରୀଡ଼ା ହିଁ ପ୍ରଧାନ । କେତେବେଳେ ସତ୍ତ୍ୱ ବୃଦ୍ଧିପ୍ରାପ୍ତ ହୁଏ ତ ରଜ ଏବଂ ତମ ନ୍ୟୂନତା ପ୍ରାପ୍ତ ହୋଇଥାନ୍ତି, କେତେବେଳେ ରଜ ବୃଦ୍ଧି ହେଲେ ସତ୍ତ୍ୱ ଏବଂ ତମର ହ୍ରାସ ହୁଏ ଏବଂ କେତେବେଳେ ତମ ବଢ଼ିଗଲେ ସତ୍ତ୍ୱ ଏବଂ ରଜ ଦୁର୍ବଳ ହୋଇଯାଆନ୍ତି । ତିନିଗୁଣର ଏକ ସଙ୍ଗରେ ବୃଦ୍ଧି ହୁଏ ନାହିଁ ବା ହ୍ରାସ ହୁଏ ନାହିଁ ।"

ଏହା ଶୁଣି ରାଜା ପରୀକ୍ଷିତ ପ୍ରଶ୍ନ କଲେ—"ଭଗବନ୍, କେଉଁଭଳି ଜାଣି ହେବ ଯେ, ବର୍ତ୍ତମାନ ସତ୍ତ୍ୱର ବୃଦ୍ଧି ହୋଇଛି, ବର୍ତ୍ତମାନ ରଜଗୁଣର ପ୍ରାବଲ୍ୟ ଅଛି ଏବଂ ବର୍ତ୍ତମାନ ତମୋଗୁଣର ପ୍ରାଧାନ୍ୟତା ରହିଛି ?"

ଏହା ଶୁଣି ଶ୍ରୀ ଶୁକଦେବ ଉତ୍ତର ଦେଲେ—"ରାଜନ୍, ଯେତେବେଳେ ଭଗବାନ ସତ୍ତ୍ୱଗୁଣର ବୃଦ୍ଧି କରାଇବାକୁ ଇଚ୍ଛା କରନ୍ତି, ସେତେବେଳେ ସେ ଆପଣାର ବିଶେଷ ଶକ୍ତିଦ୍ୱାରା ଦେବତା, ଋଷି, ମୁନି ଆଦି ସତ୍ତ୍ୱଗୁଣୀ ପ୍ରାଣୀମାନଙ୍କ ମଧ୍ୟରେ ପ୍ରବେଶ କରନ୍ତି । ସର୍ବତ୍ର ସତ୍ତ୍ୱଗୁଣର ପ୍ରଭୁତ୍ୱ ବିରାଜିତ ହୁଏ । ଯଜ୍ଞଯାଗ, ଜ୍ଞାନପାଠ, ସନ୍ଥସଙ୍ଗ ଆଦି ଅନୁଷ୍ଠାନର ଆୟୋଜନ ହୁଏ । ସେ ଯେତେବେଳେ ରଜୋଗୁଣର ବୃଦ୍ଧି କରାନ୍ତି, ସେତେବେଳେ ଅସୁରମାନଙ୍କର ବଳବୃଦ୍ଧି ହୋଇଥାଏ ଏବଂ ଦେବତାମାନେ ଦୁର୍ବଳ ହୋଇପଡ଼ନ୍ତି । ଏପରିକି ନାରଦାଦି ପରମ ଜ୍ଞାନୀ ମୁନିମାନଙ୍କୁ ମଧ୍ୟ ଅସୁରମାନଙ୍କର ଇଙ୍ଗିତରେ ଚାଲିବାକୁ ପଡ଼େ ଏବଂ ଅସୁରମାନେ ତ୍ରିଲୋକରେ ସେମାନଙ୍କର ଆଧିପତ୍ୟ ବିସ୍ତାର କରନ୍ତି । ସର୍ବତ୍ର ହାଣକାଟ ହୁଏ । ସମସ୍ତ ପ୍ରାଣୀ କର୍ମ ପ୍ରତି ଅତ୍ୟନ୍ତ ଆସକ୍ତ ହୁଅନ୍ତି । ସମସ୍ତଙ୍କର ଚିତ୍ତ ଚଞ୍ଚଳ ହୋଇଉଠେ । ଯେପରି ହିରଣାକ୍ଷ, ହିରଣ୍ୟକଶିପୁର ସମୟରେ ସମସ୍ତେ ହୋଇଥିଲେ । ଏହାପରେ ଯେତେବେଳେ ଶ୍ରୀହରିଙ୍କ ତମୋଗୁଣର ବୃଦ୍ଧି ଅଭୀଷ୍ଟ ହୁଏ, ସେତେବେଳେ ଯକ୍ଷ ରାକ୍ଷସମାନଙ୍କର ଅଭିବୃଦ୍ଧି ଘଟେ । ସେମାନେ ଅତ୍ୟନ୍ତ ନିଦ୍ରାଳୁ, ମହାନ୍ ପ୍ରମାଦୀ ଏବଂ ବିଷୟ ଲମ୍ପଟ ହୋଇଯାଆନ୍ତି । ଅଧର୍ମକୁ ଧର୍ମ ମନେକରନ୍ତି । ସେ ସମୟରେ ଋଷି, ମୁନି, ଦେବତା, ଗନ୍ଧର୍ବ ସମସ୍ତଙ୍କର ବଳ କ୍ଷୀଣପ୍ରାପ୍ତ ହୋଇଯାଏ । ସମସ୍ତଙ୍କୁ ରାକ୍ଷସମାନଙ୍କର ଅଧୀନସ୍ଥ ହେବାକୁ ପଡ଼େ । ଆତ୍ମା ଏହି ଗୁଣ ସମୂହରୁ ପୃଥକ୍ ।"

Digitized by srujanika@gmail.com

ଏହା ଶୁଣି ମହାରାଜ ପରୀକ୍ଷିତ କହିଲେ—"ଆତ୍ମା ଯଦି ପୃଥକ୍ ତେବେ ତା'ର ପ୍ରତୀତ ରହିବା ଆବଶ୍ୟକ । ଆମକୁ ତ ଭିନ୍ନ ଭିନ୍ନ ଦେହରେ ଭିନ୍ନ ଭିନ୍ନ ଆକୃତି ବିଭିନ୍ନ ନାମରେ ଦେଖାଯାଉଛି । ଏଇ କାରଣରୁ ଆମେ ମନେ କରୁଛୁଁ ଦେହ ହିଁ ଆତ୍ମା ।"

ଏହା ଶୁଣି ଶ୍ରୀ ଶୁକଦେବ ହସି ହସି କହିଲେ—"ମହାରାଜ, ଶରୀର ଆତ୍ମା ନୁହେଁ । ଆତ୍ମା ଏକ । ଶରୀର ଅନେକ । ଶରୀର ଏକ ଦେଶୀୟ ଏବଂ ଆତ୍ମା ସର୍ବ-ବ୍ୟାପକ । ତମେ ଅଗ୍ନି ଦେଖିଛ ?"

ମହାରାଜ କହିଲେ—"ହଁ, ଦେଖିନାହିଁ କାହିଁକି ? କେଉଁଠାରେ ଅଗ୍ନି ବୃତ୍ତାକାର, କେଉଁଠାରେ ବଙ୍କ, କେଉଁଠାରେ ସ୍ଥୂଳ, କେଉଁଠାରେ କମ୍, କେଉଁଠାରେ ବେଶୀ ।"

ତାହା ଶୁଣି ଶ୍ରୀ ଶୁକଦେବ କହିଲେ "ମହାରାଜ, ଆପଣ ଯେଉଁ ବଙ୍କ, ଶ୍ରେଷ୍ଠ ଆଦି ଆକୃତି ଦେଖୁଛନ୍ତି, ତାହା ଅଗ୍ନିର ନୁହଁ । ଅଗ୍ନି ତ ଅରୂପ ତେଜୋମୟ । ତା'ର କୌଣସି ରୂପ ନାହିଁ । ତାହା ଯେଉଁ ଆଶ୍ରୟରେ ପ୍ରକଟିତ ହୁଏ, ସେଇଭଳି ଦେଖାଯାଏ । କାଠ ବଙ୍କ ଥିଲେ ଅଗ୍ନି ମଧ୍ୟ ବଙ୍କ ଦେଖାଯିବ । ଲୌହବୃତ୍ତ, ତହିଁରେ ବୃତ୍ତାକାର ଦେଖାଯିବ । ତା'ର ଶାନ୍ତ ହୋଇଯିବା ପରେ ଅଗ୍ନିର ବିନାଶ ହୁଏ ନାହିଁ । ବ୍ୟଷ୍ଟି ଅଗ୍ନିଶକ୍ତି ସମଷ୍ଟି ଅଗ୍ନି ଶକ୍ତି ସହିତ ମିଳିତ ହୋଇଯାଏ । ଏହା ହୋଇଯାଏ ବୋଲି କହିବା ମଧ୍ୟ ଠିକ୍ ହେବ ନାହିଁ । ଆକାଶ ସର୍ବ ବ୍ୟାପକ । ଘଟରେ, ମଠରେ ସର୍ବତ୍ର ଆକାଶ ବିରାଜିତ । ଘଟ ଭାଙ୍ଗିଗଲେ ଘଟର ଆକାଶ ସର୍ବଗତ ଆକାଶ ସହିତ ମିଶିଯାଏ । ଅର୍ଥାତ୍ ତା'ର ଘଟ ସମ୍ବନ୍ଧ ହେତୁ ଯେଉଁ ବ୍ୟବଧାନ ସଦୃଶ ଦେଖା-ଯାଉଥିଲା ତାହା ରହେନାହିଁ । ଆପଣ କାଠ ଆଦିରେ ଅଗ୍ନିର ଉପଲବ୍ଧି ଖୋଜିବେ ତ ହେବ ନାହିଁ । ଅଗ୍ନିକୁ ପ୍ରକଟିତ କରିବା ନିମନ୍ତେ କୌଣସି ଆଶ୍ରୟର ଆବଶ୍ୟକତା ରହିଛି । ସେଇଭଳି ଭିନ୍ନ ଭିନ୍ନ ଦେହରେ ଭିନ୍ନ ଭିନ୍ନ ରୂପରେ ଆତ୍ମ ଜ୍ୟୋତି ପ୍ରକାଶିତ ହେଉଛି । ତେଣୁ ତା'ର ଉପଲବ୍ଧି ଦେହାଦିରୁ ପୃଥକ୍ ହୁଏ ନାହିଁ । ଯେଉଁପରି ମୂର୍ଖ ପୁରୁଷ କାଷ୍ଠ, ଲୌହ ଆଦି ଅଗ୍ନିକୁ ପ୍ରକାଶିତ କରୁଥିବା ବସ୍ତୁକୁ ଅଗ୍ନି ବୋଲି ମନେ-କରିଥାନ୍ତି, ସେପରି ଅବିବେକୀ ପୁରୁଷ ଏହି ଦେହକୁ ଆତ୍ମା ବୋଲି ମନେକରନ୍ତି । ମାତ୍ର ମନୀଷୀମାନେ, 'କାଳରହିତ ଆତ୍ମା, ସ୍ୱଭାବରହିତ ଆତ୍ମା, କର୍ମ ରହିତ ଆତ୍ମା' ଏଭଳି ପ୍ରତ୍ୟେକ କଥାର ବୋଧପ୍ରାପ୍ତ ହୋଇ ପରଶେଷରେ ଆପଣାର ଅନ୍ତଃକରଣରେ ଅନ୍ତର୍ଯ୍ୟାମୀ ରୂପ ପ୍ରାପ୍ତ ହୋଇଥାନ୍ତି । ସେମାନେ ହିଁ ଆତ୍ମଜ୍ଞାନୀ, ଜୀବନ୍ମୁକ୍ତ ଓ ଭଗବଦ୍‌ଭକ୍ତ ।"

ରାଜା ପରୀକ୍ଷିତ କହିଲେ—"ବର୍ତ୍ତମାନ ଭଗବନ୍, ମୋର ଦ୍ୱିତୀୟ ଶଙ୍କା ହେଲା—ଈଶ୍ୱର ପୂର୍ଣ୍ଣକାମ, ତାଙ୍କର କୌଣସି ଇଚ୍ଛା ନାହିଁ, ଆକାଙ୍କ୍ଷା ନାହିଁ, ତେବେ

Digitized by srujanika@gmail.com

ସେ କାଳ କର୍ମ ପ୍ରଭାବରେ ବନ୍ଧନମୁକ୍ତ ଅଟନ୍ତି ଏ ଦୃଶ୍ୟ ପ୍ରପଞ୍ଚରେ କାହିଁକି ପ୍ରବିଷ୍ଟ ହୁଅନ୍ତି ?''

ଏହା ଶୁଣି ଶ୍ରୀ ଶୁକଦେବ କହିଲେ—''ରାଜନ୍, ପ୍ରବିଷ୍ଟ କପରି ହୁଅନ୍ତି ? ପ୍ରବିଷ୍ଟ ହେବାଭଳି ମନେ ହୁଅନ୍ତି । ତାଙ୍କର ବିନା କାହାର ହେଲେ ସତ୍ତା ନାହିଁ । ତା'ପରେ ଜୀବମାନଙ୍କର ଅନନ୍ତକାଳୀନ ଅଦୃଷ୍ଟ ହେତୁ ଆପଣାର ମାୟାକୁ କର୍ମଫଳ ଭୋଗ କରାଇବା ନିମନ୍ତେ ପ୍ରେରିତ କରନ୍ତି ବା ଏପରି କହନ୍ତୁ, ଯେତେବେଳେ ସେ ଶୋଇ ଶୋଇ କ୍ଳାନ୍ତ ହୋଇପଡ଼ନ୍ତି ସେତେବେଳେ କିଛି ବିନୋଦ କରିବାର ଇଚ୍ଛା କରନ୍ତି । ନିତ୍ୟପୂର୍ଣ୍ଣଙ୍କ ମନ କ୍ଳାନ୍ତ ଓ ବିନୋଦ ହେବା, ଏହା ମଧ୍ୟ ଉପଲକ୍ଷଣ ମାତ୍ର । ହ ଶବ୍ଦର ମାଧ୍ୟମରେ ତ ଏ ଭାବ ଅସମ୍ପୂର୍ଣ୍ଣ ଖଣ୍ଡିତ ଭାବରେ ହିଁ ବ୍ୟକ୍ତ କରାଯାଇ ପାରିବ । ଯେତେବେଳେ ସେ ଭିନ୍ନ ଭିନ୍ନ ଶରୀରର ରଚନା କରିବାକୁ ଚାହାନ୍ତି, ଶରୀରର ରଚନା ନିମନ୍ତେ ରଜୋଗୁଣକୁ ପୃଥକ୍ କରି ଉତ୍ପନ୍ନ କରନ୍ତି । ସେ ବ୍ରହ୍ମା ହୋଇଯାନ୍ତି । ସେ ବହୁ ଧରଣର ସୃଷ୍ଟି କରି ଯାଆନ୍ତି । ସୃଷ୍ଟିକରି ସର୍ଜନାର ପାଳନ କରି ତହିଁରେ ରମଣ କରିବାକୁ ଚାହାନ୍ତି ଓ ସତ୍ତ୍ୱଗୁଣର ସୃଷ୍ଟି ବିଷ୍ଣୁରୂପରେ ପ୍ରକଟିତ ହୁଅନ୍ତି ଏବଂ ମନୁ, ମନୁପୁତ୍ର, ଇନ୍ଦ୍ର, ଦେବତା, ସପ୍ତର୍ଷି ତଥା ମନ୍ୱନ୍ତରାବତାର, ଏ ରୂପ ସଭରୂପରେ ବିଭକ୍ତ ହୋଇ ବିଭିନ୍ନ ଲୀଳା ସମ୍ପାଦନ କରିଥାନ୍ତି । ସୃଷ୍ଟିର ରକ୍ଷା କରନ୍ତି । ଯେତେବେଳେ ସଂହାରର ଇଚ୍ଛା ହୁଏ, ଆପଣାର ତମୋଗୁଣୀ ମୂର୍ତ୍ତି ରୁଦ୍ରଦେବଙ୍କୁ ପ୍ରେରିତ କରନ୍ତି । ସେ ସମସ୍ତ ସୃଷ୍ଟିର ସଂହାର କରନ୍ତି । ଏହି କ୍ରୀଡ଼ା ପ୍ରବାହ ରୂପରେ ନିତ୍ୟ ଚାଲିଆସୁଛି । ଭଗବାନ କାଳର ଅଧୀନ ନୁହନ୍ତି । ସ୍ୱୟଂ କାଳ ଭଗବାନଙ୍କର ଅଧୀନ । ସେ କାଳର କାଳ । ସେ କାଳଦେବ ଜଗତର ନିମିତ୍ତଭୂତ ପ୍ରକୃତି ଓ ପୁରୁଷର ସହକାରୀ ତଥା ଆଶ୍ରୟ ରୂପ ଅଟନ୍ତି । ତେଣୁ ଯେତେବେଳେ ସତ୍ତ୍ୱଗୁଣୀ କାଳ ଉପସ୍ଥିତ ହୁଏ, ସେତେ-ବେଳେ ଭଗବାନ ଦେବତାମାନଙ୍କର ସାହାପକ୍ଷ ହୋଇ ଅସୁରମାନଙ୍କ ସହିତ ଯୁଦ୍ଧ କରିଥାନ୍ତି । ଅସୁରମାନଙ୍କୁ ପରାଜିତ କରନ୍ତି । ଯେତେବେଳେ ରଜୋଗୁଣରେ କାଳ ଆସେ, ସେତେବେଳେ ଦେବତାମାନଙ୍କ ସହିତ କଥା ମଧ୍ୟ ହୁଅନ୍ତି ନାହିଁ । କ୍ଷୀର ସାଗରରେ ଶୟନ କରନ୍ତି, ଲକ୍ଷ୍ମୀଦେବୀ ପଦ ସେବାରେ ନିଯୁକ୍ତ ରହିଥାନ୍ତି । ଦେବତାମାନେ ଗୁହାରି କରୁଥାନ୍ତି । ସେମାନଙ୍କୁ ମାରିପିଟି ଅସୁରମାନେ ସ୍ୱର୍ଗ ପର୍ଯ୍ୟନ୍ତ ଅଧିକାର କରି ନିଅନ୍ତି । ତେଣୁ ରାଜନ୍, ଏପରି ଗୂଢ଼ ଏବାହ ଚାଲିଆଏ । ଭଗବାନଙ୍କର ନା କାହାପ୍ରତି ଦ୍ୱେଷ ଅଛି ନା ଅନୁରାଗ ଅଛି । ସତ୍ତ୍ୱଗୁଣର ଅଭିବୃଦ୍ଧି କାଳରେ ସେ ସତ୍ତ୍ୱ ପ୍ରଧାନ ଅମର ସମାଜର ଉତ୍କର୍ଷ ସାଧନ ନିମନ୍ତେ ଅସୁରମାନଙ୍କର ସଂହାର କରୁଥିବା ଭଳି ମନେ-ହୁଅନ୍ତି । ମାତ୍ର ବାସ୍ତବିକ ତାଙ୍କ ଦୃଷ୍ଟିରେ ଅସୁର, ଯକ୍ଷ, ରାକ୍ଷସ, ତିର୍ଯ୍ୟକ୍ ମନୁଷ୍ୟ ଆଦି ସମସ୍ତ ଚରାଚରର ପ୍ରାଣୀ ସମାନ । ଏ ବିଷୟରେ ମୁଁ ଆପଣଙ୍କୁ ଏକ ସୁନ୍ଦର ପ୍ରାଚୀନ ଉପାଖ୍ୟାନ ଶୁଣାଉଛି, ତାହା ଶ୍ରବଣ କଲେ ଆପଣଙ୍କର ଶଙ୍କାର ସମାଧାନ ହୋଇଯିବ ।''

Digitized by srujanika@gmail.com

ଶ୍ରୀ ସୂତ କହୁଛନ୍ତି—"ହେ ମୁନିଗଣ, ଏହା କହି ମୋର ଗୁରୁଦେବ ରାଜା ପରୀକ୍ଷିତଙ୍କୁ ଯୁଧିଷ୍ଠିର ନାରଦ ସମ୍ବାଦ ଶୁଣାଇବାକୁ ଉଦ୍ୟତ ହେଲେ ।

—ଛପ୍‌ପୟ—

ହସି ବୋଲେ ଶୁକଦେବ-କରୀ ଶଙ୍କା ନୃପ ସୁନ୍ଦର ।
ସ୍ୱୟଂ ସବ ମାୟା ରଚେଁ ପ୍ରକୃତି ପାଲକ ବିଶ୍ୱମ୍ଭର ॥
ଆତ୍ମା ନିର୍ଗୁଣ ନିତ୍ୟ ପ୍ରକୃତି କେ ହୈଁ ତୀନୋଂ ଗୁନ ।
କବହୁଁ ସତ୍ତ୍ୱ ବଢି ଯାଇ କବହୁଁ ତମ କବହୁଁ ରଜୋଗୁନ ॥
ଜବ ଜୈସେ ଗୁନ ବଢ଼ତ ହୈଁ, ହରି ତବ ତୈସୋଇ କରେଁ ।
ସତ୍ତ୍ୱ ବୃଦ୍ଧି କେ ସମୟ ମହଁ, ଅସୁର ମାରି ସୁର ଦୁଃଖ ହରେଁ ॥

---

Digitized by srujanika@gmail.com

# ଭଗବାନ ନିର୍ଗୁଣ ଓ ନିର୍ଲେପ

ନିନ୍ଦନସ୍ତବସତ୍କାରନ୍ୟକ୍କାରାର୍ଥଂ କଳେବରମ୍ ।
ପ୍ରଧାନପରୟୋ ରାଜନ୍ନବିବେକେନ କଳ୍ପିତମ୍ ॥
ହିଂସା ତଦଭିମାନେନ ଦଣ୍ଡପାରୁଷ୍ୟୟୋର୍ଯଥା ।
ବୈଷମ୍ୟମିହ ଭୂତାନାଂ ମମାହମିତି ପାର୍ଥିବ ॥
( ଶ୍ରୀ ଭା ୭ ସ୍କ ॥ ୧ମ ଅ ॥ ୨୨।୨୩ ଶ୍ଳୋକ )

## ଛପ୍ପୟ

ରାଜସୂୟ କେ ସମୟ ଯୁଧିଷ୍ଠିର ନାରଦ ମୁନି ସନ ।
ପୂଛ୍ୟୋ ବିସ୍ମୟ ସହିତ ପ୍ରଶ୍ନ ନୃପ କିହୀ ବିଲକ୍ଷନ ॥
ସଦା କରେ ଶିଶୁପାଲ କୃଷ୍ଣ କୀ ନିନ୍ଦା ପାପୀ ।
ମୁକ୍ତ ଭୟୋ କସ ଦୁଷ୍ଟ ଅଧମ ଭକ୍ତନି ସନ୍ତାପୀ ॥
**ଧର୍ମରାଜ କୀ ବାତ ସୁନି, ନୃପସନ ମୁନି ବୋଲେ ବଚନ ।**
**ନିରଭିମାନ ହରି ମହଁ ନହୀଁ ରାଗ ଦ୍ୱେଷ ନିନ୍ଦା ସ୍ତବନ ॥**

ସଂସାରରେ ବଢ଼ିବାକୁ ତ ସମସ୍ତେ ଇଚ୍ଛା କରନ୍ତି; ମାତ୍ର ଏଇ ଶରୀରକୁ ତ୍ୟାଗକରି ବଢ଼ିବାକୁ ଚାହାନ୍ତି ନାହିଁ । ମୁଁ ବ୍ରାହ୍ମଣ ହେବି, ମାତ୍ର ମୋର ଏଇ ଶରୀରରେ ଶରୀର ଦିବ୍ୟ ହେଉ ଏବଂ ଏହାକୁ ତ୍ୟାଗ କରିବାକୁ ନ ପଡ଼ୁ । ମୁଁ ଧନୀ, ମାନୀ, ଯଶସ୍ୱୀ, ପ୍ରତିଷ୍ଠିତ, ପୂଜିତ, ସଦ୍ଗୁରୁ, ପବିତ୍ର, ଜ୍ଞାନୀ, ଧ୍ୟାନୀ ଯାହା ବି ହୁଏ ନା କାହିଁକି ଏଇ ଶରୀରରେ ହିଁ ତାହା ପ୍ରାପ୍ତ ହେଉ । ଏଇ ଭାବରେ ଦୁଇଟି କଥା ଅଛି । ଏକେତ ବଡ଼ ହେବାର ଅଭିଳାଷ, ଦ୍ୱିତୀୟରେ ଶରୀର ପ୍ରତି ମମତ୍ୱ । ବଡ଼ ହେବାର ଇଚ୍ଛା ଆତ୍ମାର ଗୁଣ । କାରଣ ଆତ୍ମାଠାରୁ ବଡ଼ ବୋଲି କିଛି ନାହିଁ । ଶରୀର ପ୍ରତି ମମତ୍ୱ ଭାବ ଅଜ୍ଞାନତାର ଚିହ୍ନ । ଶରୀରରୁ ମମତ୍ୱ ଚାଲିଗଲେ ମନୁଷ୍ୟ ହିଁ ଶିବ ସ୍ୱରୂପ ହୋଇଥାଏ । ତା'ପରେ ସେ ବଦ୍ଧ ନୁହେଁ, ମୁକ୍ତ ନୁହେଁ, ଜୀବନ୍ମୁକ୍ତ, ବଡ଼ଠାରୁ ମଧ୍ୟ ବଡ଼ ।

Digitized by srujanika@gmail.com

ଯେତେବେଳ ପର୍ଯ୍ୟନ୍ତ ଆମେ ବିଷୟର ଦାସ, ଅନିତ୍ୟ ନାଶବନ୍ତ ଶରୀରକୁ ଆପଣାର ମନେକରି ରହୁଛୁ, ସେତେବେଳ ପର୍ଯ୍ୟନ୍ତ ଦୁଃଖୀ । ଅଶାନ୍ତ । ଯେତେବେଳେ ବିଷୟ-ଦାସ ନ ହୋଇ ହରିଦାସ ହୋଇଯିବା, ଯେତେବେଳେ ନିତ୍ୟ ଶାଶ୍ୱତ ସୌନ୍ଦର୍ଯ୍ୟ ନିଧାନ ଶ୍ରୀ ମନ୍ନାରାୟଣଙ୍କୁ ଆପଣାର ମନେକରିବା, ସେତେବେଳେ ଦୁଃଖର ନାମ ମଧ୍ୟ ରହିବ ନାହିଁ । ଆନନ୍ଦ-ସାଗରରେ ଭିବୁଟୁବୁ ହେବା । ପ୍ରକୃତିର ଗୁଣକୁ ଅବିବେକିତା ହେତୁ ଆମେ ଆପଣା ଭିତରେ ଆରୋପିତ କରି ରଖିଛୁ ।

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍, ଯେତେବେଳେ ମହାରାଜ ଯୁଧିଷ୍ଠିର ରାଜସୂୟ ଯଜ୍ଞ କରିସାରିଲେ ଏବଂ ଯଜ୍ଞ ମଣ୍ଡପରେ ମୁନିମଣ୍ଡଳୀ ମଧ୍ୟରେ ବସିଥିଲେ, ସେଠାରେ ଦେଶ-ଦେଶାନ୍ତର ରାଜାମାନେ ମଧ୍ୟ ଉପସ୍ଥିତ ଥିଲେ । ସ୍ୱୟଂ ସାକ୍ଷାତ୍ ଭଗବାନ ଦ୍ୱାରକାଧୀଶ ମଧ୍ୟ ବିରାଜମାନ ହୋଇଥିଲେ । ସେହି ସମୟରେ ମୁନିମାନଙ୍କର ମର୍ମଜ୍ଞ ଧର୍ମରାଜ ଯୁଧିଷ୍ଠିର ଦେବର୍ଷି ନାରଦଙ୍କୁ ପ୍ରଶ୍ନ କଲେ । ପ୍ରଥମେ ସେ ନାରଦଙ୍କର ବିଧିବଦ୍ଧ ପୂଜା କଲେ ଏବଂ ପ୍ରଣାମ କରି ପଚାରିଲେ—"ଭଗବନ୍, ମୋର ମନ ମଧ୍ୟରେ ଏକ ସନ୍ଦେହ ଜାତ ହୋଇଛି, ଆପଣ ଅନୁମତି ଦେଲେ ପଚାରିବି ।"

ପ୍ରସନ୍ନତା ବ୍ୟକ୍ତ କରି ନାରଦ କହିଲେ—"ରାଜନ୍, ଆପଣ ଅବଶ୍ୟ ପଚାରନ୍ତୁ । ମୁଁ ଏଠାରେ ଉପସ୍ଥିତ ସମସ୍ତ ମୁନି ଋଷିଙ୍କର ସମ୍ମୁଖରେ ଆପଙ୍କର ଶଙ୍କାର ଯଥାମତି, ଯଥାଶକ୍ତି ସମାଧାନ କରିବି ।"

ନାରଦଙ୍କୁ ପ୍ରସନ୍ନ ତଥା ଉତ୍ତର ଦେବା ନିମନ୍ତେ ପ୍ରସ୍ତୁତ ଥିବା ଦେଖି ଧର୍ମରାଜ କର ଯୋଡ଼ି କହିଲେ—"ବ୍ରହ୍ମନ୍, ମୋର ସନ୍ଦେହ ସାମୟିକ । ଆପଣ ବର୍ତ୍ତମାନ ଦେଖିଲେ, ଶିଶୁପାଳ ଭଗବାନଙ୍କୁ କେତେ ଅଯୋଗ୍ୟ କୁବାକ୍ୟ କହୁଥିଲା । କୁଭାଷାରେ ଗାଳି ମଧ୍ୟ ଦେଉଥିଲା । ପରିଶେଷରେ ଭଗବାନଙ୍କର ଚକ୍ରଦ୍ୱାରା ନିହତ ହେଲା । ଆମେ ଭାବିଥିଲୁ ସେ ମୃତ୍ୟୁପରେ ରୌରବାଦି ଘୋର ନର୍କଗାମୀ ହେବ । ମାତ୍ର ସମସ୍ତଙ୍କ ସମ୍ମୁଖରେ ସେ ଈଶ୍ୱରଙ୍କ ମଧ୍ୟରେ ଲୀନ ହୋଇଗଲା । ତା'ର ଜ୍ୟୋତି ଶ୍ରୀହରିଙ୍କର ଅଙ୍ଗରେ ବିଲୀନ ହୋଇଗଲା । ତା'ର ସାଯୁଜ୍ୟ ମୁକ୍ତି ହେଲା । ଏହା କିଭଳି ଆଶ୍ଚର୍ଯ୍ୟ କଥା !"

ନାରଦ ଏହା ଶୁଣି ହସିଲେ ଏବଂ ପଚାରିଲେ—"ରାଜନ୍, ଏଥିରେ ବିସ୍ମିତ ହେବାର କ'ଣ ଅଛି ?"

ରାଜା ଯୁଧିଷ୍ଠିର ଆଶ୍ଚର୍ଯ୍ୟ ଚକିତ ହୋଇ କହିଲେ—"ମହାରାଜ୍, ହୋଇପାରେ ଏହା ଆପଣଙ୍କୁ ଆଶ୍ଚର୍ଯ୍ୟ ମନେହେଉ ନ ଥିବ । ମୋ ପାଇଁ ତ ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ କଥା । ଦେଖନ୍ତୁ, ସାଧାରଣରୁ ସାଧାରଣ ମଣିଷକୁ ଗାଳିଦେଲେ ମଧ୍ୟ ଭର୍ତ୍ସନାକାରୀ ମହାପାପଭାଗୀ ହୋଇଥାଏ । (ସଂସାରରେ ନିନ୍ଦାକାରୀଠାରୁ ବଳି

Digitized by srujanika@gmail.com

କୌଣସି ବଡ଼ ପାପୀ ନାହିଁ ) ଘୋରରୁ ଘୋରତମ ଯାତନାପ୍ରଦ ନର୍କକୁ ନିନ୍ଦୁକ ହିଁ ଯାଇଥାନ୍ତି । ) ଏ ପ୍ରସଙ୍ଗରେ ମୁଁ ଏକ କାହାଣୀ ଶୁଣିଛି, ଆପଣ ଅନୁମତି ଦେଲେ ଶୁଣାଇବି ।''

ନାରଦ କହିଲେ—''ହଁ ରାଜନ୍, କହନ୍ତୁ । ଆପଣ ତ ଧର୍ମର ଅବତାର । ଆପଣ ଯାହା ବି କହିବେ ତାହା ଧର୍ମର ସାର ହିଁ ହେବ ।

ଏହା ଶୁଣି ବିନମ୍ର ସହିତ ଧର୍ମରାଜ କହିଲେ—''ଭଗବନ୍, ମୁଁ ମୁନିମାନଙ୍କ ମୁଖରୁ ସତ୍ତମ ଙ୍ଗ ସମ୍ବନ୍ଧରେ କାହାଣୀଟିଏ ଶୁଣିଥିଲି । କୌଣସି ରାଜାଙ୍କର ବ୍ୟସନ ଥିଲା ଆପଣାର ପ୍ରଶସ୍ତି ଶୁଣିବା । ସେ ନିରନ୍ତର ଏଭଳି କାର୍ଯ୍ୟ କରୁଥିଲେ ଯେ ଲୋକେ ଆସି ତାଙ୍କର ସମ୍ମୁଖରେ ପ୍ରଶଂସା କରୁଥିଲେ । ସେ ପ୍ରଶଂସକମାନଙ୍କୁ ଅନେକ ଧନ ଦେଉଥିଲେ । ପ୍ରଶଂସା ନିମନ୍ତେ ଧର୍ମ ମଧ କରୁଥିଲେ । ଯେତେବେଳେ ସେ ସ୍ୱର୍ଗାରୋହଣ କଲେ, ସେତେବେଳେ ତାଙ୍କୁ କୋଟିକୋଟି ସୁବର୍ଣ୍ଣ ପ୍ରାସାଦ ପ୍ରାପ୍ତ ହେଲା । ମାତ୍ର ସେ ଭିତରକୁ ପ୍ରବେଶ କରି ଦେଖିଲେ, ସେ ପ୍ରାସାଦମାନ ଅଶୁଚିମଳରେ ପରିପୂର୍ଣ୍ଣ ହୋଇରହିଛି । କୌଣସିଠାରେ ରହିବାକୁ ସ୍ଥାନ ମଧ ନାହିଁ । କେବଳମାତ୍ର କେତେକ ଶ୍ରେଷ୍ଠ ସ୍ଥାନ ମଳରହିତ ହୋଇ ରହିଅଛି ।

ରାଜା ଦେବରାଜ ଇନ୍ଦ୍ରଙ୍କୁ ପଚାରିଲେ—''ହେ ଦେବେନ୍ଦ୍ର ! ମୋ ଘରେ ଅଶୁଚିମଳ କାହିଁକି ଭରି ରହିଛି ?''

ଉତ୍ତରରେ ସ୍ୱର୍ଗାଧିପ ଇନ୍ଦ୍ର କହିଲେ—'ରାଜନ୍, ଆପଣ ଆପଣଙ୍କର ମିଥ୍ୟା ପ୍ରଶଂସାରେ ନିରନ୍ତର ଲାଗି ରହିଲେ (ମିଥ୍ୟା ପ୍ରଶଂସା ମଳଭଳି ନିସ୍ସାର )। ଆପଣ ଧନଦାନ କରି ପ୍ରଶଂସା ଶ୍ରବଣ କରୁଥିଲେ; ମାତ୍ର ନିନ୍ଦା ଶ୍ରବଣ କରୁ ନ ଥିଲେ । ଯେଉଁମାନେ ଲୁଚିକରି ଆପଣଙ୍କର ନିନ୍ଦା କରୁଥିଲେ, ସେମାନେ ଏହି ମଳରୁ କିଛି ପରିମାଣ ଖାଇ ନେଇଛନ୍ତି । ତେଣୁ ଏଇତକ ସ୍ଥାନ ମଳମୁକ୍ତ ହୋଇ ରହିଛି । ଆପଣଙ୍କ ରାଜ୍ୟରେ ଜଣେ ବଢ଼େଇ ଅଛି, ଯଦି ସେ ଆପଣଙ୍କର ନିନ୍ଦା କରିଦେବ, ତା'ହେଲେ ଏ ଭବନ ଖାଲି ହୋଇଯିବ, କାରଣ ସେ କେବେହେଲେ କା'ର ନିନ୍ଦା କରେନାହିଁ । ରାଜା ଇନ୍ଦ୍ରଙ୍କର ଅନୁମତି ନେଇ ବେଶ ବଦଳାଇ ସେଇ ବଢ଼େଇ ପାଖକୁ ଗଲେ ଏବଂ କହିଲେ—''ହେ ମହାନୁଭବ, ଆପଣ ଜଣେ ଧର୍ମାତ୍ମା । ଦେଖନ୍ତୁ, ଏ ଦେଶର ରାଜା କେଉଁଭଳି ପରିସ୍ଥା ଲୋଲୁପ ଥିଲା, କେବଳ ଆପଣାର ପ୍ରଶଂସା ହିଁ ଶୁଣୁଥିଲା । ସେ ଅତ୍ୟନ୍ତ ନୀଚ ଥିଲା ।''

ଏହା ଶୁଣି ବଢ଼େଇ ହସିଲା ଏବଂ ହାତ ଯୋଡ଼ି କହିଲା—''ରାଜନ୍, ଆପଣ ମୋ ପ୍ରତି ଅକାରଣ ଅନ୍ୟାୟ କାହିଁକି କରୁଛନ୍ତି ! ସେଇ ସୁବର୍ଣ୍ଣ ଭବନରେ ପରିପୂର୍ଣ୍ଣ ମଳ ମୋତେ କାହିଁକି ଖୁଆଇବାକୁ ଇଚ୍ଛା କରୁଛନ୍ତି ! ମହାରାଜ୍, ମୁଁ ଆଜି ପର୍ଯ୍ୟନ୍ତ

Digitized by srujanika@gmail.com

କାହାର ହେଲେ ନିନ୍ଦା କରିନାହିଁ ଏବଂ କରିବୁ ନାହିଁ ମଧ୍ୟ । ପରନିନ୍ଦାଠାରୁ ବଳି କୌଣସି ବଡ଼ ପାପ ନାହିଁ । ଯେତେବେଳେ ସମସ୍ତେ ଆପଣା ଆପଣାର ପ୍ରକୃତି ଅନୁସାରେ ଅବଶ, ନିନ୍ଦା କରି ଲାଭ କ'ଣ ?''

ମହାରାଜ ଯୁଧିଷ୍ଠିର ନାରଦଙ୍କୁ କହୁଛନ୍ତି—''ବ୍ରହ୍ମନ୍, ଏବେ ମୁଁ ଏ ଭଳି କଥା ଶୁଣି ରାଜା ଉଦାସ ହୋଇ ଫେରିଗଲେ । ହେଉ ହେ ମହର୍ଷି, ନିନ୍ଦାଠାରୁ ବଳି ଏ ସଂସାରରେ ଅନ୍ୟ କୌଣସି ପାପ ମୋର ଦୃଷ୍ଟିଗୋଚର ହେଉ ନାହିଁ । ଦେଖନ୍ତୁ, ରାଜର୍ଷି ଅଙ୍ଗଙ୍କର ପୁତ୍ର ବେନ ବ୍ରାହ୍ମଣମାନଙ୍କର ନିନ୍ଦା କରିଥିଲା । ସେହି କାରଣରୁ ତାକୁ ଭୟଙ୍କର ନର୍କ ଯାତନା ସହନ କରିବାକୁ ପଡ଼ିଥିଲା । ଯଦି ବ୍ରାହ୍ମଣମାନଙ୍କର ନିନ୍ଦାକରି ବେନ ନର୍କ ଗଲେ, ତା'ହେଲେ ଏ ଶିଶୁପାଳ ସାକ୍ଷାତ୍ ବ୍ରହ୍ମଣ୍ୟଦେବ ଭଗବାନ ବାସୁଦେବଙ୍କୁ ଗାଳି ଦେଉଥିଲା । କେବଳ ଏଠାରେ ଏହି ରାଜସୂୟ ଯଜ୍ଞରେ ଗାଳି ଦେଇଛି ତାହା ନୁହେଁ; ଆମେ ତା'ର ବାପକୁ ମଧ୍ୟ ଜାଣିଛୁ । ଯେତେବେଳେ ସେ ଜନ୍ମ ହେଲା, ସେତେବେଳେ ବ୍ୟବହାର ସୌଜନ୍ୟ ଦୃଷ୍ଟିରୁ ତାକୁ ଦେଖିବାକୁ ଯାଇଥିଲୁ । ସେଭଳି ଆମେ ତାଙ୍କ ଘରକୁ ଯିବା ଆସିବା କରୁଥାଉଁ । ସେମାନେ ଆମର ସମ୍ବନ୍ଧୀ । ସେ ମୋର ମାଉସୀ ପୁଅ ଭାଇ । ଯେଉଁଦିନଠାରୁ ସେ ଝଣେଇ କଥା କହିବା ଆରମ୍ଭ କଲା, ସେହିଦିନଠାରୁ ଭଗବାନଙ୍କ ପ୍ରତି ଦ୍ୱେଷ ଆଚରଣ କରିବାକୁ ଲାଗିଲା । ତାଙ୍କ ପ୍ରତି କୁବାଚ୍ୟ କହେ, ତାଙ୍କର ନିନ୍ଦା କରେ । ସେଭଳି ପାପୀକୁ ତ ନର୍କଠାରୁ ବଳି ଆଉ କିଛି ଥିଲେ ତାହା ପ୍ରାପ୍ତ ହେବା କଥା । ଯେଉଁପରି ଦମଘୋଷର ମହାପାପୀ ପୁତ୍ର ଥିଲା ଶିଶୁପାଳ, ସେହିପରି ଥିଲା ତା'ର ପୁତ୍ର ଦନ୍ତବକ୍ର । ସେ ମଧ୍ୟ ଜନ୍ମରୁ ଭଗବାନଙ୍କର ଦ୍ୱେଷ ହିଁ କରୁଥିଲା । ସେମାନେ ଦୁହେଁ ଭଗବାନଙ୍କ ହାତରେ ନିହତ ହେଲେ ଏବଂ ମୁକ୍ତି ପ୍ରାପ୍ତ ହେଲେ ।''

ହସି ହସି ନାରଦ କହିଲେ—''ତେବେ ଆପଣଙ୍କର ସମ୍ମତି କ'ଣ ? ସେମାନଙ୍କୁ କେଉଁ ଦଣ୍ଡ ମିଳିବା ଉଚିତ !''

କ୍ଷୋଭପୂର୍ଣ୍ଣ ସ୍ୱରରେ ଧର୍ମରାଜ କହିଲେ—''ମହାରାଜ, ଏ ପାପ ନିମନ୍ତେ ଯେକୌଣସି ଦଣ୍ଡ ହେଉନା କାହିଁକି ତାହା କମ୍ ହେବ । ମୋ ମତରେ ଯେଉଁ ଜିହ୍ୱା ଅବିନାଶୀ ପରଂବ୍ରହ୍ମ ଭଗବାନ ବାସୁଦେବଙ୍କ ପ୍ରତି କଟୂବାକ୍ୟ କହୁଛି, ସେ ଜିହ୍ୱାରେ ଗଳିତ କୁଷ୍ଠ ହେବା ଉଚିତ । ସେ ଜିହ୍ୱା ଗଳିତ ହୋଇଯିବା କଥା । ତା'ର ଅଙ୍ଗ-ପ୍ରତ୍ୟଙ୍ଗରେ ଅର୍ବୁଦ ଅର୍ବୁଦ ସର୍ପ ଏବଂ ବୃଶ୍ଚିକ ଦଂଶନର ପୀଡ଼ା ନିରନ୍ତର ରହିବା କଥା । ସେସବୁ ତ ହେଲା ନାହିଁ ବରଂ ତାକୁ ମୁକ୍ତି ମିଳିଲା, ଯା' ଲାଗି ଜନ୍ମ-ଜନ୍ମାନ୍ତର ସ୍ୱାଧ୍ୟାୟ କରି ଋଷିଗଣ ଶୁଖେଇ ଥା'ନ୍ତି । ମହାମନା, ଏ ଘଟଣାରେ ଅତି ଆଶ୍ଚର୍ଯ୍ୟାନ୍ୱିତ ହେଉଛୁ । ଆମର ବୁଦ୍ଧି, ବାତ ଆନ୍ଦୋଳିତ ଦୀପଶିଖା ଭଳି ଚଞ୍ଚଳ ଓ ଉଦ୍‌ଭ୍ରାନ୍ତ

Digitized by srujanika@gmail.com

ହେଉଛି । ଆପଣ ସମର୍ଥ, ଆପଣ ସର୍ବଜ୍ଞ ଓ ଭଗବାନଙ୍କର କୃପାପାତ୍ର ଅଟନ୍ତି । ତତ୍ପ୍ରାକରି ଆମମାନଙ୍କର ସନ୍ଦେହ ମୋଚନ କରନ୍ତୁ । ମୋ ଭଳି ଏଠାରେ ଉପସ୍ଥିତ ରାଜା ମହାରାଜା, ଋଷି ମୁନି ମଧ୍ୟ ଏହି ପ୍ରଶ୍ନର ଉତ୍ତର ଶୁଣିବାକୁ ଇଚ୍ଛାକରି ରହିଛନ୍ତି ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍, ଧର୍ମରାଜ ଯୁଧିଷ୍ଠିରଙ୍କର ଏଭଳି ଭଗବନ୍ତ ପ୍ରେମରେ ଆପ୍ଲୁତ କଥା ଶୁଣି ନାରଦ ପରମ ସନ୍ତୁଷ୍ଟ ହେଲେ ଏବଂ ହସି ହସି ଧର୍ମରାଜଙ୍କର ପ୍ରଶ୍ନର ଉତ୍ତର ଦେବାକୁ ଉଦ୍ୟତ ହେଲେ ।"

ନାରଦ କହିଲେ—"ରାଜନ୍, ଆପଣଙ୍କୁ ମୁଁ ପଚାରୁଛି, ଏ ନିନ୍ଦା, ସ୍ତୁତି, ସତ୍କାର ଏବଂ ତିରସ୍କାର ଆଦି ଶରୀରର ନା ଆତ୍ମାର ।"

ଧର୍ମରାଜ କହିଲେ—'ମହାମନି, ଆତ୍ମା ନିମନ୍ତେ ସତ୍କାର-ତିରସ୍କାର କ'ଣ ? ତା'ର କେହି କ'ଣ ନିନ୍ଦାସ୍ତୁତି କରିପାରିବ ? ଆତ୍ମା ତ ନିତ୍ୟ, ଏକରସ, ସତ୍କାର-ତିରସ୍କାରର ସୀମାର ବାହାରେ ତା'ର ଅବସ୍ଥିତି ! ନିନ୍ଦା ସ୍ତୁତିର ସମ୍ବାଦ ଶରୀର ସହିତ ରହିଛି ।"

ନାରଦ କହିଲେ—"ରାଜନ୍, ଆପଣ ଯଥାର୍ଥ କହିଛନ୍ତି । ବର୍ତ୍ତମାନ କହନ୍ତୁ ଶରୀରର ଉତ୍ପତ୍ତି କ'ଣ ଆତ୍ମାରୁ ହୋଇଥାଏ !"

ଧର୍ମରାଜ କହିଲେ—"ନା ହେଁ, ଆତ୍ମାର ଉତ୍ପତ୍ତି ଓ ବିନାଶ ନାହିଁ ? ଶରୀରର ରଚନା ତ ପ୍ରକୃତି ଓ ପୁରୁଷର ଆଶ୍ରୟରେ ହୁଏ । ଏମାନଙ୍କ ମଧ୍ୟରେ ଯେଉଁମାନେ ଉତ୍ତମ ପୁରୁଷ, ସେମାନେ ହିଁ ପୁରୁଷୋତ୍ତମ ବୋଲନ୍ତି !"

ନାରଦ ପ୍ରସନ୍ନତା ବ୍ୟକ୍ତକରି କହିଲେ —"ରାଜନ୍, ଆପଣ ତ ସବୁ ଜାଣନ୍ତି ! ଦେଖନ୍ତୁ, ଏ ମୋଠାରୁ ଶ୍ରେଷ୍ଠ, ଇଏ ବଡ଼ ଏଭଳି ବିଷମତା ଅହନ୍ତା ମମତ୍ୱର କାରଣରୁ ହୋଇଥାଏ । ମୁଁ ବ୍ରାହ୍ମଣ, ମୁଁ ଶ୍ରେଷ୍ଠ, ମୁଁ ପଣ୍ଡିତ ଏଭଳି ଅହଂକୃତିର ନାମ ଅହନ୍ତା । ଏ ମୋର ଧନ, ଏ ମୋର ଜନ, ଏ ମୋର ଗୃହ, ଏ ମୋର କୁଟୁମ୍ବ ପରିବାର ଏଭଳି ମୋର ମୋର ଭାବର ନାମ ମମତା । ଅହନ୍ତା ମମତା ଜୀବମାନଙ୍କ ମଧ୍ୟରେ ଶରୀର ଅଭିମାନ ହେତୁ ହୋଇଥାଏ । ଯେ ଯେତେ ଶରୀରାଭିମାନୀ ହେବ, ତା'ର ସେତେ ଅହନ୍ତା ମମତା ହେବ । ସେ ସେହି ପରିମାଣରେ ସତ୍କାର-ସୁଖୀ ଏବଂ ତିରସ୍କାର-ଦୁଃଖୀ ହେବ । ସେ ସ୍ତୁତି ଶୁଣି ହର୍ଷିତ ହେବ ଏବଂ ନିନ୍ଦା ଶୁଣି ଦୁଃଖୀ ହେବ । ଦେହାଭିମାନୀ ପୁରୁଷଙ୍କର ନିନ୍ଦା କଲେ ମଧ୍ୟ ନରକାଦି ଲୋକକୁ ଯାଇ ନାନା ଯାତନା ଭୋଗ କରିବାକୁ ପଡ଼ିବ । ଯେଉଁ ଶ୍ରୀହରିଙ୍କର ଦେହର ସମ୍ବନ୍ଧରେ ଲେଶମାତ୍ର ମମତା ନାହିଁ, ତାଙ୍କୁ ମାରିଦେଲେ ମଧ୍ୟ—ଯଦି ତାଙ୍କୁ କେହି ମାରି-ପାରିବ ନାହିଁ, ତେବେ ମଧ୍ୟ ପାପ ସ୍ପର୍ଶ କରିବ ନାହିଁ । ଦ୍ୱେଷବଶତଃ ନିନ୍ଦାକର ତେବେ ବି ନିନ୍ଦା ହେତୁ ନରକାଦି ଲୋକର ପ୍ରାପ୍ତି ହେବ ନାହିଁ । ଦେହାଭିମାନୀ

Digitized by srujanika@gmail.com

ଜୀବମାନଙ୍କ ମଧ୍ୟରେ ଅହଂତା ମମତାର ଭାବରୁ ହୋଇଥାଏ । ସର୍ବାତ୍ମା ଶ୍ରୀହରିଙ୍କ ମନରେ ଶ୍ରେଷ୍ଠପଣ ବଡ଼ପଣରେ ଭାବ ଥାଏ ନାହିଁ, କାରଣ ସେ ଏକ ଏବଂ ଅଦ୍ୱିତୀୟ । ସେ କାହାଠାରୁ ବଡ଼ କାହାଠାରୁ ଶ୍ରେଷ୍ଠ ! ଭଗବାନ କାହାକୁ ମାରିଲେ ମଧ୍ୟ ଶତ୍ରୁତା ହେତୁ ଦ୍ୱେଷରେ ନୁହଁ, କଲ୍ୟାଣ ନିମନ୍ତେ ସେ ମାରିଥାନ୍ତି । ସେଥିରେ ମରିବା ଲୋକର କଲ୍ୟାଣ ହିଁ ହୋଇଥାଏ । କାରଣ ଈଶ୍ୱର କଲ୍ୟାଣ ବିଧାନ । ତାଙ୍କ ସହିତ ଜୀବର ଯେଉଁଭଳି ସମ୍ବନ୍ଧ ଥାଉ ନା କାହିଁକି ତା'ର କଲ୍ୟାଣ ହିଁ ହେବ । ଛୁରୀକୁ ଫଳ ଉପରେ ଚଳାଇଲେ ଫଳ ହିଁ କଟିଯିବ । ଫଳକୁ ଛୁରୀ ଉପରେ ଚଳାଇଲେ ବି ସେଇଆ ହେବ । ସେଇଭଳି ଯେ ସ୍ୱୟଂ ଭଗବାନଙ୍କ ସହିତ ସମ୍ବନ୍ଧ କରିନେବ ତା'ର କଲ୍ୟାଣ ହେବ ଏବଂ ଯେ ଦ୍ୱେଷ ବଶତଃ ଭଗବାନଙ୍କୁ ଖୋଜିବ ନାହିଁ ଏବଂ ନିଜେ ଭଗବାନ ହିଁ କରି ସମ୍ବନ୍ଧ ସ୍ଥାପନ କରିନେବେ ଓ ତା'ର ସଂହାର କରିବେ, ତେବେ ମଧ୍ୟ ତା'ର କଲ୍ୟାଣ ହିଁ ହେବ । ଦେହାଭିମାନୀ ଅପର ଦେହାଭିମାନୀର ହତ୍ୟା କଲେ, ମାରିବା ଲୋକ ପାପର ଭାଗୀ ହୁଏ ଏବଂ ମରିବା ବ୍ୟକ୍ତି ମଧ୍ୟ କର୍ମଫଳ ଭୋଗ କରେ । କିନ୍ତୁ ଭଗବାନଙ୍କ ହାତରେ ଯେଉଁମାନେ ନିହତ ହୁଅନ୍ତି, ତାଙ୍କ ସହିତ ବୈରଭାବ ରଖି ମଧ୍ୟ ଯେଉଁମାନେ ପ୍ରାଣତ୍ୟାଗ କରିଥାନ୍ତି, ସେମାନେ ମୁକ୍ତିଲାଭ କରନ୍ତି ।''

ଏହା ଶୁଣି ବିସ୍ମୟ ସହକାରେ ମହାରାଜ ଯୁଧିଷ୍ଠିର ପଚାରିଲେ—''ମହାମନା, ଏପରି ଆପଣ କେଉଁଭଳି କହୁଛନ୍ତି । କ'ଣ ଶତ୍ରୁତାରେ ମଧ୍ୟ ଭଗବାନଙ୍କ ପ୍ରତି ତନ୍ମୟତା ସମ୍ଭବ ?''

ନାରଦ କହିଲେ—''ହୋଇପାରେ କ'ଣ ହୁଏ ! ମୁଁ ଏ ପ୍ରସଙ୍ଗରେ ଏ ସମ୍ବନ୍ଧରେ କହିବି । ଆପଣ ମନୋନିବେଶ କରି ଶ୍ରବଣ କରନ୍ତୁ ।''

## ଛପ୍‌ପୟ

ଜାକୁଁ ହୈ ଅଭିମାନ ଦେହ କୋ ଅତିଶୟ ଭାରୀ ।
ମୈଁ ଅତି ସୁନ୍ଦର ସୁଘର ସୁନ୍ଦରୀ ମେରୀ ନାରୀ ॥
ପାପ ପୁଣ୍ୟ ତେଁ କରେଁ କର୍ମବଶ ସୁଖ ଦୁଃଖ ପାବେଁ ।
ଜିନମହଁ ନହଁ ଅଭିମାନ ଦ୍ୱନ୍ଦ୍ୱ ତିନତେଁ ଗନହଁ ଜାବେଁ ॥
କ୍ରୀଡ଼ାବଶ ହରି ଅବତରହିଁ, ତିନ ମହିମା କୋ କହି ସକେ ।
ଧର୍ମ ହେତୁ ସୁର ରିପୁ ଦଲନ, ହିଂସା ତିନ କହ ଲଗି ସକେ ॥

Digitized by srujanika@gmail.com

# ଯୁଧିଷ୍ଠିର ନାରଦ ସମ୍ବାଦ

ତସ୍ମାତ୍ କେନାପ୍ୟୁପାୟେନ ମନଃ କୃଷ୍ଣେ ନିବେଶୟେତ୍ ।
ମାତୃଷ୍ୱସେୟୋ ବଶ୍ଚୈଦ୍ୟୋ ଦନ୍ତବକ୍ତ୍ରଶ୍ଚ ପାଣ୍ଡବ ॥
ପାର୍ଷଦପ୍ରବରୌ ବିଷ୍ଣୋର୍ବିପ୍ରଶାପାତ୍ପଦାଚ୍ୟୁତୌ ।

( ଶ୍ରୀ ଭା ୭ ସ୍କ ॥ ୧ମ ଅ ॥ ୩୨ ଶ୍ଳୋକ )

## ଛପ୍ପୟ

କୈସେହୁ ସମ୍ବନ୍ଧ କୃଷ୍ଣ ତେଁ କୋ ଜୁର ଜାବେ ।
କାମ, ଦ୍ୱେଷ, ଭୟ, ଭକ୍ତି, ପ୍ରେମ ବଶ ଚିତ ଫଁସି ଜାବେ ॥
ତୋ ହୋବେ କଲ୍ୟାଣ ଭୟୋ ଜଗମହଁ ବହୁତନ କୋ ।
କାମ ଭାବ ବ୍ରଜବଧୂ ଥାପି ପଦ ପାୟୋ ହରି କୋ ॥
ଭୟତେଁ ମାମା କଂସ ନେ, ଯାଦବଗନ ସମ୍ବନ୍ଧ କରି ।
ଶିଶୁପାଳାଦିକ ଦ୍ୱେଷତେଁ, ମୁକ୍ତ ଭୟେ ହରି ହୃଦୟ ଧରି ।

ରାଜା ଆପଣାର ରାଜସଭାକୁ ବହୁମୂଲ୍ୟ ସୁଗନ୍ଧ ଲଗେଇ ଆସିଲେ, ସେଇ ସଭାରେ ବସିଥିବା ତାଙ୍କର ମିତ୍ର, ଶତ୍ରୁ, ସମ୍ବନ୍ଧୀ ସ୍ନେହୀ ତଥା ବନ୍ଦୀ ଆଦି ଯେଉଁମାନେ ଥିବେ, ସମସ୍ତଙ୍କୁ ସୁଗନ୍ଧର ସମାନ ସୁଖପ୍ରାପ୍ତ ହେବ। ସମସ୍ତଙ୍କର ଘ୍ରାଣେନ୍ଦ୍ରିୟ ତୃପ୍ତ ହେବ । ରାଜାଙ୍କ ସହିତ ସେମାନଙ୍କର ଯେଉଁପରି ସମ୍ପର୍କ ଥାଉ ନା କାହିଁକି ତାଙ୍କର ସାନ୍ନିଧ୍ୟ ଲଭ କଲେ ସେମାନେ ସୁଗନ୍ଧରୁ ବଞ୍ଚିତ ହେବେ ନାହିଁ । ଯେଉଁମାନେ ତାଙ୍କର ସାନ୍ନିଧ୍ୟ ଲଭ କରିବେ ନାହିଁ ସେମାନଙ୍କ କଥା ଅଲଗା । କଳ୍ପତରୁ ମୂଳକୁ ଯିଏ ଯିବ, ତା'ର ମନୋକାମନା ଅବଶ୍ୟ ପୂର୍ଣ୍ଣ ହେବ । ଯେ ତା'ଠାରୁ ଦୂରରେ ରହିବ ସେ ତା'ର ଏଇ ଗୁଣରୁ ବଞ୍ଚିତ ରହିବ । ଭଗବାନ ଆନନ୍ଦ ସ୍ୱରୂପ, ମୁକ୍ତି ଧାମ, ସୌନ୍ଦର୍ଯ୍ୟ ମାଧୁର୍ଯ୍ୟର ଗନ୍ତାଘର । ତାଙ୍କ ପାଖରେ ଦ୍ୱେଷ ନାହିଁ, ପର ଆପଣାର ଭେଦ ନାହିଁ । ତାଙ୍କ ସହିତ କେହି ଯେଉଁପରି ସମ୍ପର୍କ ରଖୁନା କାହିଁକି ମୁକ୍ତ ଅବଶ୍ୟ ହେବ । ଜଣେ ଅନ୍ନଛତ୍ର ଖୋଲିଥିଲା, ଯେ ଆସୁଥିଲା ତାକୁ ଖାଇବାକୁ ଦେଉଥିଲା । ଅନେକ ଆସି ତାହାକୁ ଗାଳି ଦିଅନ୍ତି, କୁବାକ୍ୟ କହନ୍ତି । ଲଢ଼େଇ କରିବାକୁ ବାହାରି ପଡ଼ନ୍ତି ।

Digitized by srujanika@gmail.com

ଉଦାରମନା ଦାତା ତାଙ୍କୁ ମଧ ଖାଇବାକୁ ଦିଏ ଏବଂ ଯେଉଁମାନେ ଆସି ପ୍ରଶଂସା କରନ୍ତି ତା'ର ଦାନଧର୍ମର ବଡ଼େଇ କରି କହନ୍ତି, ସେମାନଙ୍କୁ ମଧ ଖାଇବାକୁ ଦିଏ । ପାର୍ଥକ୍ୟ କେବଳ ଏତିକି ଯେ ଦ୍ୱେଷୀ, ନିନ୍ଦୁକମାନଙ୍କୁ ସେଠାରୁ କେବଳ ମାତ୍ର ଭୋଜନ ମିଳୁଥିଲା; ମାତ୍ର ସାଧୁସ୍ୱରୂପ ଗୁଣଗ୍ରାହୀମାନଙ୍କୁ ଭୋଜନ ସହିତ ସେ ସ୍ନେହରସ ମଧ ଦେଉଥିଲା । ପ୍ରେମରେ ପଗା ସେଇ ଭୋଜନ ଏବଂ ସାଦା ଭୋଜନ ମଧ୍ୟରେ ପାର୍ଥକ୍ୟ ତ ଅବଶ୍ୟ ରହିଛି; ତଥାପି ମଧ ପେଟ ଉଭୟ ଶ୍ରେଣୀର ଲୋକଙ୍କର ସମାନ ଭରି ଯାଉଥିଲା । ଧର୍ମାତ୍ମା ଦାତାଙ୍କର ଦ୍ୱାରରୁ କେହି ନିରାଶ ହୋଇ ଫେରୁ ନ ଥିଲେ ।

ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ—"ରାଜନ୍, ଦେଖନ୍ତୁ ଲୋକେ ରାଗଦ୍ୱେଷ ସେ ପର୍ଯ୍ୟନ୍ତ କରନ୍ତି, ଯେ ପର୍ଯ୍ୟନ୍ତ ଏହି ଶବ୍ଦ, ରୂପ, ରସ, ଗନ୍ଧ ଏବଂ ସ୍ପର୍ଶ ସମ୍ବନ୍ଧୀୟ ସାଂସାରିକ ଅସୁନ୍ଦର ବିଷୟମାନଙ୍କରେ ପ୍ରିୟତ୍ୱ ବୁଦ୍ଧି ହେଉଥିବ । ଜଣେ ଇଚ୍ଛା କରେ ଏ ପଦାର୍ଥ ନେବି, ଆଉ ଜଣେ ଇଚ୍ଛା କରେ ମୁଁ ନେବି; ସେତେବେଳେ ରାଗ, ଦ୍ୱେଷ, ଈର୍ଷା, ଲଢ଼େଇ, କଳହ, ଯୁଦ୍ଧ ଆଦି ହୋଇଥାଏ । ଯେତେବେଳେ ମନୁଷ୍ୟ ସବୁ କିଛିକୁ ଆତ୍ମାରୂପ ଦେଖିବା ଆରମ୍ଭ କରେ, ସେତେବେଳେ ସେହି ସମଦର୍ଶୀ ପୁରୁଷକୁ ନା ଦ୍ୱେଷ ନା ରାଗ ନା ମୋହ ନା ଶୋକ ସ୍ପର୍ଶ କରେ । ଭଗବାନଙ୍କର ଏଇ ସଂସାର ପଦାର୍ଥ ସହିତ କୌଣସି ସମ୍ବନ୍ଧ ନାହିଁ । ଯେଉଁ ପୁରୁଷ ସଂସାର ପଦାର୍ଥ ନିମନ୍ତେ ଓ ସଂସାରୀ ପୁରୁଷମାନଙ୍କ ଉପରେ ଆଶା ରଖି ସେମାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କରେ, ତାଙ୍କୁ ବାରମ୍ବାର ଜନ୍ମଗ୍ରହଣ କରିବାକୁ ପଡ଼ିଥାଏ । କିନ୍ତୁ ଯେ ଯେଉଁ କାରଣରୁ ହେଉନା କାହିଁକି, ଯେଉଁ ଭାବରେ ହେଉନା କାହିଁକି ଭଗବାନଙ୍କ ସହିତ ସମ୍ପର୍କ ସ୍ଥାପନ କରିନିଏ, ତା'ର ଆବାଗମନ ସମାପ୍ତ ହୋଇଯାଏ ।"

ଏହା ଶୁଣି ଧର୍ମରାଜ ପଚାରିଲେ—"ମହାମନା, କେଉଁ କେଉଁ କାରଣରୁ ଚିତ୍ତ କୌଣସି ବିଷୟରେ ତନ୍ମୟତା ପ୍ରାପ୍ତ କରେ ?"

ଏହା ଶୁଣି ନାରଦ କହିଲେ—"ରାଜନ୍ କୌଣସି ବସ୍ତୁ ପ୍ରତି ଚିତ୍ତ ତନ୍ମୟ ହେବାର କେବଳ ମାତ୍ର ପାଞ୍ଚୋଟି କାରଣ ରହିଛି । ଏକେତ ଭକ୍ତି ଭାବରେ ଚିତ୍ତ ଭଜନୀୟ ଇଷ୍ଟ ପ୍ରତି ତନ୍ମୟ ହୋଇଯାଏ । ଭକ୍ତ ଯେଉଁ ସମୟରେ ପ୍ରେମାଶ୍ରୁ ବୁହାଇ ଗଦ ଗଦ କଣ୍ଠରେ ଆପଣା ଇଷ୍ଟର ସ୍ତୁତି କରେ, ସେତେବେଳେ ସେ ଏ ସଂସାରକୁ ଭୁଲିଯାଏ । ସେ ବୃତ୍ତିପ୍ରାପ୍ତ ଭକ୍ତ ହେଉ ଭଗବାନଙ୍କ ମଧ୍ୟରେ ଏଭଳି ତଦାକାର ହୋଇଯାଏ ଯେ ତା'ର ଆପଣା ଶରୀର ପ୍ରତି ମଧ ଚେତନତା ରହେ ନାହିଁ । ଏଭଳି ତନ୍ମୟତା ଯେଉଁ ଭକ୍ତଙ୍କୁ ପ୍ରାପ୍ତ ହୋଇଛି, ତାଙ୍କର ପାଦପଦ୍ମରେ ଆମର ପ୍ରଣାମ । ଭୟରୁ ମଧ ତନ୍ମୟତା ଜାତ ହୋଇଥାଏ । ଯାହା ପ୍ରତି ଫାଶୀ ଦଣ୍ଡାଦେଶ ହେବ, ତାକୁ ଭୟର କାରଣରୁ କିଛି ଦେଖାଯାଏ ନାହିଁ । ଚିତ୍ତ ସର୍ବଦା ଚିନ୍ତାରେ ବୁଡ଼ି ରହେ । କେହି ଯଦି କୌଣସି ପ୍ରାଣଦଣ୍ଡ ପାଇ ଯାଉଥିବା ବ୍ୟକ୍ତିକୁ ଦେଖିଥିବେ,

Digitized by srujanika@gmail.com

ସେମାନେ ଅନୁଭବ କରିଥିବେ ଯେ ତା’ର ଏବଂ ଜଣେ ବ୍ରହ୍ମଜ୍ଞାନୀ ମଧ୍ୟରେ ବାହାର ଦେଖାରେ କୌଣସି ପ୍ରଭେଦ ନାହିଁ । ଉଭୟେ ସଂସାର ପ୍ରତି ଉଦାସୀନ । ସେମାନେ ବଡ଼ ଭାଗ୍ୟବାନ, ଯେଉଁମାନଙ୍କୁ ହାର୍ଦ୍ଦିକ ସ୍ନେହ ଦେଉଥିବା ବନ୍ଧୁ ଏବଂ ମୈତ୍ରୀରେ ତନ୍ମୟତା ପ୍ରାପ୍ତ ହୋଇଛି । ମୈତ୍ରୀରେ ତନ୍ମୟତା କ’ଣ ତାହା ସେଭଳି ମିତ୍ର ପ୍ରାପ୍ତ ନ ହେଲେ ଜାଣି ହେବ ନାହିଁ । ଏହା କହିହୁଏ ନାହିଁ, ଏହା ଅନୁଭବର ସାମଗ୍ରୀ । କାମରେ ମଧ୍ୟ ତନ୍ମୟତା ରହିଥାଏ । କୌଣସି ସ୍ତ୍ରୀ କୌଣସି ପୁରୁଷ ପ୍ରତି ଆସକ୍ତ ହେଲେ ବା କୌଣସି ପୁରୁଷ କୌଣସି ସ୍ତ୍ରୀ ପ୍ରତି ଆସକ୍ତ ହେଲେ, ସେମାନଙ୍କୁ ଏ ସଂସାରରେ ତାଙ୍କର ପ୍ରେମୀ ବ୍ୟତୀତ ଆଉ କିଛି ଦେଖାଯାଏ ନାହିଁ । ଶୟନେ, ଜାଗରଣେ, ସର୍ବଦା ସେଇ ଗୋଟିଏ ଚିନ୍ତା ରହିଥାଏ । ଏ ବିଷୟରେ ମୁଁ ଏକ କାହାଣୀ ଶୁଣିଛି, ଆପଣ କହିଲେ ଶୁଣାଇବି ।’’

ଧର୍ମରାଜ କହିଲେ—‘‘ମହାମନା ! ଉଦାହରଣ ଦ୍ୱାରା ବିଷୟ ସ୍ପଷ୍ଟ ହୋଇଯାଏ, ତେଣୁ ଆପଣ ସେଇ କଥା ଅବଶ୍ୟ କହନ୍ତୁ ।’’

ଧର୍ମରାଜଙ୍କର ଜିଜ୍ଞାସା ଦେଖି ନାରଦ କହିଲେ—‘‘ରାଜନ୍, କୌଣସି ଜଣେ ରାଜାଙ୍କର ଦାସୀଟିଏ ଥିଲା । ତା’ର କୌଣସି ପୁରୁଷ ପ୍ରତି ଆସକ୍ତି ଥିଲା । ପୁରୁଷଟି ରାଜାଙ୍କର କର୍ମଚାରୀ ଥିଲା । ପରସ୍ପର ମଧ୍ୟରେ ନିବିଡ଼ ସ୍ନେହ ଥିଲା । ଦିନେ ସେ ସ୍ତ୍ରୀ ଆପଣାର ସେହି ଜାର ପତି ସହିତ ମିଳିତ ହେବାକୁ ସଙ୍କେତାନୁସାରେ ଅରଣ୍ୟକୁ ଯାଉଥିଲା । ମାର୍ଗରେ ଜଣେ କ୍ରୋଧୀମୁନି ଭଗବାନଙ୍କର ଧ୍ୟାନ କରୁଥିଲେ । ସେ କାମିନୀ ତ କାମ ଆବେଗ ହେତୁ ଅନ୍ଧୁଣୀ ପ୍ରାୟ ହୋଇଥିଲା, ଧ୍ୟାନସ୍ଥ ମୁନିଙ୍କୁ କୁନ୍ଦି ଆଗେଇ ଯିବାରେ ମୁନି କ୍ରୋଧିତ ହେଲେ ଏବଂ ତାଙ୍କର ଠେଙ୍ଗା ଉଠେଇ ଦୁଇପାହାର ଦେଲେ । ସେ ସ୍ତ୍ରୀଟି ଚାଲିଗଲା । ଆପଣାର ଜାର ପତିକୁ ଭେଟି ସେ ସେଇ ରାସ୍ତାରେ ଫେରିଲା । ମୁନି ତାଙ୍କୁ ଡାକି ପଚାରିଲେ ‘ତୁ କେମିତି ମୋତେ କୁନ୍ଦିଦେଇ ଚାଲିଗଲୁ ?’’

ସେ ହାତ ଯୋଡ଼ି ନମ୍ର ଭାବରେ କହିଲା—‘‘ମହାପ୍ରଭୁ ! ଏ କେବେଦିନ ତଳର କଥା ? ମୋର ତ କାହିଁ ସ୍ମରଣ ସୁଦ୍ଧା ହେଉନାହିଁ ! ମୁଁ ଆଦୌ ମନେକରି ପାରୁନାହିଁ କେବେ ଆପଣଙ୍କ ସହିତ ଅଶିଷ୍ଟ ବ୍ୟବହାର କରିଛି ବୋଲି ।’’

ମୁନି କ୍ରୋଧିତ ହୋଇ କହିଲେ—‘‘କେମିତି କହି ପାରୁଛୁ ? ଆଉ ନିଜକୁ ନିର୍ଦ୍ଦୋଷ କହିପାରୁଛୁ ? ଏହିମାତ୍ର କୁନ୍ଦିଦେଇ ଗଲୁ, ଯେତେବେଳେ ଧ୍ୟାନମଗ୍ନ ଥିଲି, ତୁ କୁନ୍ଦି ଚାଲିଗଲୁ । ମୁଁ ରାଗିଲି । ରାଗି ଦି’ପାହାର ଦେଲି, ତା’ ବି ତୋର ମନେ ନାହିଁ !’’

ସେତେବେଳେ ସେ ସ୍ତ୍ରୀଟି କହିଲା—‘‘ପ୍ରଭୁ, ସତ କହୁଛି, ମୋର କୌଣସି କଥା ମନେ ନାହିଁ । ଭୁଲରେ କୁନ୍ଦି ଦେଇଥିବି । ସେଥିନିମନ୍ତେ କ୍ଷମା କରନ୍ତୁ । ମୋର ଅଶିଷ୍ଟତା କ୍ଷମା କରିବେ ଯଦି ଗୋଟିଏ କଥା କହିବି !’’

*Digitized by srujanika@gmail.com*

ମୁନି କହିଲେ—"ଠିକ୍ ଅଛୁ, କହ । ତୁ ନିର୍ଭୟରେ କହ । ମୁଁ କ୍ରୋଧ କରିବି ନାହିଁ ।"

ସେ ଝିଅଟି କହିଲା—"ନା ମହାରାଜ, ସେ ସେମିତ କ୍ରୋଧ ଭାବିଲା ଭଳି କିଛି ନୁହେଁ । ମୁଁ କ'ଣ କହୁଛି କି, ଆପଣଙ୍କର ସେ ମିଥ୍ୟା ଧ୍ୟାନଠାରୁ ମୋ ଧ୍ୟାନଟି ଶ୍ରେଷ୍ଠ । ଆପଣ ତ ଏକାନ୍ତରେ ବସି, ଆସନ ପାତି, ଆଖି ବୁଜି ଧ୍ୟାନ କରୁଥିଲେ, ତଥାପି ମଧ୍ୟ ମୋର ପାଦ ସ୍ପର୍ଶରେ ଆପଣଙ୍କର ଧ୍ୟାନ ଭାଙ୍ଗିଗଲା । ଆପଣ ମୋତେ ଚିହ୍ନିନେଲେ, ପ୍ରେମିକ ନୁହଁ, ପାହାର ଦେଲେ । ମାତ୍ର ମୋତେ ଦେଖନ୍ତୁ, ମୁଁ କା' ଆଖି ବନ୍ଦ କରିଥିଲି ନା ଆସନରେ ବସିଥିଲି ନା ଗୋଟିଏ ସ୍ଥାନରେ ସ୍ଥିର ହୋଇ ରହିଥିଲି । ଦଉଡ଼ି ଯାଉଥିଲି ଆଖି ଖୋଲି ଭୁଲ୍‌ରେ ଆପଣଙ୍କ ଦେହରେ ପାଦ ବାଜିଗଲା । ଆପଣ କହୁଛନ୍ତି ମାହାର ମାଇଲେ ବୋଲି । ମୁଁ ନା ଆପଣଙ୍କୁ ଦେଖିଛି ନା ପାହାର କଥା ଜାଣିଛି । ତା'ହେଲେ ତ ଆପଣଙ୍କଠାରୁ ମୋର ଧ୍ୟାନ ଶ୍ରେଷ୍ଠ ।"

ଏହା ଶୁଣି ମୁନି ଲଜ୍ଜିତ ହୋଇ କହିଲେ—"ଦେବି ! ସତ କହୁଛ, ମୋର ଚିତ୍ତ ଭଗବାନଙ୍କ ପ୍ରତି ତନ୍ମୟ ହୋଇ ନ ଥିଲା । ତୋର ଚିତ୍ତରେ ଜାର ପତି ନିମନ୍ତେ ତନ୍ମୟତା ଭରି ରହିଥିଲା ।"

ନାରଦ ଧର୍ମରାଜଙ୍କୁ କହୁଛନ୍ତି—"ରାଜନ୍, ଏଇଭଳି ଅତ୍ୟନ୍ତ କାମର ଆବେଗରେ ଚିତ୍ତ ତନ୍ମୟ ହୋଇଯାଏ । ସେଇ ସଫାସଫା କାମ ବାସନା ଭଗବାନଙ୍କ ପ୍ରତି ହେଉ, ଭଗବାନଙ୍କୁ ଆପଣା ପତି, ଉପପତି, ଜାରପତି, ପ୍ରେମିକ କିଛି ବି ମନେକରି ସ୍ତ୍ରୀ ଭାବ ନେଇ କେହି ଇଚ୍ଛାକରୁ, ତା'ହେଲେ ତା'ର ମଧ୍ୟ କଲ୍ୟାଣ ହେବ, ଏଥିରେ ସନ୍ଦେହ ନାହିଁ । ଚାରିଗୋଟି କାରଣ ତ ଏ ହେଲା । ପଞ୍ଚମ, ସୁଦୃଢ଼ ବୈରାଗ୍ୟାନୁବନ୍ଧ ହେବୁ ମଧ୍ୟ ଚିତ୍ତ ତନ୍ମୟ ହୋଇଯାଏ ।"

ଧର୍ମରାଜ ଆଶ୍ଚର୍ଯ୍ୟ ସହକାରେ କହିଲେ—"ମହାମନା, ବୈର ଭାବରେ ଚିତ୍ତ କେଉଁଭଳି ତନ୍ମୟ ହୁଏ ?"

ଏହା ଶୁଣି ନାରଦ ମନଖୋଲି ହସିଲେ । ହସି ହସି କହିଲେ—"ରାଜନ୍, ବନ୍ଧ୍ୟାକୁ ପ୍ରସବ ପୀଡ଼ାର ଅନୁଭବ କିଭଳି ଦେଇହେବ । ଅବୋଧ ବାଳକାକୁ ପତି-ଦେହର ସୁଖାନୁଭୂତ କିଭଳି ଦେଇହେବ ! ମହାରାଜ, ଆପଣ ଅଜାତଶତ୍ରୁ । ଆପଣ କାହା ସହିତ ତୀବ୍ରତା ସହକାରେ ବୈରଭାବ ପୋଷଣ କରିନାହାନ୍ତି । ତେଣୁ ଆପଣ ବିସ୍ମିତ ହେଉଛନ୍ତି, ମାତ୍ର ମୁଁ ଦୃଢ଼ତା ସହକାରେ କହିବି ଯେ ଚିତ୍ତ ବୈରଭାବରେ ତନ୍ମୟତା ପ୍ରାପ୍ତ ହୁଏ । ତାହା ନା କାମରେ ହେବ, ନା ସ୍ନେହରେ, ନା ଭକ୍ତି ଭୟରେ । ରାଜନ୍, ଆପଣାର ସବଳ ଶତ୍ରୁ ସର୍ବଦା ହୃଦୟସ୍ଥ ପଟଳରେ ନାଚୁଥାଏ । ଭୃଙ୍ଗୀନାମକ କୀଟଟିଏ ଅଛି । ସେ ପୋକମାଟି ଆଣି ଆଣି କାନ୍ଥ ଉପରେ ଘରଟିଏ ତିଆରି କରେ ।

Digitized by srujanika@gmail.com

ସେ ଘର ଭିତରେ କୌଣସି ପ୍ରକାରେ କୁଆଡ଼ୁ ହେଲେ କୀଟଟିଏ ଧରିଆଣି ବନ୍ଦ କରିଦିଏ ଓ ତା ଆଗରେ ଗୁଞ୍ଜରଣ କରିବସେ । ନିରନ୍ତର ବନ୍ଦୀ କରିଥିବା ଶତ୍ରୁର ଗୁଞ୍ଜରଣ ଶୁଣି ବନ୍ଦୀ କୀଟଟିର ବଡ଼ ଉଦ୍‌ବେଗ ଜାତ ହୁଏ । ସେ ନିରନ୍ତର ତା'ର ସେହି ଶତ୍ରୁଟିକୁ ସ୍ମରଣ କରେ । ସ୍ମରଣ କରି କରି ସେ କୀଟ ମଧ୍ୟ ଭୃଙ୍ଗୀ ପାଲଟି ଯାଏ । ତନ୍ମୟ ହୋ'ଇଯାଏ । ତେଣୁ ମହାରାଜ, ବୈରଭାବରେ ଚିତ୍ତ ତ ଅଧିକ ତନ୍ମୟ ହୁଏ । ଯଦି କେହି ସାଧାରଣ ବ୍ୟକ୍ତି ସହିତ ଶତ୍ରୁତା ରଖିବ, ତା'ହେଲେ ମରି ତା'ର ପରିଜନ ହେବ ଏବଂ ପୂର୍ବକୃତ ଶତ୍ରୁତାର ପ୍ରତିଶୋଧ ନେବ । ଯଦି ସେହି ଶତ୍ରୁତା ଜ୍ଞାନ-ଅଜ୍ଞାତସାରରେ ଈଶ୍ୱରଙ୍କ ପ୍ରତି ହେବ, ତା'ହେଲେ ତ ନାଆ କୂଳରେ ଲାଗିଗଲା ! ଅବାଗମନ ସମ୍ପାଦନ ପାଇଁ ଗଲା । ରାଜନ, ତେଣୁ ଚିତ୍ତର ତନ୍ମୟତା ନିମନ୍ତେ କାମ, ଦ୍ୱେଷ, ଭୟ, ସ୍ନେହ ଏବଂ ଭକ୍ତି ଏହି ପାଞ୍ଚୋଟି ଉପାୟ ରହିଛି । ଏଇ ଭାବରେ ଭଗବାନଙ୍କ ପାଖରେ ଚିତ୍ତ ସମର୍ପଣ କରି ଅନେକେ ଏଇ ଭବସାଗର ପାର କରିଯାଇଛନ୍ତି ।

ଆଶ୍ଚର୍ଯ୍ୟ ସହକାରେ ଧର୍ମରାଜ ପଚାରିଲେ—"ଭଗବନ୍, ଆପଣ ତ ଏକ ବିଲକ୍ଷଣ ସିଦ୍ଧାନ୍ତ କହିଲେ । ଭଗବାନଙ୍କ ପ୍ରତି କାମଭାବ କିପରି ରଖି ହେବ । କାମ ଭାବରେ କେହି ସିଦ୍ଧିପ୍ରାପ୍ତ ହୋଇଛନ୍ତି କି ?"

ଏହା ଶୁଣି ନାରଦ କହିଲେ—"ରାଜନ୍, ଯେତେବେଳେ ଭଗବାନ୍ ଶ୍ୟାମ-ସୁନ୍ଦର ବ୍ରଜରେ ପ୍ରକଟଲୀଳା କରୁଥିଲେ, ସେତେବେଳେ କେତେଜଣ ଗୋପୀଙ୍କର ଚିତ୍ତ ତାଙ୍କ ପ୍ରତି କାମଭାବ ହେତୁ ହିଁ ଆକୃଷ୍ଟ ହେଲା । ପ୍ରଥମେ ପ୍ରଥମେ ସେମାନେ ତାଙ୍କୁ ଅତ୍ୟନ୍ତ ରୂପବନ୍ତ ଓ ପରମ ଶ୍ରେଷ୍ଠ ମନେକଲେ । ଯେତେବେଳେ ସମ୍ବନ୍ଧ ହେଲା, ସେତେବେଳେ ସେମାନେ ଜାଣିଲେ ଯେ ଏ କେବଳମାତ୍ର ଗୋପିକାନନ୍ଦ ନୁହନ୍ତି, ଅଖିଳପ୍ରାଣୀଙ୍କର ଅନ୍ତରାତ୍ମାରେ ବିଚରଣ କରୁଥିବା ସର୍ବେଶ୍ୱର ମଧ୍ୟ । ସେମାନଙ୍କର କାମଭାବ କୌଣସି ସାଧାରଣ ସୌନ୍ଦର୍ଯ୍ୟଯୁକ୍ତ ଯୁବକ ପ୍ରତି ହୋ'ଇଥିଲେ ତାହା ପାପ ହୋଇଥାନ୍ତା ଏବଂ ବନ୍ଧନର କାରଣ ହୋଇଥାନ୍ତା । କିନ୍ତୁ ସୌଭାଗ୍ୟକ୍ରମେ ସେ କାମଭାବ ବାମାଙ୍କ କେଶବଙ୍କ ପ୍ରତି ଜାଗରିତ ହେଲା । ଅନ୍ଧ ହାତରେ ଲଉଡ଼ି ଲାଗିଲା । ରାଜନ୍, ଏହା ତ ବ୍ୟବହାରିକ ଲୀଳା କଥା । ବାସ୍ତବିକ କଥା ତ ଏଇଆ ଯେ ଗୋପ-ଗୋପୀ ଧେନୁପଲ ସମସ୍ତେ ଭଗବାନଙ୍କର ନିତ୍ୟ ସହଚର ଓ ପାର୍ଷଦ । ସେଥିଲାଗି ରସ-ଶାସ୍ତ୍ରରେ ବ୍ରଜାଙ୍ଗନାମାନଙ୍କର କାମକୁ ହିଁ ପ୍ରେମ ବୋଲି କୁହାଯାଇଛି ।"

ଏହା ଶୁଣି ଧର୍ମରାଜ ପଚାରିଲେ—"ଭୟରୁ କିପରି ତନ୍ମୟତା ଆସିଥାଏ ।"

ନାରଦ କହିଲେ—"ଏଥିନିମନ୍ତେ ତ ମୁଁ କୀଟ ଭୃଙ୍ଗୀର ଦୃଷ୍ଟାନ୍ତ ଦେଇଛି । କଂସ ଜନ୍ମର ପୂର୍ବରୁ ଭଗବାନଙ୍କ ସହିତ ବୈରଭାବ ରଖିଥିଲେ । ମୋଠାରୁ ସେ ଶୁଣିଲା ଯେ ତା'ର ଶତ୍ରୁ ଗୋକୁଳରେ ନନ୍ଦ ଘରେ ବଢ଼ୁଛି, ସେତେବେଳେ ତା'ର ଶୟନେ ଜାଗରଣେ ସବୁ ସମୟରେ ସର୍ବତ୍ର କୃଷ୍ଣମୟ ମନେହେଲା । କୃଷ୍ଣ ମୋତେ ମାରିବେ,

Digitized by srujanika@gmail.com

କୃଷ୍ଣ ଆସିଗଲେ ନାହିଁ ତ ? କୃଷ୍ଣଙ୍କୁ ଧରଆଣ, କୃଷ୍ଣଠାରୁ ମୋର ରକ୍ଷା କେମିତି ହେବ ? ଏଇ ଚିନ୍ତାରେ ଚିତ୍ତ ତା'ର କୃଷ୍ଣମୟ ହୋଇଗଲା । ଶତ୍ରୁ ହୋଇ ସେ କୃଷ୍ଣଙ୍କର ଆରାଧନା କରିବାକୁ ଲାଗିଲା । ଭଗବାନଙ୍କର ପ୍ରତିଜ୍ଞା ରହିଛି ଯେ ମୋତେ ଯେଉଁ ଭାବରେ ଭଜିବ, ମୁଁ ମଧ୍ୟ ତା'ର ସେଇ ଭାବରେ ଭଜନ କରି ସେହି ଭାବରେ ଫଳ ପ୍ରଦାନ କରେଁ । ଏଣୁ ସ୍ୱୟଂ ଭଗବାନ ତାହା ନିକଟରେ ତାଳମାତ୍ର ଉପସ୍ଥିତ ହେଲେ ଏବଂ ଆପଣାର ଶ୍ରୀହସ୍ତରେ ତାକୁ ସଂହାର କରି ମୁକ୍ତ କରିଦେଲେ ।

ଧର୍ମରାଜ ପଚାରିଲେ—"ମହାମନା, ଦ୍ୱେଷଦ୍ୱାରା ଭଗବାନଙ୍କର ଚିନ୍ତନ କେଉଁପରି ହୋଇଥାଏ ?"

ହସି ହସି ନାରଦ କହିଲେ—"ରାଜନ୍, ପ୍ରତ୍ୟକ୍ଷ କଥା ନିମନ୍ତେ ପ୍ରମାଣର କି ଆବଶ୍ୟକତା ରହିଛି ? ଏହା ତ ଶିଶୁପାଳ ବଧ ସମୟରେ ସଭିଏଁ ପ୍ରତ୍ୟକ୍ଷ ଦେଖିଛନ୍ତି ଯେ ଶିଶୁପାଳ ଶରୀରରୁ ଜ୍ୟୋତି ବାହାରି ସେଇ ସର୍ବାନ୍ତର୍ଯ୍ୟାମୀ ପ୍ରଭୁଙ୍କ ଶରୀରରେ ଲୀନ ହୋଇଗଲା । ଶିଶୁପାଳ ଜନ୍ମରୁ ଭଗବାନଙ୍କ ପ୍ରତି ଦ୍ୱେଷଭାବ ରଖିଥିଲା । ସେହିଭଳି ଦନ୍ତବକ୍ର ମଧ୍ୟ । ଆପଣଙ୍କର ତ ଏ ଉଭୟେ ମାଉସୀ ପୁଅ ଭାଇ ଥିଲେ । ମାତ୍ର ପୂର୍ବଜନ୍ମର ସଂସ୍କାର ହେତୁ ଜନ୍ମ ହେବା ମାତ୍ରକେ ଈଶ୍ୱରଙ୍କ ସହିତ ଦ୍ୱେଷାଚରଣ କରିବାକୁ ଲାଗିଲେ । ସଂସାରୀ ରାଜାମାନଙ୍କ ସହିତ କରିଥିଲେ ମରି ପୁନଶ୍ଚ ରାଜା ହୋଇଥାନ୍ତେ, ତେବେ ସେମାନେ ବିଦ୍ୱେଷ କଲେ ସେଇ ଭବଭୟହାରୀ ବନମାଳୀ ସଙ୍ଗରେ । ତେଣୁ ଏ ଦେହ ମରି ମୁକ୍ତ ହୋଇଗଲେ । ଆଉ ମଧ୍ୟ ଅନେକ ରାଜା ଭଗବାନଙ୍କ ସହିତ ଦ୍ୱେଷ କରି ମୁକ୍ତିର ଅଧିକାରୀ ହୋଇଛନ୍ତି ।"

ଧର୍ମରାଜ ପଚାରିଲେ—"ପ୍ରଭୁ ! ଭଗବାନଙ୍କ ସହିତ କିପରି ସମ୍ବନ୍ଧ ସ୍ଥାପନ କରାଯାଇ ପାରିବ ?"

ନାରଦ କହିଲେ—"ଯେଭଳି ସଂସାରୀ ଲୋକଙ୍କ ସାଙ୍ଗରେ କରାଯାଏ । ସେ ମୋର ପିତା, ନନେଇ, ଦଦେଇ, ପିତାମହ, ପ୍ରପିତାମହ, ଭାଇ, ପୁତୁରା, ପୁଅ, ମାମୁଁ, ଭଣଜା, ପିଉସା, ଭଉଣୀ ଆଦି ସମ୍ବନ୍ଧ ଆମେ ମାୟିକ ବ୍ୟକ୍ତିମାନଙ୍କ ସହିତ କଲେ ବନ୍ଧନ ବଢ଼ିବ, ଭଗବାନଙ୍କ ସହିତ କଲେ ମୁକ୍ତ ହୋଇଯିବ । ସମସ୍ତ ଯାଦବ ମୁକ୍ତିର ଅଧିକାରୀ; କାରଣ ଅଜ୍ଞାତରେ ହେଉ ପଛେ, ଏମାନେ ଶ୍ରୀକୃଷ୍ଣଙ୍କୁ ଆପଣାର ଜ୍ଞାତି ପରିଜନ ମନେ କରିଛନ୍ତି ।"

ଧର୍ମରାଜ ପଚାରିଲେ—"ପ୍ରଭୁ ! ମିତ୍ରତା ଦ୍ୱାରା ଈଶ୍ୱରଙ୍କ ସାଙ୍ଗରେ କେଉଁପରି ସମ୍ବନ୍ଧ ସ୍ଥାପନ କରାଯାଏ ।"

ଏହା ଶୁଣି ନାରଦ ମନ ଖୋଲି ହସିଲେ, କହିଲେ—"ରାଜନ୍, ରସଗୋଲା ତ ସ୍ୱୟଂ ଖାଉଛନ୍ତି; ମାତ୍ର ସ୍ୱାଦ ବିଷୟରେ ମୋତେ ପଚାରୁଛନ୍ତି । ଏ ଯେ

Digitized by srujanika@gmail.com

ଆଗରେ ପୀତାମ୍ବରଧାରୀ ବନମାଳୀ ବସିଛନ୍ତି, ଯଦି ତୁମେ ଏହାଙ୍କୁ ସାକ୍ଷାତ୍ ଭଗବାନ ବୋଲି ମନେ କରୁଥାନ୍ତ, ତା'ହେଲେ ଭବ୍ୟ ମନ୍ଦିରଟିଏ ତିଆରି କରେଇ ପୂଜା ମଧ୍ୟ କରନ୍ତ—ଏହାଙ୍କ ଦ୍ୱାରା ସାରଥିକାର୍ଯ୍ୟ କରାନ୍ତ ନାହିଁ କିମ୍ବା ଦୂତରୂପରେ ପଠାନ୍ତ ନାହିଁ । ସେବକ ଭାବରେ ନିଯୋଜିତ କରନ୍ତ ନାହିଁ, ମନଖୋଲି କଥା ହୁଅନ୍ତ ନାହିଁ, ପାଦଛୁଆଁନ୍ତ ନାହିଁ । ତାଙ୍କୁ ଆପଣଙ୍କର ମିତ୍ର, ସୁହୃଦ, ସଖା, ହିତୈଷୀ, ବନ୍ଧୁ ମନେ-କରୁଛନ୍ତି । ଏହା ତ ତା'ର ଫଳ ଯେ ଆପଣଙ୍କର ଘର ପରମ ପାବନ ତୀର୍ଥରେ ପରିଣତ ହୋଇଯାଇଛି । ବଡ଼ ବଡ଼ ଋଷି ମହର୍ଷି ଆପଣଙ୍କର ଅଗଣାର ଧୂଳି ମୁଣ୍ଡରେ ମାରିବାକୁ ସଦା ଆସୁଛନ୍ତି । ଉଦଭ୍ରାନ୍ତ ଭଳି ମୁଁ ଯେ ବାରମ୍ବାର ଏଠାକୁ ଆସୁଛି ଆପଣଙ୍କର ସୁସ୍ୱାଦୁ ସାମଗ୍ରୀ ଓ ମିଷ୍ଟଭୋଜନ ନିମନ୍ତେ ନୁହେଁ, ଏହି ବାସୁଦେବଙ୍କର ଚରଣ ଧୂଳି ଦ୍ୱାରା ମୋର ଅଙ୍ଗ ପବିତ୍ର କରିବାକୁ ଆସୁଛି । ତେଣୁ ରାଜନ୍, ଆପଣମାନେ ଧନ୍ୟ ଯେ ସର୍ବାନ୍ତର୍ଯ୍ୟାମୀ ଭଗବାନ ବାସୁଦେବଙ୍କୁ ଆପଣାର ସୁହୃଦ, ସଖା, ମିତ୍ର ମନେ କରୁଛନ୍ତି ।

ଏହା ଶୁଣି ବିନମ୍ର ଭାବରେ ହାତଯୋଡ଼ି ଧର୍ମରାଜ କହିଲେ—''ପ୍ରଭୁ, ଏସବୁ ଆପଣମାନଙ୍କ ଭଳି ଗୁରୁଜନମାନଙ୍କର ଆଶୀର୍ବାଦର ଫଳ ! ଆମେମାନେ ସତେ କ'ଣ ସେତିକି ଯୋଗ୍ୟ ଯେ ଭଗବାନ ବାସୁଦେବଙ୍କ ସହିତ ମିତ୍ରତା କରିବୁଁ । ଭଗବାନ ହିଁ କୃପାପରବଶ ହୋଇ ଆମକୁ ଆପଣାର କରିଛନ୍ତି । ହଁ, ଭକ୍ତଦ୍ୱାରା ଭଗବାନଙ୍କର ଆରାଧନା କେଉଁଭଳି ହୋଇଥାଏ ?''

ଏହା ଶୁଣି ନାରଦ ସଙ୍କୋଚ ସହିତ କହିଲେ—''ଭକ୍ତି କଥା କ'ଣ କହିବି । ଏଠି ମୁନିଋଷି ବସିଛନ୍ତି । ଭଗବାନଙ୍କୁ ଭକ୍ତଭାବରେ ହିଁ ପୂଜା କରନ୍ତି । ମୁଁ ଯେଉଁ ବୀଣା ନେଇ ନିରନ୍ତର 'ରାମକୃଷ୍ଣ ହରି', 'ରାମକୃଷ୍ଣ ହରି' ରଟୁଛି, ଲୋକେ ମୋତେ ମଧ୍ୟ ଭକ୍ତ ବୋଲି କହି ବସିଲେଣି । ମୋ ଭିତରେ ସେଭଳି ଭକ୍ତି ବୋଲି କିଛି ନାହିଁ । ଏଇ ଶ୍ୟାମସୁନ୍ଦର ଅଗ୍ରପୂଜ୍ୟ ଦେବେ, ଏ ମଧ୍ୟ ଅଭକ୍ତ ଭାବି ଭକ୍ତ ବେଶଟି ଦେଖି ଆପଣାର କରିନେବେ ଯଦି ଅଲଗା କଥା ।

ଆପଣ ଯେଉଁ ମହାରାଜ ବେନଙ୍କର ଦୃଷ୍ଟାନ୍ତ ଦେଲେ, ରାଜନ୍ ବେନଙ୍କର ଭଗବାନଙ୍କପ୍ରତି ନା ପ୍ରେମ ଥିଲା ନା ଦ୍ୱେଷ । ସେ ତ ଆପଣାକୁ ସର୍ବଶ୍ରେଷ୍ଠ ସିଦ୍ଧ କରିବାକୁ ଚାହୁଁଥିଲେ । ତାଙ୍କର ସର୍ବଶ୍ରେଷ୍ଠତ୍ୱରେ ବାଧକ ଥିଲେ ବ୍ରାହ୍ମଣ । ସେ ଭାବୁଥିଲେ, ସମାଜରେ କେବଳ ଏଇ ବ୍ରାହ୍ମଣମାନଙ୍କର ହିଁ ଅଧିକାର ରହିଛି, ତାକୁ ନଷ୍ଟ କରାଯାଉ । ତାହେଲେ ସମସ୍ତେ ମୋତେ ଶ୍ରେଷ୍ଠ ବୋଲି କହିବେ । ଭଗବାନଙ୍କ ପ୍ରତି ତାଙ୍କର ଉପେକ୍ଷାବୃତ୍ତି ଥିଲା । କାରଣ ସେ କାହାକୁ ଏ ଚର୍ମଚକ୍ଷୁରେ ଦୃଶ୍ୟ ହୁଅନ୍ତି ନାହିଁ । ତାଙ୍କର ବ୍ରାହ୍ମଣଙ୍କ ପ୍ରତି ଦ୍ୱେଷ ଥିଲା । ତେଣୁ ବ୍ରହ୍ମଶାପରେ ମରି ନର୍କଗାମୀ ହେଲା, ଯେତେବେଳେ ତା'ର ଭଗବାନଙ୍କ ସହିତ ସମ୍ବନ୍ଧ ହେଲା । ଭଗବାନ ପୃଥୁ ତାକୁ ପିତା ରୂପରେ ଗ୍ରହଣ କଲେ,

Digitized by srujanika@gmail.com

ସେତେବେଳେ ତାଙ୍କର ଉଦ୍ଧାର ହେଲା । ସେ ମର ଯାତନାମୁକ୍ତ ହୋଇଗଲେ । ତେଣୁ ମହାରାଜ, ଯେଉଁଭଳି ବି ହେଉ ଭଗବାନଙ୍କ ସହିତ ପ୍ରୀତି ସ୍ଥାପନ କରିବା କଥା । ଏଇ ଚଞ୍ଚଳ ଚିତ୍ତକୁ ତାଙ୍କ ସାଙ୍ଗରେ ଯୋଡ଼ିଦେବା କଥା । ସଂସାରରେ ସବୁ ବସ୍ତୁ ସମସ୍ତଙ୍କୁ ପ୍ରାପ୍ତ ହୁଏ ନାହିଁ । ଯା'ର ପୁତ୍ର ନାହିଁ ସେ ଭଗବାନଙ୍କୁ ପୁତ୍ର ମନେକରି ସ୍ନେହ ଦେଉ, ଯା'ର ସ୍ୱାମୀ ନାହିଁ ସେ ଭଗବାନଙ୍କୁ ସ୍ୱାମୀ ରୂପରେ ସେବାକରୁ । ଯା'ର ଗୁରୁନାହିଁ ସେ ଭଗବାନଙ୍କୁ ଗୁରୁ ବୋଲି ପୂଜାକରୁ । ଯା'ର ମନୋନୁକୂଳ ପତି ନାହିଁ ସେ ଭଗବାନଙ୍କୁ ହିଁ ପତି ମନେକରି ପତିଭଳି ପ୍ରତ୍ୟେକ ସମ୍ବନ୍ଧ ସ୍ଥାପିତ କରୁ ଏବଂ ଆପଣାର ଭାବଭଙ୍ଗୀ କଟାକ୍ଷ ଶୃଙ୍ଗାରରେ ମୋହିତ କରୁ । ଯା'ର ମିତ୍ର ନାହିଁ ସେ ଭଗବାନଙ୍କ ସହିତ ମିତ୍ରତା ସ୍ଥାପନ କରୁ ଏବଂ ଯା'ର ଶତ୍ରୁ ନାହିଁ, ସେ ଭଗବାନଙ୍କୁ ହିଁ ଶତ୍ରୁକରି ନେଉ । କଥାଟିର ସାରାଂଶ ଏହା ଯେ କୌଣସି ପ୍ରକାରେ ବି ମନ ଲଗେଇ ରଖ ଶ୍ରୀକୃଷ୍ଣ ପାଖରେ । କୌଣସିମତେ ସେଇ ପରମପୁରୁଷଙ୍କୁ କାନ୍ଦ ଧରୁ ତା' ସାଙ୍ଗରେ ଗଣ୍ଠି ବାନ୍ଧି ଦେଉ । ମହାରାଜ, ଏ ଦନ୍ତବକ୍ର ଆଉ ଶିଶୁପାଳ କେହି ନୁହଁନ୍ତି, ସେମାନେ ଭଗବାନଙ୍କର ନିତ୍ୟ ପାର୍ଷଦ ଜୟ ଓ ବିଜୟ । ଏମାନେ ସନକାଦିଙ୍କର ଅଭିଶାପରେ ପୃଥିବୀରେ ଜନ୍ମଗ୍ରହଣ କରିଥିଲେ । ପରିଶେଷରେ ଭଗବାନଙ୍କ ହାତରେ ମରି ମୁକ୍ତ ହେଲେ । ପୁନଃ ଆପଣା ପଦରେ ପ୍ରତିଷ୍ଠିତ ହେଲେ ।''

ଏହା ଶୁଣି ଧର୍ମରାଜ ପଚାରିଲେ—''ମହାରାଜ, ଜୟ ବିଜୟ ଅଭିଶପ୍ତ ହେଲେ କିପରି ? ସନକାଦିଙ୍କ ସଦୃଶ ତ୍ୟାଗୀ ତପସ୍ୱୀ ଓ ମାୟାରହିତ ମୁନିଙ୍କର କେଉଁ ଭଳି କ୍ରୋଧ ଜାତ ହେଲା ! ଏ ପ୍ରସଙ୍ଗରେ କହନ୍ତୁ ।''

ସୂତ କହିଲେ—''ହେ ମୁନିଗଣ, ଧର୍ମରାଜ ପଚାରନ୍ତେ ଦେବର୍ଷି ନାରଦ ଜୟ ବିଜୟଙ୍କର ଶାପପ୍ରାପ୍ତିର ସମସ୍ତ ବୃତ୍ତାନ୍ତ କହିଲେ । ରାଜନ୍, ହିରଣାକ୍ଷ ବଧ ପ୍ରସଙ୍ଗରେ ମୁଁ ଏ କଥା ଥରେ ଶୁଣେଇ ସାରିଛି । ତେବେ, ବର୍ତ୍ତମାନ ତ ହିରଣ୍ୟକଶିପୁ ପ୍ରସଙ୍ଗ କହିବି, ଏଣୁ ତା'ର ସ୍ମରଣାର୍ଥେ ଅତ୍ୟନ୍ତ ସଂକ୍ଷେପରେ ସେଇ କଥା କହିବି । କାରଣ ପ୍ରସଙ୍ଗାନୁସାରେ ବେଳେ ବେଳେ ପୂର୍ବକଥା କହିବାର ଆବଶ୍ୟକତା ଆସେ । ଏଥିରେ ପୁନରୁକ୍ତି ଦୋଷ ଧରିବେ ନାହିଁ ।''

ଏହା ଶୁଣି ଶୌନକ କହିଲେ—''ହେ ସୂତ, ସାହିତ୍ୟରେ ଏ ଦୋଷ ଥାଇପାରେ; ମାତ୍ର ଭାଗବତ କଥାମାନଙ୍କରେ ପୁନରୁକ୍ତି ନାମକ ସେଭଳି କୌଣସି ଦୋଷ ନାହିଁ । ଏଥିରେ ତ ଗୋଟିଏ କଥାକୁ ହଜାରେଥର କୁହାଯାଏ । ଗୋଟିଏ ତ କଥା, ଅବତାର ଚରିତ; ସେଇଆ କହିବାକୁ ଅଛି, ଆପଣ ନିଃସଙ୍କୋଚରେ କହନ୍ତୁ ।'' ଶୌନକଙ୍କର କଥା ଶୁଣି ଶ୍ରୀ ସୂତ ଜୟ ବିଜୟଙ୍କର ପ୍ରସଙ୍ଗ ପୁନଃ ଅତ୍ୟନ୍ତ ସଂକ୍ଷେପରେ କହିବା ଆରମ୍ଭ କଲେ ।

Digitized by srujanika@gmail.com

## ଛପ୍‌ପୟ୍ୟ

ଧର୍ମରାଜ ତୁମ ଧନ୍ୟ ଧନ୍ୟ ତୁମରେ ପିତୃ ମାତା ।
ବନେ ସହୃଦ ଘନଶ୍ୟାମ ତୁମ୍‌ହାରେ ଜେ ଭୟ୍ୟ ଭ୍ରାତା ॥
ହର ଶୋଭା କେ ଧାମ ମଙ୍ଗଳନ୍ନ କେ ମଙ୍ଗଳ ହୈଁ ।
ଉନ ମହଁ ଜିନକୋ ଶତ୍ରୁ ଫଁସେ୍ୟା ତିନକେ ମଙ୍ଗଳ ହୈଁ ॥
ଦନ୍ତବକ୍ର ଶିଶୁପାଳ ହର, କରତେଁ ମଋ.ହରିପୁର ଗୟ୍ୟେ ।
ପ୍ରଭୁ ପାର୍ଷଦ ଜୟ୍ୟ ବିଜୟ୍ୟ ଜେ, ବିପ୍ର ଶାପବଶ ଖଲ ଭୟ୍ୟେ ॥

---

Digitized by srujanika@gmail.com

# ଜୟ ବିଜୟଙ୍କ ଅଭିଶାପର କାରଣ

କୀଦୃଶଃ କସ୍ୟ ବା ଶାପୋ ହରିଦାସାଭିମର୍ଶନଃ ।
ଅଶ୍ରଦ୍ଧେୟ ଇବାଭାତି ହରେରେକାନ୍ତିନାଂ ଭବଃ ॥
( ଶ୍ରୀ ଭା ୭ ସ୍କ ॥ ୧ମ ଅ ॥ ୩୩ ଶ୍ଳୋକ )

—ଛପ୍‌ପୟ—

କହେଁ ଯୁଧିଷ୍ଠିର—ନାଥ ! ଶାପ କୀ ବାତ ବତାଓ ।
ପ୍ରଭୁ ପାର୍ଷଦ ଜୟ ବିଜୟ ଅସୁର କସ ଭୟେ ବତାଓ ॥
ବୋଲେ ନାରଦ—"ପ୍ରଭୋ ! ଗୟେ ହରିପୁର ସନକାଦିକ ।
ଗଦା ବେଁତ ଲେ ଖଡ଼େ ଦ୍ୱାର କେ ଦୋନୋ ପାଲକ ॥
ନଙ୍ଗ ଧଡ଼ଙ୍ଗେ ବାଲ ଲଖି ରୋକେ ହରି ଦରସନନ ତେଁ ।
ଶାପ ଦୟୋ ସୁରରିପୁ ବନୌ, ଯେ ତରି ବୋଲେ ମୁନିନ ତେଁ ॥

ପିତାର ଯେତେବେଳେ ପୁତ୍ର ସହିତ ଖେଳିବାର ଇଚ୍ଛା ହୁଏ, ସେତେବେଳେ ସେ ତାହା ସହିତ ଲଢ଼େଇ କରେ । ଶ୍ରେଷ୍ଠ ପୁଅ ବାପ ସାଙ୍ଗରେ କ'ଣ ଲଢ଼ିବ; ହେଲେ ଖେଳ ତ ? ପିତା ଲଢ଼େଇ କରିବାର ଅଭିନୟ କରେ, ପୁଅ ମଧ୍ୟ ଶକ୍ତିମତେ ବଳ ଲଗାଏ । ତା'ପରେ ପିତା ନିଜେ ନିଜେ ତଳେ ପଡ଼ିଯାଏ ଏବଂ ବିସ୍ମୟର ଛଳନା କରି କହେ—"ଆରେ, ତୁ ତ ଭାରି ବଳୁଆ, ମୋତେ କଚାଡ଼ି ଦେଲୁ ।" ପୁଅ ସବୁ ବୁଝିପାରେ, ବାପ ନିଜେ ନିଜେ ପଡ଼ି ଯାଉଛି । ତଥାପି ମଧ୍ୟ ଆନନ୍ଦ ହୁଏ; କାରଣ ତା'ର ଆନନ୍ଦରେ ପିତାର ଆନନ୍ଦ ନିହିତ । ଭଗବାନଙ୍କର ଅବତାର ପ୍ରସଙ୍ଗରେ ଅନେକ କଥା କୁହାଯାଇଛି । ମାତ୍ର ଆମେ ତ ତାଙ୍କ ଅବତାରର ଗୋଟିଏ ମାତ୍ର ପ୍ରୟୋଜନ ଭାବରେ ଏଇଆ ଭାବୁଛୁଁ ଯେ ସେ ଆପଣାର ଭକ୍ତମାନଙ୍କୁ କ୍ରୀଡ଼ାର ସୁଖ ଦେବାକୁ ଇଚ୍ଛା କରିଥାନ୍ତି । ଭଗବାନ ଭକ୍ତମାନଙ୍କ ନିମିତ୍ତ କରି ନାଟକ କରନ୍ତି । ସମସ୍ତ ଚରିତ୍ର ତାଙ୍କର ଅଧୀନସ୍ଥ । କେଉଁ ନାଟକ ହେଉଛି ତାହା ମଧ୍ୟ ସମସ୍ତେ ଜାଣନ୍ତି । କେଉଁ ଚରିତ୍ର କ'ଣ ଅଭିନୟ କରିବ ଏ ସବୁ କଥାର ଜ୍ଞାନ ସେମାନଙ୍କର ରହିଛି । ତେବେ ବି ଯେତେବେଳେ ସେମାନେ ବେଶ ବଦଳେଇ ରଙ୍ଗମଞ୍ଚକୁ ଓହ୍ଲେଇ ଆସନ୍ତି, ସେତେବେଳେ ସେମାନେ ଆପଣାର ଲୋକଙ୍କ ପ୍ରତି, ତାଙ୍କୁ ଶିଖେଇ ପଢ଼େଇଥିବା ବ୍ୟକ୍ତିପ୍ରତି

Digitized by srujanika@gmail.com

କ୍ରୋଧ ପ୍ରକାଶ କରନ୍ତି, ଯୁଦ୍ଧ କରନ୍ତି, ପ୍ରେମ କରନ୍ତି । ସେହିର ନାମ ଭଗବତ୍‌ଲୀଳା । ସେହାକୁ ଅବତାର ଚରିତ କୁହାଯାଏ । ଏହାକୁ ପୁନଃ ପୁନଃ ଶ୍ରବଣ କଲେ ଭବବନ୍ଧନ ମୁକ୍ତ ହୁଏ ।

ଶ୍ରୀ ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ—"ରାଜନ୍, ଆପଣ ମୋତେ ଜୟ ବିଜୟଙ୍କର ଅଭିଶାପ ବିଷୟରେ ପଚାରିଛନ୍ତି । ମୁଁ ତାହା କହୁଛି । ଆପଣ ସମାହିତ ଚିତ୍ତରେ ତାହା ଶ୍ରବଣ କରନ୍ତୁ । ଦିନକର କଥା, ବ୍ରହ୍ମାଙ୍କର, ସନକ, ସନନ୍ଦନ, ସନାତନ ଏବଂ ସନତ୍‌କୁମାର, ଏହି ଚାରି ମାନସ ପୁତ୍ର ଦିଗମ୍ବର ବାଳକ ସଦୃଶ ଅନେକ ଲୋକରେ ବିଚରଣ କରି ଭଗବାନଙ୍କର ବୈକୁଣ୍ଠ ଧାମରେ ପହଞ୍ଚିଲେ । ସେମାନଙ୍କର ସର୍ବତ୍ର ଗତି ଅବ୍ୟାହତ ରହିଛି । ଭଗବାନ ବୈକୁଣ୍ଠନାଥଙ୍କର ଭବ୍ୟ ଭବନରେ ସାତୋଟି ସୋପାନ; ସେଥିରୁ ଛଅଗୋଟି ସେମାନେ ପାର କରିଗଲେ ଏବଂ ଯେତେବେଳେ ସପ୍ତମ ସୋପାନ ପାରକରି ଭିତରେ ପ୍ରବେଶ କରିବାକୁ ଉଦ୍ୟତ ହେଲେ ସେତେବେଳେ ସେଠାକାର ପ୍ରଧାନ ଦ୍ୱାରପାଳ ଜୟ ବିଜୟ ସେମାନଙ୍କୁ ପ୍ରବେଶ କରୁଥିବା ଦେଖି କୁହାଟ ଛାଡ଼ି କହିଲେ—"ସାବଧାନ, ସାବଧାନ; ଆରେ ଏ ପିଲାଏ··· ଭିତରକୁ ଯାଅନା ।"

ଏ ମୁନିମାନେ ତ ବାଳକ ନୁହନ୍ତି । ସେମାନଙ୍କର ଦାଢ଼ି ବାହାରକୁ ନ ଉଠି ଭିତରେ ପେଟ ଦିଗରେ ବଢ଼ିଥିଲା ଏବଂ ସେମାନେ ଏମାନଙ୍କର ପୂର୍ବଜଙ୍କର ପୂର୍ବଜ ଥିଲେ । ସେଇ କାଲିକା ଟୋକାଙ୍କଠାରୁ ବାଳକ ସମ୍ବୋଧନ ଶୁଣି ସେମାନଙ୍କୁ ଖରାପ ଲାଗିଲା; ମାତ୍ର କିଛି ନ କହି ସେମାନଙ୍କର କଥାକୁ ଅବହେଳା କରି ଆଗକୁ ଚାଲିବାକୁ ଲାଗିଲେ । ସେମାନେ ମୁନିମାନଙ୍କର ଏଭଳି ଉପେକ୍ଷାଭାବ ଦେଖି କହିଲେ—"ଏ ପିଲେ, ତମେ ମାନିଲ ନାହିଁ ନା !"

"ହଁ, ଆମେ ମାନିବୁ ନାହିଁ !" ସେମାନେ ତତ୍‌କ୍ଷଣାତ୍ କହିଲେ ।

ସେମାନେ ମଧ୍ୟ ପବନରେ ବେତ ବାଡ଼େଇ ଦ୍ୱାରରୋଧ କରି ଠିଆ ହୋଇଗଲେ ଓ କହିଲେ—"ଆଚ୍ଛା ଦେଖୁଛୁଁ, କେମିତି ଭିତରକୁ ଯିବ ।"

ସେତେବେଳେ କାମର ଜ୍ୟେଷ୍ଠଭାଇ କ୍ରୋଧ ମୁନିମାନଙ୍କୁ ବଶୀଭୂତ କରିନେଲା । ଖାଲି 'ସେ କେମିତି ବୈକୁଣ୍ଠରେ ପହଞ୍ଚି ଗଲା' ପରୀ ଗୋଳମାଳ କରନ୍ତୁ ନାହିଁ । କ୍ରୋଧର ଭଗବାନଙ୍କ ବ୍ୟତୀତ କୌଣସି ସତ୍ତା ମଧ୍ୟ ନାହିଁ । ଅଧର୍ମ ତ ଭଗବାନଙ୍କର ପିଠିରୁ ଉତ୍ପନ୍ନ ହୁଏ । ଭଗବାନଙ୍କର ଇଚ୍ଛା ହେଲା ଆସିଗଲା । ତା'ପରେ ମୁନିମାନେ କହିଲେ—"ଯାଅ ତୁମେ ତିନୋଟି ପାପମୟୀ ଆସୁରୀ ଯୋନି ପ୍ରାପ୍ତ ହୁଅ ।"

"କାହିଁକି ମହାରାଜ !" ଏଥରେ ତାଙ୍କ ସ୍ୱରରେ ମୃଦୁତା ଆସିଥିଲା । 'ଭୟବିନୁ ହୋଇ ନ ପ୍ରୀତି ।'

Digitized by srujanika@gmail.com

"ଯେହେତୁ ତୁମେମାନେ ରଜୋଗୁଣ ତମୋଗୁଣ ଦ୍ୱାରା ବ୍ୟାପ୍ତ । ଭଗବାନଙ୍କ ଲୋକରେ ରହିବାପାଇଁ ଯୋଗ୍ୟ ନୁହଁ । ଏଇନେ ଦେଖ ପିଲାଙ୍କର କରାମତି ଆଉ ଶକ୍ତି···ଦେହ କେମିତି ଝଡ଼ୁଛି ମୁହଁମାଡ଼ି ।" ବ୍ୟଙ୍ଗପୂର୍ଣ୍ଣ ହସ ହସି କୁମାରମାନେ କହିଲେ ।

"ପ୍ରଭୁ, ଦୟାକର, ଆମେ ତ ଆପଣମାନଙ୍କର ପୁଅ ଭଳି ।" "ଏଇନେ ବୁଦ୍ଧି ଆସିଲା ନା ।" "ଲୋକେ ଚମତ୍କାରକୁ ନମସ୍କାର କରନ୍ତି ।" କୁମାରମାନେ ହସିଲେ ।

"ଦୟାକର ପ୍ରଭୁ ! ଆମେ ଆପଣଙ୍କୁ ଜାଣି ପାରିଲୁ ନାହିଁ—ଆପଣମାନଙ୍କର ସ୍ୱରୂପ ଚିହ୍ନି ପାରିଲୁ ନାହିଁ । ଆପଣଙ୍କର କଥା ମାନିଲୁ ନାହିଁ । ସର୍ବଦା ଆସୁରୀ ଯୋନିରେ ହିଁ ରହିବାକୁ ନ ପଡ଼ୁ ।" ସେମାନେ ବ୍ୟାକୁଳ ହୋଇ କୁମାରମାନଙ୍କର କୋମଳ ପାଦତଳେ ଲୋଟିଗଲେ ।

ସାଧୁମାନଙ୍କର କ୍ରୋଧ ପାଣିର ଗାରଭଳି । ଆସିଲା ଓ ସେଇଲାଗେ ସମାପ୍ତ ହୋଇଗଲା । କୁମାର କହିଲେ—"ଆରେ ଭାଇ, କଥା ତ ଆମର ଅନ୍ୟଥା ହେବ ନାହିଁ । ମାତ୍ର ତିନି ଜନ୍ମପାଇଁ ଆସୁରୀ ଭାବ ଭୋଗକର, ପରେ ତୁମେ ଭଗବାନଙ୍କ ଲୋକକୁ ପ୍ରତ୍ୟାବର୍ତ୍ତନ କରିବ ।"

"ତା'ହେଲେ କ'ଣ ଆମେ ତିନୋଟିଯାକ ଜନ୍ମରେ ଭଗବାନଙ୍କଠାରୁ ପୃଥକ ହୋଇ ରହିବୁ ।" ପାଦତଳେ ପଡ଼ିରହି ଜୟ-ବିଜୟ କହିଲେ ।

କୁମାରମାନେ ହସି ହସି କହିଲେ—"ଆରେ ଭାଇ, ତୁମେ ଭଗବାନଙ୍କଠାରୁ ପୃଥକ ହେବାକୁ ଚାହିଁଲେ ବି ହୋଇପାରିବ ନାହିଁ । ତିନୋଟିଯାକ ଜନ୍ମରେ ଭଗବାନ ହିଁ ତମକୁ ମାରିବେ । ତୃତୀୟ ଜନ୍ମରେ ଯେତେବେଳେ ପୀତାମ୍ବରଧାରୀ ବନମାଳୀ ତୁମମାନଙ୍କ ସଂହାର କରିବେ, ସେତେବେଳେ ତୁମେ ଆସୁରଭାବରୁ ମୁକ୍ତି ପାଇଯିବ ।

ପ୍ରସନ୍ନ ହୋଇ ସେମାନେ ପାଦତଳୁ ଉଠିଲେ । ତା'ପରେ ଦଣ୍ଡବତ୍ ପ୍ରଣାମ କଲେ—"ତାହେଲେ କୌଣସି ଚିନ୍ତା ନାହିଁ । ଭଗବାନ ମାରିବେ, ତେବେ ଭଗବାନଙ୍କ ସାଙ୍ଗରେ ସମ୍ବନ୍ଧ ଅବଶ୍ୟ ରହିବ; ଦ୍ୱେଷରେ ହେଉ ପଛକେ, ଶତ୍ରୁ ଭାବରେ ତାଙ୍କର ନିରନ୍ତର ସ୍ମରଣ ରହିବ । ଏଇଠି ସବୁଦିନ ପହରା ଦେଇ ଦେଇ ଚିଡ଼ା ଲାଗିଲାଣି । ଏଥର ହାତେ ହାତ ଭଗବାନଙ୍କ ସାଙ୍ଗରେ ବି ହୋଇଯାଉ । ଯେତେବେଳେ ସେ ଆମର ବନମାଳା, ଶଙ୍ଖ, ଚକ୍ର, ଗଦା, ପଦ୍ମ ଆମ ପାଖରୁ ନେଇ ମୁହଁ କଳାକରି ଅସୁର କରିଦେବେ, ସେତେବେଳେ ଆମେ ବି ଆମର ବୁଦ୍ଧି କୌଶଳର ଗୋଟ'କେତେ ନମୁନା ଦେଖେଇବା । ଆପଣଙ୍କ କୃପାରୁ ଜଳବାୟୁର ବି କିଛିଟା ପରିବର୍ତ୍ତନ ହୋଇଯିବ । ସଂସାର ବି ଦେଖିବାକୁ ମିଳିବ । ଆମକୁ ସ୍ୱାମୀଙ୍କର ବିଭିନ୍ନ ଅବତାର ସବୁ ବି ଦେଖିବାକୁ

Digitized by srujanika@gmail.com

ମିଳିବ । ଏଇଠି ଖାଲି ମାଆ ଲକ୍ଷ୍ମୀ ତାଙ୍କ ପାଦ ମଞ୍ଜାଳୁଥିବା ଦେଳାଟାରେଇ ଦେଖୁଛୁ । କିଛୁ ମାଡ଼ଗୋଳ, ଲଢ଼ାଲଢ଼ି ହୋଇଯାଉ । ସେ ମାରନ୍ତୁ, ଏଣେ ଆମେ, କିଛୁ ଆନନ୍ଦ ମିଳୁ···ତା'ହେଲେ ଗଲିଲୁ···ଖସିଲୁ ଆମେ !" ଏଇଆ କହି ଅଡ଼ଡ଼ ଧମ୍···ଅଡ଼ଡ଼ ଧମ୍ କରି ଦୁହେଁ ବୈକୁଣ୍ଠ ଲୋକରୁ ତଳକୁ ଖସିବା ଆରମ୍ଭ କଲେ ।

ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି—'ରାଜନ୍, ସେହି ଜୟ ବିଜୟ ଭଗବାନ କଶ୍ୟପଙ୍କର ଅମୋଘ ବୀର୍ଯ୍ୟରୁ ଦିତି ଦେବୀଙ୍କ ଗର୍ଭରେ ଜନ୍ମ ହୋଇ ହିରଣାକ୍ଷ ଓ ହିରଣ୍ୟକଶିପୁ ନାମରେ ପ୍ରଖ୍ୟାତ ହେଲେ । ଏମାନେ ଦୈତ୍ୟ ଦାନବ-ମାନଙ୍କର ପ୍ରଥମ ପ୍ରଭାବଶାଳୀ ରାଜା । ଏମାନଙ୍କ ମଧ୍ୟରୁ ହିରଣାକ୍ଷକୁ ଭଗବାନ ଶୂକର ରୂପରେ ଏବଂ ହିରଣ୍ୟକଶିପୁକୁ ବିକରାଳ ନୃସିଂହ ରୂପରେ ସଂହାର କଲେ । ତା'ପରେ ସେମାନେ ଦୁହେଁ ଭଗବାନ ପୁଲସ୍ତ୍ୟଙ୍କର ପୁତ୍ର ବିଶ୍ରମର ପତ୍ନୀ କେଶିନୀର ଗର୍ଭରେ ରାବଣ ଓ କୁମ୍ଭକର୍ଣ୍ଣ ଭାବରେ ପ୍ରକଟିତ ହେଲେ ଏବଂ ଅବଧକୁଳ ମଣ୍ଡନ, କୌଶଲ୍ୟାନନ୍ଦ-ବର୍ଦ୍ଧନ ଦଶରଥ ନନ୍ଦନ ମୈଥିଳୀ-ହୃଦୟ-ସର୍ବସ୍ୱ ଶ୍ରୀ ରାଘବେନ୍ଦ୍ର ଯୁଦ୍ଧରେ ସେମାନଙ୍କୁ ସଂହାର କଲେ । ପୁନଶ୍ଚ ତୃତୀୟ ଜନ୍ମରେ ସେମାନେ ଭଗବାନଙ୍କର ଦୁଇ ପିଉସୀଙ୍କର ଘରେ ଦୁଇଜଣ ମାଉସୀଙ୍କର ଗର୍ଭରୁ ପୃଥକ୍ ପୃଥକ୍ ଶିଶୁପାଳ ଓ ଦନ୍ତବକ୍ର ନାମରେ ଜନ୍ମ ହେଲେ । ଏଇ ଜନ୍ମରେ ସେମାନେ ଭଗବାନଙ୍କ ହାତରେ ନିହତ ହୋଇ ମୁକ୍ତ ହେଲେ । ବୈର ଭାବରେ ହେଉ ପଛକେ, ସେମାନେ ଭଗବାନଙ୍କର ନିରନ୍ତର ଧ୍ୟାନ କରୁଥିଲେ । ଯେ ଯା'ର ଧ୍ୟାନ କରିବ, ସେ ସେଇ ରୂପର ହୋଇଯିବ । ତେଣୁ ଏମାନେ ଭଗବାନ ଅଚ୍ୟୁତଙ୍କର ସ୍ୱରୂପ ପ୍ରାପ୍ତହୋଇ ତାଙ୍କରି ସମୀପକୁ ଗଲେ । ଶ୍ରୀରାମ ଅବତାର କଥା ଆପଣ ମହାମୁନି ମାର୍କଣ୍ଡେୟଙ୍କ ମୁଖରୁ ଶ୍ରବଣ କରିବେ ।"

ଏହା ଶୁଣି ଧର୍ମରାଜ କହିଲେ —"ମହାତ୍ମନା, ଶ୍ରୀରାମ ଚରିତକୁ ତ ମୁଁ ମହର୍ଷି ମାର୍କଣ୍ଡେୟଙ୍କ ନିକଟରୁ ଶୁଣିନେବି, ଶୂକରାବତାର କଥା ମଧ୍ୟ ମୁଁ ତାଙ୍କ ପାଖରୁ ଶୁଣିବି, ମାତ୍ର ଆପଣ ମୋତେ ନୃସିଂହ ଅବତାରର କଥା କହନ୍ତୁ । ନୃସିଂହଙ୍କ କଥା ମୁଁ ତାଙ୍କ ନିକଟରୁ ଶୁଣିବି ଏବଂ ସେ ଭୂଲ୍ ବଶତଃ ସେଇ ରୂପ ଧାରଣ କରିନେବେ ଏଠି ସବୁ ଗୋବିନ୍ଦାୟ ନମୋ ନମଃ ହୋଇଯିବେ । ଭଗବାନ ନୃସିଂହ ରୂପ କେଉଁ କାରଣରୁ ଧାରଣ କରିଥିଲେ ।"

ଏହା ଶୁଣି ମହର୍ଷି ନାରଦ କହିଲେ—"ରାଜନ୍, ମୁଁ ତ ଆପଣଙ୍କୁ କହି ସାରିଛି, ଈଶ୍ୱରଙ୍କ ସମସ୍ତ ଅବତାର ଭକ୍ତମାନଙ୍କୁ ଆନନ୍ଦ ଦେବାକୁ ହୋଇଥାଏ । ଯେତେବେଳେ ଭଗବାନଙ୍କୁ ଅସୁର ରାଜା ହିରଣାକ୍ଷ ପାତାଳକୁ ନେଇଗଲା, ସେତେବେଳେ ସେ ତାକୁ ସଂହାର କରି ଧରାଦେବୀଙ୍କୁ ଆପଣା ଶୃଙ୍ଗରେ ଧାରଣକରି ନେଇ ଆସିଲେ । ହିରଣ୍ୟକଶିପୁ ଆପଣାର କନିଷ୍ଠ ପୁତ୍ର ପ୍ରହ୍ଲାଦଙ୍କ ପ୍ରତି ଅତ୍ୟନ୍ତ ଦ୍ୱେଷଭାବ ରଖିଥିଲା । ସେ ତାଙ୍କୁ ମାରି ଦେବାକୁ ଚାହୁଁଥିଲା । ସେ ତାଙ୍କୁ ହତ୍ୟା

Digitized by srujanika@gmail.com

କରିବାର ନାନା ଉପାୟ କଲା । ଏହି କାରଣରୁ ଈଶ୍ୱରଙ୍କର କ୍ରୋଧ ଜାତ ହେଲା ଏବଂ ସେ ଅତ୍ୟନ୍ତ ଭୟାନକ ନୃସିଂହ ରୂପ ଧାରଣକରି ସ୍ତମ୍ଭ ବିଦାରଣ କରି ଆବିର୍ଭୂତ ହେଲେ । ସ୍ତମ୍ଭର ପୁତ୍ର ହେଲେ । ଚୈତନ୍ୟର ପୁତ୍ର ସମସ୍ତେ ହୋଇଥାନ୍ତି; ମାତ୍ର ଭଗବାନ ଭକ୍ତ ନିମନ୍ତେ ଜଡ଼ର ପୁତ୍ର ହେଲେ ।''

ଏହା ଶୁଣି ଧର୍ମଧ୍ୱଜ ଯୁଧିଷ୍ଠିର କହିଲେ—''ମହାମନା, ମାତା-ପିତାଙ୍କର ପୁତ୍ର ପ୍ରତି ପ୍ରାଣରୁ ବଳି ମମତା ଥାଏ । ପୁତ୍ର ଅଯୋଗ୍ୟ ହୋଇଥାଉ ନା କାହିଁକି, ମାତା-ପିତା ତାକୁ ସ୍ନେହ କରନ୍ତି । ତା'ର ମଙ୍ଗଳ କାମନା କରନ୍ତି । ତା'ପରେ ଶ୍ରେଷ୍ଠ ପୁଅ ପ୍ରତି ତ ବିଶେଷ ସ୍ନେହ ହେବା ସ୍ୱାଭାବିକ । ଏପରି କେଉଁ କାରଣ ଥିଲା, ଯାହା ଫଳରେ ପିତା-ପୁତ୍ର ମଧ୍ୟରେ ଏତେ ଦ୍ୱେଷ ବଢ଼ିଗଲା, ଏପରି ହେଲା ଯେ ପିତା-ପୁତ୍ରଙ୍କର ଯୁଦ୍ଧରେ ନରୋତ୍ତମ ନରସିଂହ ରୂପ ଧାରଣ କଲେ । ପ୍ରସ୍ଫୁଟିତ ଶାରଦୀୟ କମଳ ସଦୃଶ ମନୋହର ମୁଖମଣ୍ଡଳକୁ ଭୟଙ୍କର ଦନ୍ତପଂକ୍ତି ଓ ପୁଚ୍ଛ କେଶରରେ ସଜେଇବାକୁ ହେଲା । ଏଇ ଚରିତ୍ର ଶ୍ରବଣ କରିବା ନିମନ୍ତେ ମୋର ମନ ମଧ୍ୟରେ ଅତ୍ୟନ୍ତ କୌତୂହଳ ଜାତ ହେଉଛି । ଆପଣ ଅବଶ୍ୟ କହନ୍ତୁ ।''

ଶ୍ରୀ ସୂତ କହୁଛନ୍ତି—''ହେ ମୁନିଗଣ, ମହାରାଜ ଯୁଧିଷ୍ଠିରଙ୍କର ପ୍ରଶ୍ନର ଉତ୍ତରରେ ମହର୍ଷି ନାରଦ ଯାହା ଯେଭଳି କହିଲେ, ମୁଁ ଠିକ୍ ସେଇଭଳି ଆପଣମାନଙ୍କୁ ଶୁଣେଇ, ଯେଉଁପରି ମୋର ଗୁରୁଦେବ ମହାରାଜ ପରୀକ୍ଷିତଙ୍କୁ ଶୁଣେଇଥିଲେ । ଆପଣ ସମସ୍ତେ ତାହା ସମାହିତ ଚିତ୍ତରେ ଶ୍ରବଣ କରିବାର କୃପା କରନ୍ତୁ ।''

## ଛପ୍ପୟ

ବିପ୍ର ! ରହେଁ କବ ତଲକ ଅସୁର ତନ ସମୟ ବତାଓ ।
ମୁନି ବୋଲେ—'ଫିର ଯହାଁ ତୀନି ଜନ୍ମନି ମହଁ ଆଓ ॥
ହିରନକଶିପୁ ହିରଣାକ୍ଷ ଭୟେ ତୋ ପ୍ରଥମ ଜନମ ମହଁ ।
ନରହରି ଅରୁ ବାରାହ ହନେ ଦୋନୋ ତନ ରନ ମହଁ ॥
କୁମ୍ଭକରନ ରାବନ ବନେ, ରାମ ହାଥ ମାରେ ଗୟେ ।
ଦନ୍ତବକ୍ର ଶିଶୁପାଲ ପୁନି, ହରି ହାଥନି ମରି ସୁର ଭୟେ ॥

---

Digitized by srujanika@gmail.com

# ଭାଇର ମୃତ୍ୟୁରେ ହିରଣ୍ୟକଶିପୁର ଶ୍ରୀହରିଙ୍କ ପ୍ରତି କ୍ରୋଧ

ଭ୍ରାତର୍ଯ୍ୟେବଂ ବିନିହତେ ହରିଣା କ୍ରୋଡ଼ମୂର୍ତ୍ତିନା ।
ହିରଣ୍ୟକଶିପୂ ରାଜନ୍‌ପର୍ଯ୍ୟତପ୍ୟଦ୍ ରୁଷା ଶୁଚା ॥

( ଶ୍ରୀ ଭା ୭ ସ୍କ ॥ ୨ୟ ଅ ॥ ୧ମ ଶ୍ଳୋକ )

## ଛପ୍‌ପୟ

ନାରଦ ବୋଲେ—ନୃପତି ! ଚରିତ ନରସିଂହ ସୁନାଉଁ ।
ହିରନକଶିପୁ ଜସ ହନେ୍ୟା ଭକ୍ତ ମହିମା ଅବ ଗାଉଁ ॥
ସୂକର ବନି ଲଘୁ ବନ୍ଧୁ ହନେ୍ୟା ବଡ଼ ଭୟୋ ଦୁଖାରୀ ।
ବିଷ୍ଣୁ ହମାରୋ ଶତ୍ରୁ ଅସୁର କୁଲ କୋ ସହାରୀ ॥
ମାରୁଁ ପହିଲେ ବିଷ୍ଣୁ କୁଁ, ତବ ଦେବନି କୁଁ ବଶ କରୁଁ ।
କରିକେ ବିଷ୍ଣୁ ବିହୀନ ଜଗ, ଅସୁର ବଂଶ କୋ ଦୁଃଖ ହରୁଁ ॥

ଆପଣା ଏବଂ ଆପଣାର ସ୍ୱଜନମାନଙ୍କ ପ୍ରତି ଦ୍ୱେଷଭାବ ପୋଷଣ କରିଥିବା ବ୍ୟକ୍ତି ପ୍ରତି ଦ୍ୱେଷ ହେବା ସ୍ୱାଭାବିକ । ମାତୃ, ପିତୃ, ଭାତୃ ତଥା ସମ୍ବନ୍ଧୀମାନଙ୍କର ହିଂସକପ୍ରତି ପ୍ରତିହିଂସାର ଭାବ ପ୍ରାୟ ସମସ୍ତଙ୍କ ହୃଦୟରେ ଜାଗରିତ ହୁଏ । ଯେଉଁ-ମାନଙ୍କର ହୁଏ ନାହିଁ ଜଡ଼ ଅଥବା ଜୀବନମୁକ୍ତ । ଯଦି ଜଣେ ଅନୁପକାର କରେ, ତେବେ ତାହା ସହିତ ସମ୍ବନ୍ଧ ରଖିଥିବା ସମସ୍ତଙ୍କ ସହିତ ଦ୍ୱେଷ ହୋଇଥାଏ । ଭଗବାନ ପର୍ଶୁରାମଙ୍କର ପିତା ଜମଦଗ୍ନିଙ୍କର ମସ୍ତକ ହୈହୟ ବଂଶର କ୍ଷତ୍ରିୟମାନେ ଛେଦନ କରିଥିଲେ । ତେଣୁ କ୍ରୋଧିତ ହୋଇ ଭଗବାନ ପର୍ଶୁରାମ ପୃଥିବୀର ସମସ୍ତ କ୍ଷତ୍ରିୟମାନଙ୍କର ବିନାଶର ପ୍ରତିଜ୍ଞା ନେଇ ପୃଥିବୀ ଭ୍ରମଣ କରି ଏକୋଇଶ ବାର କ୍ଷତ୍ରିୟ କୁଳର ସଂହାର କରିଥିଲେ । ଯେତେବେଳେ ଋଷି ମୁନି ପର୍ଯ୍ୟନ୍ତ ସମସ୍ତଙ୍କ ମଧ୍ୟରେ ପ୍ରତିହିଂସାର ଭାବ ଥାଏ, ତେବେ ଅସୁରଙ୍କ ମଧ୍ୟରେ ରହିବା ଏହା ସ୍ୱାଭାବିକ । ଏହା କଦାପିତ ବିସ୍ମୟକର ନୁହେଁ ।

Digitized by srujanika@gmail.com

ମହାରାଜ ଯୁଧିଷ୍ଠିରଙ୍କୁ ଶ୍ରୀ ନାରଦ କହୁଛନ୍ତି—"ରାଜନ୍, ଆପଣ ମୋତେ ପଚାରିଥିଲେ, ହିରଣ୍ୟକଶିପୁ ତା'ର ନିଜର ପୁତ୍ର ପ୍ରହ୍ଲାଦଙ୍କ ସହିତ ଦ୍ୱେଷ କିପରି କଲା ? ଏହି ବିଷୟରେ କହିବା ପୂର୍ବରୁ ମୁଁ ଆପଣଙ୍କୁ ହିରଣ୍ୟକଶିପୁ ଚରିତ୍ର ସମ୍ବନ୍ଧରେ କହିବି । ତା'ପରେ ପ୍ରହ୍ଲାଦଙ୍କର ସ୍ୱଭାବ ସମ୍ବନ୍ଧରେ କହିବି । ଏହି ଉଭୟଙ୍କର ପ୍ରତିକୂଳ ଭାବ ହେବା ହେତୁ କିପରି ଭଗବାନ ନରହରି ରୂପ ଧାରଣ କରି ଆପଣାର ଆଶ୍ରିତ ଭକ୍ତକୁ ରକ୍ଷା କଲେ, ସେହି ପରମ ପବିତ୍ର ଆଖ୍ୟାନକୁ ଅତ୍ୟନ୍ତ ସରସତା ଓ ମନୋରଞ୍ଜକତା ସହିତ ଶୁଣାଇବି । ଆପଣ ଏ ଚରିତ୍ର ପ୍ରାରମ୍ଭରୁ ଶ୍ରବଣ କରନ୍ତୁ ।"

ଭଗବାନ ଶୂକରାବତାର ଧାରଣ କରି ଯେତେବେଳେ ଧରଣୀର ଉଦ୍ଧାର କଲେ ଏବଂ ସେଇ ଅବସରରେ ଯେପରି ହିରଣାକ୍ଷର ସଂହାର କଲେ, ସେ ପ୍ରସଙ୍ଗ ଆପଣ ଶ୍ରବଣ କରିଛନ୍ତି । ଯେତେବେଳେ ଦେବତାମାନଙ୍କର ହିତ ସାଧନ ନିମନ୍ତେ ଶୂକରରୂପଧାରୀ ବିଷ୍ଣୁ ହିରଣ୍ୟକଶିପୁର ଜ୍ୟେଷ୍ଠ ଭାଇକୁ ହତ୍ୟା କଲେ, ତାହା ଶୁଣି ମହାବଳୀ ଦୈତ୍ୟରାଜ ହିରଣ୍ୟକଶିପୁ ଅତ୍ୟନ୍ତ କୁପିତ ହେଲା । ପ୍ରଥମତଃ, ତା ଭିତରେ ଆପଣାର ଆଜ୍ଞାକାରୀ, ସ୍ନେହୀ ଜ୍ୟେଷ୍ଠ ଭାଇର ମୃତ୍ୟୁର ଦୁଃଖ ଥିଲା । ବିଷ୍ଣୁ ଭଗବାନ ଦେବତା-ମାନଙ୍କ ସହିତ ପକ୍ଷପାତ କରିଛନ୍ତି, ଏହା ମଧ୍ୟ ଦୁଃଖର ଦ୍ୱିତୀୟ କାରଣ ଥିଲା ! ସେଇ କାରଣରୁ ଦାନ୍ତ କାମୁଡ଼ି, ଅଧର ସ୍ଫୁରିତ କରି କ୍ରୋଧାଗ୍ନିରେ ଜାଳି ସମସ୍ତ ଅସୁର-ମାନଙ୍କୁ ଶୁଣେଇ ସଭାସ୍ଥଳରେ ଘୋଷଣା କରିବାକୁ ଠିଆ ହେଲା । କ୍ରୋଧ ହେତୁ ସେ କମ୍ପି ଉଠୁଥିଲା । ମୁଖରୁ ସ୍ପଷ୍ଟ ଶବ୍ଦର ଉଚ୍ଚାରଣ ପର୍ଯ୍ୟନ୍ତ ହେଉ ନ ଥିଲା । ତା'ର ଭ୍ରୂକୁଟୀ କୁଟିଳ ହୋଇ ଉଠୁଥିଲେ । ନେତ୍ର ରକ୍ତାଭ ହୋଇ ଉଠୁଥିଲେ । କରାଳ ଦାଢ଼ ଅଧିକ ପ୍ରକାଶିତ ହେଉଥିବା ହେତୁ ତା'ର ମୁଖ ଅଧିକ ଭୟାନକ ଓ ଦୁର୍ଦ୍ଧର୍ଷ ମନେ ହେଉଥିଲା । ରୋଷ କଂପିତ ହୋଇ ସେ ତ୍ରିଶୂଳ ବୁଲେଇ ସମସ୍ତଙ୍କୁ ସଂବୋଧିତ କରି କହିଲା—"ଦ୍ୱିମୂର୍ଦ୍ଧା" !

ଦ୍ୱିମୂର୍ଦ୍ଧା ଉଠିପଡ଼ି ନମ୍ରତା ସହକାରେ କହିଲା—"ପ୍ରଭୁ ! ମୁଁ ଉପସ୍ଥିତ, ମୋତେ ଆଦେଶ ଦିଅନ୍ତୁ ।" ତା'ପରେ ସେ କହିଲା—"ତ୍ୟକ୍ଷ, ଶମ୍ବର, ଶତବାହୁ, ହୟଗ୍ରୀବ କେଉଁଠାରେ ଅଛନ୍ତି ?" ଏହା ଶୁଣିବା ମାତ୍ରେ ସେହି ଲବ୍ଧପ୍ରତିଷ୍ଠ ଯୋଦ୍ଧା ଅସୁର ମଧ୍ୟ ଠିଆ ହେଲେ । କହିଲେ—"ପ୍ରଭୁ, ଆମେମାନେ ମଧ୍ୟ ଉପସ୍ଥିତ । ଆଦେଶ କରନ୍ତୁ ।"

ସେତେବେଳେ ସେ କହିଲା—"ନମୁଚି, ପାକ, ଇଲ୍‌ବଲାଗଜ, ବିପ୍ରଚିତ୍ତି, ପୁଲୋମା ଓ ଶକୁନିକୁ ମଧ୍ୟ ଡାକ । ଯେତେଯେତେ ପ୍ରଧାନ ପ୍ରଧାନ ଦୈତ୍ୟ ଦାନବ ଅଛନ୍ତି ସେମାନେ ମଧ୍ୟ ସାବଧାନ ହୋଇ ମୋ କଥା ଶୁଣ । ମୁଁ ଯାହା କହୁଛି, ତାହା ଅବ୍ୟଗ୍ରଭାବରେ ସ୍ମରଣ କରି ତଦନୁସାରେ କାର୍ଯ୍ୟ କର ।"

Digitized by srujanika@gmail.com

ସମସ୍ତେ କରଯୋଡ଼ି କହିଲେ—"ହଁ ଅନ୍ନଦାତା, ଆମେମାନେ ସମସ୍ତେ ଆପଣଙ୍କ ସେବାରେ ଉପସ୍ଥିତ ହୋଇ ରହିଛୁଁ । ଆମକୁ ଯାହା ଆଦେଶ ଦେବେ, ଆମେ ତାହା ତତ୍‌କ୍ଷଣାତ୍ ପାଳନ କରିବୁଁ ।"

ହିରଣ୍ୟକଶିପୁ କହିଲା—"ଏକଥା ତୁମମାନଙ୍କୁ ଜଣା ଯେ ମୋର ପ୍ରାଣରୁ ବଳି ଶ୍ରେଷ୍ଠଭାଇକୁ ବିଷ୍ଣୁ ଶୂକରରୂପ ଧାରଣ କରି ହତ୍ୟା କରିଛି ।"

ହାତଯୋଡ଼ି ଶମ୍ବରାସୁର କହିଲା—"ହଁ ପ୍ରଭୋ ! ଏହା ଅତ୍ୟନ୍ତ ଅନ୍ୟାୟ ହୋଇଛି । ଶ୍ରେଷ୍ଠ ମହାରାଜଙ୍କ ସହିତ ଛଳନା କରି ଶୂକରବେଶଧାରୀ ବିଷ୍ଣୁ ମାରିଛି ।"

ଏହା ଶୁଣି ସେ ଅତ୍ୟନ୍ତ କ୍ରୋଧରେ ଦାନ୍ତ କଟମଟ କରି କହିଲା—"ଛଳ ହେଉ ବା ବଳ ହେଉ, ମୁଁ କହୁଛି ସେ ବିଷ୍ଣୁର କ'ଣ କ୍ଷତି କରିଥିଲା ? ମୁଁ ସର୍ବଦା ଶୁଣି ଆସିଛି ଯେ, ବିଷ୍ଣୁ ସମଦର୍ଶୀ । ତା' ଲାଗି ସୁର ଯେମିତି, ଅସୁର ମଧ୍ୟ ସେମିତି । ଖାଲି ପ୍ରଭେଦ ଏତିକି ଯେ ସୁରମାନେ ତା ଆଗରେ ହାତ ଯୋଡ଼ି ରହିଥାନ୍ତି । କଥା କଥାରେ ତା'ର ପାଦ ଘୃଷି ରହିଥାନ୍ତି, ଆଉ ଆମେ ତା ସାଙ୍ଗରେ ସମ୍ପର୍କ ରଖୁନା । ନେହୁରା କରୁନା, ଗୋଡ଼ାଣିଆ ହୋଇ ଖୋସାମତ କରୁନାହୁଁ । ତେଣୁ ତା'ର ଆମ ଉପରେ ରାଗ । ଆପଣାର ପ୍ରଶଂସା ଯିଏ କରେ ତା'ର ପ୍ରିୟ । ମନେ ହେଉଛି, ତା'ର ମଧ୍ୟ ଆତ୍ମଶ୍ଳାଘା ହୋଇଛି । ସେ ମଧ୍ୟ ମିଥ୍ୟା ପ୍ରଶଂସା ଶୁଣି ଶୁଣି ଫୁଲି ଗଲଣି । ମୁଁ ତ ଶୁଣିଛି ବିଷ୍ଣୁ ଶୁଦ୍ଧ ସ୍ୱରୂପ । ଶୁଦ୍ଧ ସ୍ୱରୂପର କାହା ପ୍ରତି କପରି ରାଗ ଦ୍ୱେଷ ହେବ ? ମନେ ହେଉଛି, ବିଷ୍ଣୁ ତା'ର ସ୍ୱଭାବ ତ୍ୟାଗ କରିଦେଇଛି । ଏବେ ସେ ମଧ୍ୟ ପକ୍ଷପାତୀ । ମନେ ହେଉଛି ସେ ଏଇନେ ପିଲାଙ୍କ ପରି ଅସ୍ଥିର ଚିତ୍ତ । ପିଲାଙ୍କ ଭଳି ହୋଇଯାଇଛି । କେହି ଫଳଟିଏ ଦେଖେଇ ଦେଲା, ମାଳୀଟିଏ ପିନ୍ଧେଇ ଦେଲା, ମିଠେଇଟିଏର ଲୋଭ ଦେଖେଇଲା ତ ସେ ତା' କୋଳକୁ ଦଉଡ଼ି ଗଲା । ଏଇନେ ସେ ତା'ର ମର୍ଯ୍ୟାଦାରୁ ଚ୍ୟୁତ ହୋଇଛି । ତେଣୁ ମୁଁ ଏଇ ତ୍ରିଶୂଳରେ ତା'ର ମସ୍ତକ ଛେଦନ କରି ତା'ରି ଉଷ୍ମ ରକ୍ତରେ ମୋର ପରମ ପ୍ରିୟ ସହୋଦର ଭାଇର ତର୍ପଣ କରିବ । ସେଇ ରକ୍ତ ପାନକରି ମୋର ପରଲୋକଗତ ଭାଇ ସନ୍ତୁଷ୍ଟ ହେବ ।"

ଏହା ଶୁଣି ନମୁଚି କହିଲା—"ପ୍ରଭୁ, ଆମର ମୁଖ୍ୟ ଶତ୍ରୁ ତ ଦେବତାମାନେ । ପ୍ରଥମରେ ସେମାନଙ୍କୁ ହତ୍ୟା କରାଯାଉ । ତା'ପରେ ବିଷ୍ଣୁପ୍ରତି ଆକ୍ରମଣ କରିବା ।"

ହିରଣ୍ୟକଶିପୁ କହିଲା -"ତମେମାନେ କିଛି ବୁଝୁ ନାହଁ । ଭାଇ, କଥା ହେଲା, ଦେବତାମାନେ ନପୁଂସକ । ସେମାନଙ୍କର କୌଣସି ପ୍ରକାର ବଳ ପୌରୁଷ ନାହିଁ । ସେମାନେ ବିଖ୍ୟାତ ପଳାତକ । ମୋର ଭାଇକୁ ଦେଖି ଇନ୍ଦ୍ର ଶଚୀ ଭବନରେ ଚୂଡ଼ି ପିନ୍ଧି ବସିଥିଲା । ଏକମାତ୍ର ବଳ ଏମାନଙ୍କର ବିଷ୍ଣୁ । ବିଷ୍ଣୁ ହିଁ ଏମାନଙ୍କର ସାହସ

Digitized by srujanika@gmail.com

ଓ ଉତ୍ପାତର ମୁଖ୍ୟ କାରଣ; ତେଣୁ ପ୍ରଥମେ ସେଇ ମୂଳର ହିଁ ଉଚ୍ଛେଦନ ଆବଶ୍ୟକ । ପ୍ରଥମେ ମୂଳକୁ କାଟିବାକୁ ପଡ଼ିବ । ମୂଳ କଟିଗଲେ ପତ୍ର, ପୁଷ୍ପ, ଶାଖା ଆଦି ତ ଆପେ ଆପେ ଶୁଖି ଝଡ଼ିଯିବ; ଯେମିତି ଘରର ନିଅଁକୁ ଖୋଳି ଦିଆଗଲେ ଆପେ ଆପେ ଘର ଭୁଷୁଡ଼ି ପଡ଼େ ସେପରି ବିଷ୍ଣୁକୁ ମାରିଦେଲେ ଆପେ ଆପେ ସବୁ ଦେବତା ନିସ୍ତେଜ ଓ ଶ୍ରୀହୀନ ହୋଇପଡ଼ିବେ ।

ଏହା ଶୁଣି ଅସୁରମାନେ କହିଲେ—"ହେ ଅସୁରେନ୍ଦ୍ର ! ଶତ୍ରୁକୁ ମାରିବା ପୂର୍ବରୁ ତାକୁ ଦୁର୍ବଳ କରିଦେବା ଉଚିତ । ଦୁର୍ବଳ ଶତ୍ରୁକୁ ଶୀଘ୍ର ଏବଂ ସହଜରେ ମାରିହୁଏ ।"

ଏହା ଶୁଣି ହିରଣ୍ୟକଶିପୁ କହିଲା—"ତୁମମାନଙ୍କର ଏହି ସମ୍ମତି ସର୍ବଥା ସତ୍ୟ । ବିଷ୍ଣୁର ମୂଳ ହେଉଛି ଯଜ୍ଞ । ଯଜ୍ଞକୁ ବିଷ୍ଣୁ ବୋଲି କୁହାଯାଇଛି । ଯଜ୍ଞ ବେଦ, ବ୍ରାହ୍ମଣ ଓ ଗାଈମାନଙ୍କର ସହାୟତାରେ ଅନୁଷ୍ଠିତ ହୋଇଥାଏ । ଯେଉଁଠାରେ ଧର୍ମ ଅଛି ସେଠାରେ ବିଷ୍ଣୁ ମଧ୍ୟ ଅଛି । କାରଣ ସେହି ଯଜ୍ଞସ୍ୱରୂପ ପୁରାଣ ପୁରୁଷର ଯଥାର୍ଥ ରୂପ ତ ଧର୍ମ । ଧର୍ମର ଆଶ୍ରୟରେ ହିଁ ଦେବତା, ପିତୃ, ଋଷି, ମୁନି ତଥା ପଞ୍ଚଭୂତ ଆଦି ସମସ୍ତେ ରହିଛନ୍ତି । ତେଣୁ ପ୍ରଥମରେ ତାକୁ ନିପାତ କରାଯାଉ । ଏହା ଦୁର୍ବଳ ହେବାମାତ୍ରକେ ବିଷ୍ଣୁ ମଧ୍ୟ ଦୁର୍ବଳ ହୋଇ ପଡ଼ିବ । ଯେତେବେଳେ ଯଜ୍ଞ ଆଦି କିଛି ହେବ ନାହିଁ ସେତେବେଳେ ବିଷ୍ଣୁକୁ ମଧ୍ୟ ଯଜ୍ଞଭାଗ ମିଳିବ ନାହିଁ । ଏଣୁ ଯେଉଁଠାରେ ଯଜ୍ଞ ହେଉଥିବ ସେଇ ପ୍ରଦେଶମାନଙ୍କୁ ଜଳେଇ ଦିଅ । ବ୍ରାହ୍ମଣଙ୍କୁ ମାରି ଯମପୁର ପଠାଇ ଦିଅ । ତୁମେ ସେମାନଙ୍କର ରକ୍ତପାନ କର । ଗୋହତ୍ୟା କର । ବ୍ରାହ୍ମଣମାନଙ୍କ ପେଟ ଚିରିଦିଅ ।"

ହିରଣ୍ୟକଶିପୁର ଏଭଳି ଆଦେଶ କ'ଣ ହେଲା, ସତେ ଯେଉଁପରି ଅସୁରମାନଙ୍କୁ କୋହିନିଧି ମିଳିଗଲା । ସେମାନେ ତ ହାଣକାଟ, ହିଂସା ନିର୍ଦ୍ଦୟତା ନିମନ୍ତେ ସତେ ଯେମିତି ସୃଷ୍ଟି ହୋଇଥିଲେ । ସେମାନଙ୍କୁ ଜୀବହତ୍ୟା, ହିଂସା ଆଦି ଆଚରଣରେ ହିଁ ଆନନ୍ଦପ୍ରାପ୍ତ ହୋଇଥାଏ । ଆଉ ଆଜ୍ଞା ଚାହିଁଲା କ'ଣ, ସଭିଏଁ ଅସ୍ତ୍ରଶସ୍ତ୍ର ଉଠେଇ ପୃଥିବୀ ସାରା ଘୂରିବୁଲି ବ୍ରାହ୍ମଣମାନଙ୍କୁ ପୀଡ଼ିତ କରିବାକୁ ଲାଗିଲେ । ବାପରୁହମାନଙ୍କୁ ଉତ୍ପୀଡ଼ିତ କରିବାକୁ ଲାଗିଲେ । ଧର୍ମ ବିରୁଦ୍ଧରେ ଯାହା କିଛି ମଧ୍ୟ କରିପାରନ୍ତେ କରିବାକୁ ଲାଗିଲେ । ଗାଁ ଗଣ୍ଡାରେ ପଶିଯାଆନ୍ତି ଓ ଜାଳି ଦିଅନ୍ତି । ନଗରମାନଙ୍କୁ ନଷ୍ଟଭ୍ରଷ୍ଟ କରିଦିଅନ୍ତି । ବ୍ରଜ, ଉଦ୍ୟାନ, କ୍ଷେତ, ଆଶ୍ରମ, ଖାନ, ଖେଟ, ଖର୍ବଟ, ଘୋଷ ଓ ନଗରମାନଙ୍କୁ ସ୍ୱାହା କରିବାକୁ ଲାଗିଲେ । ଫଳବନ୍ତ ବୃକ୍ଷମାନଙ୍କୁ କାଟିବାକୁ ଲାଗିଲେ । ସେତୁ, ନଗର, ଦ୍ୱାର ତଥା ପ୍ରାସାଦମାନଙ୍କୁ ଖୋଦନ କରି ଧୂଳିସାତ୍ କରିବାକୁ ଲାଗିଲେ । ବଡ଼ ବଡ଼ ରାଜଧାନୀଗୁଡ଼ିକୁ ଅଗ୍ନି ସମର୍ପିତ କରି ଧ୍ୱଂସ କରିବାକୁ ଲାଗିଲେ ।

Digitized by srujanika@gmail.com

ନାରଦ କହୁଛନ୍ତି—"ରାଜନ୍, ଏପରିଭାବରେ ଯେତେବେଳେ ହିରଣ୍ୟକଶିପୁର ଦୈତ୍ୟମାନେ ପୃଥିବୀରେ ଯଜ୍ଞଯାଗାନୁଷ୍ଠାନମାନଙ୍କୁ ନଷ୍ଟ କରିବାକୁ ଲାଗିଲେ ସେତେବେଳେ ଦେବତାମାନଙ୍କୁ ଆଉ କେହି ହବି ପ୍ରଦାନ କଲେ ନାହିଁ । ସେମାନେ କ୍ଷୁଧା ହେତୁ, ଯଜ୍ଞଭାଗରୁ ବଞ୍ଚିତ ହୋଇ ସାଧାରଣ ମନୁଷ୍ୟମାନଙ୍କ ସଦୃଶ ପୃଥିବୀ ପୃଷ୍ଠରେ ବିଚରଣ କରିବାକୁ ଲାଗିଲେ । ସ୍ୱର୍ଗ ଉପରେ ଯେତେବେଳେ ହିରଣ୍ୟକଶିପୁର ଅଧିକାର ହୋଇ ସାରିଥିଲା, ସେଠାରେ କ୍ଷୁଧିତ ଦେବତାମାନେ କ'ଣ କରନ୍ତେ ? ତେଣୁ ସେମାନେ ବେଶ ବଦଳାଇ ବିପତ୍ତିକାଳକୁ କଷ୍ଟରେ ଅତିବାହିତ କରିବାକୁ ଲାଗିଲେ !

## ଛପ୍ପୟ

ହେ ଶମ୍ବର ! ହେ ନମୁଚି ! ଶକୁନି ସବ ମିଲିକେଁ ଜାଓ ।
ବେଦ ବିପ୍ର ଗୌ ଯଜ୍ଞ ଅବନି ତେଁ ଜାଇ ମିଟାଓ ॥
ଯଜ୍ଞ ରୂପ ହୈ ବିଷ୍ଣୁ, ଦେବତା ଯଜ୍ଞ ସହାରେ ।
ବିଷ୍ଣୁ ଯଜ୍ଞ ମିଟି ଜାଇଁ ଦେବ କା କରେଁ ବିଚାରେ ॥
ଦୁର୍ବଲ ଦେବନି ପକ୍ଷ ଲୈ, ବିଷ୍ଣୁ କପଟ ସୂଅର ବନେୟା ।
ସମଦର୍ଶୀ ନେ ଛଲ ସହିତ, ସୁହୃଦ ସହୋଦର ମମ ହନେୟା ॥

---

Digitized by srujanika@gmail.com

# ହିରଣ୍ୟକଶିପୁର ଆପଣାର ପରିଜନଙ୍କ ପ୍ରତି ଧୈର୍ଯ୍ୟବାଣୀ

ଅମ୍ବାମ୍ବ ହେ ବଧୂଃ ପୁତ୍ରା ବୀରଂ ମାର୍ହଥ ଶୋଚିତୁମ୍ ।
ରିପୋରଭିମୁଖେ ଶ୍ଲାଘ୍ୟଃ ଶୂରାଣାଂ ବଧ ଇପ୍ସିତ ॥
(ଶ୍ରୀ ଭା ୭ ସ୍କ । ୨ୟ ଅ । ୨୦ ଶ୍ଳୋ ।)

### ଛପ୍‌ପୟ

ଅନୁଶାସନ ଶୁଣି ଅସୁର ଅବନୀ ପେଶି ମିଳି  ବ ଆସୟେ ।
ସବ ବର୍ଣ୍ଣାଶ୍ରମ ଧର୍ମ ଯଜ୍ଞ ଯାଗାଦି ମିଷ୍ଟାୟେ ॥
ଭୟେ ଦେବ ଅତି ଦୁଃଖିତ ଯଜ୍ଞ ଆହୁତି ବିନୁ ପାୟେ ।
ହିରଣ୍ୟକଶିପୁ ଇତି ମାତୃ ବନ୍ଧୁ ସୁତ ପାଶ ବଠାୟେ ॥
ଦେଇ ସାନ୍ତ୍ୱନା ସବନଙ୍କୁ, ଶୋକମଗ୍ନ ଯେ ଅତି ଭୟେ ।
ହୟ ଝୁଟୋ ସଂସାର ସବ, ଉଦାହରଣ ବହୁତକ ଦୟେ ।

ଯେତେବେଳେ ଆମର କେହି ଆତ୍ମୀୟ ସ୍ୱଜନ ମରନ୍ତି, ସେତେବେଳେ ଆମେ କାନ୍ଦିଥାଉଁ, ଦୁଃଖ କରିଥାଉଁ । ଯେତେବେଳେ ଆମର କୌଣସି ଆତ୍ମୀୟର ଆତ୍ମୀୟ ମରନ୍ତି ସେତେବେଳେ ଆମେ ତାକୁ ପ୍ରବୋଧନା ଦେଉଁ, ସଂସାରକୁ ଅନିତ୍ୟ ବୋଲି କହିଥାଉଁ, ଶୋକ କରିବା ବୃଥା ବୋଲି ମଧ୍ୟ କହିଥାଉଁ । ଏହା ସନାତନ ପ୍ରଥା । ସ୍ୱୟଂ କାନ୍ଦିବାବେଳେ କାନ୍ଦିବା ମାତ୍ର ଅନ୍ୟକୁ ପ୍ରବୋଧନା ଦେବାବେଳେ ସେଇ ବେଦନର ନିନ୍ଦା କରିବା । ଅର୍ଜ୍ଜୁନକୁ ବୁଝେଇବା ସମୟରେ ଭଗବାନ କଭଳି ଜ୍ଞାନବାକ୍ୟ କହିଲେ ନାହିଁ—ମାତ୍ର ଶ୍ୱଶୁରଙ୍କ ମୃତ୍ୟୁରେ, ଲୋକ ଦେଖଣାକୁ ହେଉ ପଛକେ, କଭଳି ପୀତାମ୍ବରରେ ଆଖିରୁ ଲୁହ ପୋଛିବାକୁ ଲାଗିଲେ ଏହା ଲୋକାଚାର । କାନ୍ଦିବା ବେଳକୁ କାନ୍ଦିବା ଏବଂ ବୁଝେଇବାବେଳେ ସେହି ଶୋକକୁ ବ୍ୟର୍ଥ ବୋଲି କହିବା ।

ନାରଦ କହୁଛନ୍ତି—"ରାଜନ୍, ହିରଣ୍ୟକଶିପୁ ତା'ର ଶ୍ରେଷ୍ଠ ଭାଇ ହିରଣ୍ୟାକ୍ଷକୁ ଅତ୍ୟନ୍ତ ସ୍ନେହ କରୁଥିଲା । ଯେତେବେଳେ ତାକୁ ବରାହ ରୂପରେ ଭଗବାନ ସଂହାର କଲେ ସେତେବେଳେ ସେ ଦେବତା ଓ ଭଗବାନଙ୍କ ପ୍ରତି ଅତ୍ୟନ୍ତ କ୍ରୋଧାନ୍ୱିତ

Digitized by srujanika@gmail.com

ହେଲା । ସେଇ କ୍ରୋଧରେ ସେ ଅସୁରମାନଙ୍କୁ ଅବନିମଣ୍ଡଳରେ ବୈଦିକ ଧର୍ମର ଅବନତି କରିବା ନିମନ୍ତେ ପ୍ରେରଣ କଲା । ସେମାନେ ଯାଇ ସେହିପରି କଲେ । ଦେବତାମାନେ ବଳହୀନ ହୋଇପଡ଼ିଲେ । ତା'ପରେ ସେ ସ୍ୱୟଂ ବିଷ୍ଣୁ ଭଗବାନଙ୍କପ୍ରତି ପ୍ରତିଶୋଧ ନେବାକୁ ଉଦ୍ୟମ କଲା । ଶକ୍ତି ସଂଚୟ ନକରି, ଅଜର ଅମର ନ ହୋଇ, ଯୁଦ୍ଧରେ ଅଜେୟ ନ ହୋଇ ବିଷ୍ଣୁଙ୍କୁ ପରାଜିତ କରିହେବ ନାହିଁ । ତେଣୁ ସେ ତପସ୍ୟା କରିବାକୁ ସ୍ଥିର କଲା; କାରଣ ତପସ୍ୟା ବିନା ଶକ୍ତି ବଢ଼ିବ ନାହିଁ ।

ତପସ୍ୟାକୁ ଯିବା ପୂର୍ବରୁ, ହିରଣାକ୍ଷ୍ୟ ବଧ ହେତୁ ଦୁଃଖିନୀ ମାତା, ଭ୍ରାତାପତ୍ନୀ ତଥା ତା'ର ପୁତ୍ରମାନଙ୍କୁ ସାନ୍ତ୍ୱନା ଦେବା ଆବଶ୍ୟକ । ଏତେ ବୀର ଏବଂ ପରାକ୍ରମର ମୃତ୍ୟୁରେ ସମସ୍ତ ପରିବାର ଲୋକେ ଅତ୍ୟନ୍ତ ଦୁଃଖରେ ଥିଲେ, କାନ୍ଦୁଥିଲେ । ତେଣୁ ସେ ସମସ୍ତଙ୍କୁ ପାଖକୁ ଡାକିଲା । ଦିତି ଆପଣାର କନିଷ୍ଠ ପୁତ୍ରର ମୃତ୍ୟୁ ଶୋକରେ ସନ୍ତପ୍ତ ଥିଲେ । ହିରଣାକ୍ଷର ପତ୍ନୀ ବିଧବା ହୋଇ ଅତ୍ୟନ୍ତ ଶୋକ ସନ୍ତପ୍ତ ହୋଇଥିଲା । ତା'ର ଶକୁନ, ଶମ୍ବର, ଧୃଷ୍ଟ ଭୂତସନ୍ତାପନ, ବୃକ୍, କାଳନାଭ, ମହାନାଭ ହରିଶ୍ମଶ୍ରୁ, ଉତ୍କଚ ଆଦି ପୁତ୍ର ପିତାର ମୃତ୍ୟୁରେ ଚିନ୍ତିତ ଓ ଉଦାସ ହୋଇ ପଡ଼ିଥିଲେ । ହିରଣ୍ୟକଶିପୁ ସମସ୍ତଙ୍କ ପାଖରେ ବସେଇ ମଧୁର ବଚନରେ ସାନ୍ତ୍ୱନା ଦେବାକୁ ଲାଗିଲା—"ମାତା, ଦେଖ, ହିରଣାକ୍ଷ୍ୟ ତୋର ଶୋକ କଲାଭଳି ପୁତ୍ରଟିଏ ନୁହେ । ସଂସାରରେ ସେ ଯିନା ଶୋଚନୀୟ ଯେ ଶୂକର, କୁକୁର ଭଳି ଜନ୍ମ ହୋଇଛି, ନା ଯଶ ପ୍ରାପ୍ତ ହେଲା, ନା ଧନ ଅର୍ଜନ କଲା ପଶୁପକ୍ଷୀଙ୍କ ଭଳି ଆହାର-ବିହାର କରି ଦିନ କଟେଇ କୁକୁର ଭଳି ମଲା, ସେ ତ ନିଶ୍ଚୟ ଶୋଚନୀୟ, ମାତ୍ର ଯେଉଁମାନେ ସଂସାରକୁ ଆସି ଯଶ ଅର୍ଜନ କଲେ, ଆପଣାର ପ୍ରବଳ ପରାକ୍ରମରେ ଶତ୍ରୁର ହୃଦୟ ଥରେଇ ଦେଲେ, ବରିଷ୍ଠ ଅଭିମାନୀମାନଙ୍କର ହୃଦୟରେ ଭୟ ସଞ୍ଚାର କଲେ ଏବଂ ସମ୍ମୁଖ ଶତ୍ରୁର ସହିତ ଯୁଦ୍ଧକରି ହସିହସି ଶତ୍ରୁକୁ ପୃଷ୍ଠ ପ୍ରଦର୍ଶନ ନକରି ଶସ୍ତ୍ର ପ୍ରହାରରେ ବୀରଗତି ପ୍ରାପ୍ତ ହେଲେ, ସେଭଳି ପୁତ୍ର ତ ସର୍ବଦା ପ୍ରଶଂସନୀୟ । ଜନନୀ ଏଭଳି ପୁତ୍ର ନିମନ୍ତେ ପୁତ୍ରବତୀ ବୋଲାଇଥାଏ । ଏଭଳି ପୁତ୍ର ହେତୁ ତା'ର ଗର୍ଭ ସଫଳ ବୋଲି କୁହାଯାଏ । ତୋର ପୁତ୍ର ସମସ୍ତ ଦେବତା ଏବଂ ଲୋକପାଳମାନଙ୍କୁ ବଶୀଭୂତ କଲା । ଶତ୍ରୁ ଯା'ର ନାମ ଶୁଣି ଭୟରେ ଥରୁଥିଲେ, ତା'ର ଚର୍ଚ୍ଚା ପଡ଼ିଲେ ଦେବତାମାନଙ୍କର ଲୋମଟାଙ୍କୁରି ଉଠୁଥିଲା, ସେଭଳି ଶୂରବୀରର ସମ୍ମୁଖୀନ ସ୍ୱୟଂ ବିଷ୍ଣୁ ମଧ ହୋଇପାରିଲେ ନାହିଁ । ତାଙ୍କୁ ମଧ କପଟ ବେଶ ଧାରଣ କରି ଯୁଦ୍ଧ କରିବାକୁ ପଡ଼ିଲା । ଯଦି ଯୁଦ୍ଧରେ ଦୁର୍ବଳ ଶତ୍ରୁଦ୍ୱାରା ନିହତ ହୋଇଥାନ୍ତା, ତାହେଲେ ବି ଚିନ୍ତା କରିଥାନ୍ତି । ମାତ୍ର ପ୍ରବଳ ଶକ୍ତିଶାଳୀ ଶତ୍ରୁ ହାତରେ ମରିବାରେ ମଧ ପ୍ରଶଂସା ରହିଛି । ତେଣୁ ତୋ ପକ୍ଷରେ ପୁତ୍ର ନିମନ୍ତେ ଶୋକ କରିବା ଆଦୌ ଉଚିତ ନୁହେଁ ।

ଦିତି ଏହାଶୁଣି ଲୁହପୋଛି କହିଲେ—'ପୁଅ, ତୁ ସତ କହୁଛୁ । ମୋର ପୁତ୍ର ସଂସାରରେ ସର୍ବଶ୍ରେଷ୍ଠ ବଳୀ ଥିଲା । ତା'ର ସମ୍ମୁଖୀନ ହେବା କାହା ପକ୍ଷରେ ମଧ

Digitized by srujanika@gmail.com

ସମ୍ଭବ ନୁହ । କିନ୍ତୁ କ'ଣ କରିବ ? ମୁଁ ଯେତେବେଳେ ଆଗରେ ଏଇ ବିଧବା ବୋହୂକୁ ଦେଖୁଛି, ସେତେବେଳେ ମୋର ହୃଦୟ ଫାଟି ଯାଉଛି । ତା'ର ଏଇ ଛୋଟ ଛୋଟ ପିଲମାନେ ପିତୃହୀନ ହୋଇ ବିଳାପ କରୁଛନ୍ତି । ମୋର ସିନା ମୃତ୍ୟୁର ବୟସ ହୋଇ-ଥିଲା ? ଯେଉଁ ମାତା ଆଗରେ ଯୁବାବସ୍ଥାରେ ତା'ର ପୁତ୍ର ମରିଯାଏ ତେବେ ତା'ଠାରୁ ଅଭାଗିନୀ ଏ ସଂସାରରେ ଅଉ କିଏ ଅଛି ? ଯେଉଁ ଶାଶୁ ଆଗରେ ତା'ର ଯୁବତୀ ବୋହୂ ମଥାରୁ ସିନ୍ଦୂର ପୋଛି ବିଧବା ହୋଇଯାଏ; ସେହି ବୋହୂକୁ ଦେଖି କେଉଁ ଶାଶୁ ଧୈର୍ଯ୍ୟଧରି ପାରିବ ? ମୋର କ'ଣ ଅଛି ପୁଅ ? ମୁଁ ତ ନଈକୂଳର ଲତାପରି, କେତେବେଳେ କୂଳ ଧୋଇ ହୋଇଯିବ ଓ ମୁଁ ମଧ୍ୟ ଯିବି । ମୋର ତ ଏଇ ପିଲ-ମାନଙ୍କର, ସରଳ ବୋହୂଟିର ଚିନ୍ତା ଅଛି । ଏମାନଙ୍କୁ ବୁଝାଇ ଦେ !"

ଏହାଶୁଣି ହିରଣ୍ୟକଶିପୁ ଆପଣାର କନିଷ୍ଠ ଭାଇର ପତ୍ନୀକୁ, ଯେ ତା' ଆଗରେ ଓଢ଼ଣାଟାଣି କ୍ରନ୍ଦନ କରୁଥିଲା ଏବଂ ଯେ ତା'ର ପୁତ୍ରବଧୂ ଭଳି ଥିଲା, ସଂବୋଧିତ କରି କହିଲା—"ବୋହୂ, ତମେ ଏତେ ବୁଦ୍ଧିମତୀ ହୋଇ ମଧ୍ୟ ଛୁଆମାନଙ୍କ ପରି କ୍ରନ୍ଦନ କରୁଛ । ଏହା ଉଚିତ ନୁହେ । ଦେଖ ସେଇ ସମୟରେ ଚିନ୍ତା କରିବା କଥା, ଦୁଃଖ କରିବା କଥା, ଯେତେବେଳେ ତମର ପତି କୁଆଡ଼େ ଗୁଲି ଯାଇଛି । ଆରେ ପାଗଳୀ, ସେ ତ ଏଇଠାରେ ରହିଛି । ଯା'ର କୀର୍ତ୍ତି ସାରା ସଂସାରରେ ବ୍ୟାପ୍ତ ସେ ମରି ମଧ୍ୟ ଜୀବିତ ହୋଇ ରହିଅଛି ।

ବୋହୂ ଓଢ଼ଣା ଭିତରୁ କାନ୍ଦିକାନ୍ଦି କହିଲା—"ତାଙ୍କୁ ତ ମୁଁ ଦେଖି ପାରୁନାହିଁ ! ତାଙ୍କ ବିନା ମୁଁ କେଉଁପରି ବଞ୍ଚି ରହିବି !"

ଏହା ଶୁଣି ହିରଣ୍ୟକଶିପୁ ଅତ୍ୟନ୍ତ ସ୍ନେହରେ ବାଷ୍ପ ଗଦଗଦ କଣ୍ଠରେ କହିବା ଆରମ୍ଭ କଲା ! ଭାଇର ମୃତ୍ୟୁରେ ତା'ର ହୃଦୟ ମଧ୍ୟ ବ୍ୟାକୁଳ ହେଉଥିଲା । ମାତ୍ର ଆପଣାକୁ ଧୈର୍ଯ୍ୟବାନ ସିଦ୍ଧ କରି ସେ କହିଲା—"ଦେଖୁନ, ତମ ଆଗରେ ଏଇ ଶକୁନି, ଶମ୍ବର, ଧୃଷ୍ଟ, ଭୂତସନ୍ତାପନ, ବୃକ୍ ଆଦି ସବୁ ସନ୍ତାନଗଣ ରହିଛନ୍ତି, ସମସ୍ତେ ତା'ର ତ ପ୍ରତିରୂପ ? ପିତା ହିଁ ସ୍ତ୍ରୀର ଉଦରରୁ ପୁତ୍ର ରୂପରେ ପୃଥିବୀରେ ଉତ୍ପନ୍ନ ହୋଇଥାଏ । ତେଣୁ ପୁତ୍ରବତୀ ସ୍ତ୍ରୀକୁ ଜାୟା କୁହାଯାଏ । ସେ ଆପଣାର ପତିକୁ ହିଁ ଉତ୍ପନ୍ନ କରେ । ତା'ର ତେଜକୁ ଉଦରରେ ଧାରଣ କରେ ।"

ବାକି ସମ୍ବନ୍ଧ କଥା । ଏହି ସାଂସାରିକ ସମ୍ବନ୍ଧ ତ କ୍ଷଣିକ ମାତ୍ର । ମାର୍ଗରେ ଚ୍ଲୁଲିଛୁଁ । ଯାଉଁ ଯାଉଁ ଥକି ଗଲେ, କୋଉଠି ଝରଣାଟିଏ ଦେଖିଲେ, ପୁଷ୍କରିଣୀ ତଟ ମିଳିଲା ବା ବୃକ୍ଷଚ୍ଛାୟା ଦେଖାଗଲା, ବସିଗଲେ । କେତେଜଣ ପୂର୍ବରୁ ଆସିଲେ, କେତେ-ଜଣ ଯାତ୍ରୀ ପଶ୍ଚିମରୁ, ସମସ୍ତେ ମିଳିମିଶି ଏକାଠି ରହିଲେ । ବିଶ୍ରାମ କଲେ । ମିଠାମିଠା ସ୍ନେହ କଥା ହେଲ । ମୁହୂର୍ତ୍ତିକ ଭିତରେ ସମ୍ବନ୍ଧ ସ୍ଥାପିତ ହୋଇଗଲା, ଯେତେବେଳେ

Digitized by srujanika@gmail.com

ଦ୍ୱିପ୍ରହର ଚାଲିଗଲା, ଖିଆ କିଛି କମିଗଲା, କିଏ ପୂର୍ବକୁ ଚାଲିଗଲା, କିଏ ପଶ୍ଚିମକୁ ଗଲା । ସମସ୍ତେ ଅଲଗା ହୋଇଗଲେ । ବିଚ୍ଛେଦ ଆସିଲା । ଏହିଭଳି ଏ ସଂସାର, ଏଠାରେ ସମ୍ପର୍କ ହିଁ ବାଟୋଇର ସମ୍ପର୍କ । ଭାଗ୍ୟବଶତଃ ଗୃହସ୍ଥରୂପୀ ଗୁମ୍ଫାରେ ସମସ୍ତେ ମିଳିତ ହୁଅନ୍ତି । ପରସ୍ପର ମଧ୍ୟରେ ସ୍ନେହ ସ୍ଥାପନ ହୁଏ । ସମୟ ଆସିଲେ ସମସ୍ତେ ପୃଥକ୍ ପୃଥକ୍ ହୋଇ ଯାଆନ୍ତି ।''

ଏହା ଶୁଣି ଦିତି କହିଲେ—''ହଁ, ତୁ ଯଥାର୍ଥ କହୁଛୁ; ମାତ୍ର ଆପଣା ଲୋକର ମୃତ୍ୟୁରେ ଦୁଃଖ ଅବଶ୍ୟ ହେବ ।''

ହିରଣ୍ୟକଶିପୁ କଥାଟି ଉପରେ ଗୁରୁତ୍ୱ ଦେଇ କହିଲା—''ମରିବା ବାଁଚିବା, ଏକ ଭ୍ରମ ମାତ୍ର । ଯେତେବେଳେ ଜୀବ ଶରୀରରୁ ପୃଥକ୍ ହୋଇଯାଏ, ଶରୀର ମଧ୍ୟରେ ସୀମିତ ପଞ୍ଚଭୂତ ମହାଭୂତ ସହିତ ମିଳିତ ହୋଇଯାଆନ୍ତି । ଶରୀର ମରେ ନାହିଁ, ଏହିଠାରେ ପଡ଼ିରହେ । ତା'ପରେ ଆତ୍ମା କଥା । ଆତ୍ମା ନା ଜନ୍ମଗ୍ରହଣ କରେ, ନା ତା'ର ମୃତ୍ୟୁ ଅଛି । ସେ ତ ନିତ୍ୟ ଅବିନାଶୀ, ଶୁଦ୍ଧ ବୁଦ୍ଧ, ସର୍ବଗତ ତଥା ସର୍ବଜ୍ଞ । ତା'ର ଦେହ, ଇନ୍ଦ୍ରିୟ ମନ ଆଦି କାହାର ସାଙ୍ଗରେ କୌଣସି ସମ୍ବନ୍ଧ ନାହିଁ । ଏଇ ସବୁଠାରୁ ସେ ସର୍ବଥା ପୃଥକ୍ ।''

ଦିତି କହିଲେ—''ତା'ହେଲେ ସେ ପୁଣି ଦେହ ଧାରଣ କାହିଁକି କରେ ?''

ହିରଣ୍ୟକଶିପୁ କହିଲା—''ମା' ! ବାସ୍ତବିକ ଆତ୍ମା ନା ଦେହ ଧାରଣ କରେ ନା ତ୍ୟାଗକରେ । ସେ ତା'ର ଅବିଦ୍ୟା ଶକ୍ତିଦ୍ୱାରା ହିଁ ସୁଖ-ଦୁଃଖାଦି ବିଭିନ୍ନ ଗୁଣ-ମାନଙ୍କ ସ୍ୱୀକାର କରିବା ଭଳି ଦେଖାଯାଏ ଏବଂ ଲିଙ୍ଗ ଶରୀରରେ ତା'ର ଆଶ୍ରୟ ମିଳିଥାଏ ।''

ଦିତି କହିଲେ—''ଯେତେବେଳେ ଏ ମାୟିକ ଗୁଣ ଆତ୍ମାରେ ନାହିଁ, ତା'ହେଲେ ସେ ଏହି ଗୁଣମାନଙ୍କୁ ଆପଣା ମଧ୍ୟରେ ଧାରଣ କରି କାହିଁକି ନାନା କ୍ରିୟା କରୁଅଛି ! କାହିଁକି ଭ୍ରାନ୍ତିବଶ ହେଉଛି !''

ଏହା ଶୁଣି ହିରଣ୍ୟକଶିପୁ କହିଲା—''କଲ୍ୟାଣି, ତମେ ନିଜେ ବିଚାର କର । ଆତ୍ମା ବାସ୍ତବରେ ନିର୍ବିକାର; ମାତ୍ର ଅବିଦ୍ୟା ଜନ୍ୟ ଏହି ମାୟିକ ଗୁଣମାନଙ୍କ କାରଣରୁ ମଧ୍ୟ ଭ୍ରମିତ ହେଲେ, ଆତ୍ମା ମଧ୍ୟ ଭ୍ରମିତ ହେଲା ଭଳି ଜଣାପଡ଼େ । ବସ୍ତୁତଃ ସେ ଦେହାଦି ଲିଙ୍ଗରହିତ ହୋଇଥିବା ସତ୍ତ୍ୱେ ସେମାନଙ୍କ ସହିତ ଯୁକ୍ତବତ୍ ଜଣାଯାଏ ।''

ଦିତି କହିଲେ—''ଏହା କିଭଳି ସମ୍ଭବ ?''

ହିରଣ୍ୟକଶିପୁ କହିଲା—'ଦେଖ ମା', ଆମେ କୌଣସି ନୌକାରେ ବସି ନଦୀର ପ୍ରବଳଧାରାରେ ଯାଉଅଛୁଁ । ନୌକା ଅତ୍ୟନ୍ତ ବେଗରେ ଯାଉଅଛି । ସେତେ-ବେଳେ ଆମର ମନେହୁଏ, ଯେପରି ତଟସ୍ଥ ବୃକ୍ଷମାନେ ମଧ୍ୟ ଆମ ସାଙ୍ଗରେ ଯାଉଛନ୍ତି ।

Digitized by srujanika@gmail.com

ଏକଥା ବେଗବାନ ଯାନରେ ବସିଥିଲେ ହଣେ । ବାସ୍ତବରେ ବୃକ୍ଷ ସ୍ଥିରହୋଇ ରହିଥାନ୍ତି, ସେମାନେ ଚାଲୁ ନ ଥାନ୍ତି, ନୌକାର ଚାଲିବା ହେତୁ ଭ୍ରମରେ ସେମାନଙ୍କ ମଧ୍ୟରେ ଚାଲିବାର ପ୍ରତୀତି ଆସେ । ଛୋଟ ଛୋଟ ପିଲମାନେ ପାଟିଗୁଣ୍ଡ କରି ବୁଲୁ-ଆଥାନ୍ତି, ଭ୍ରମରୀ ନୃତ୍ୟ କରନ୍ତି । ନୃତ୍ୟର ବେଗ ହେତୁ ସେମାନଙ୍କର ମନେ ହେଉଥାଏ ଯେପରି ଏହି ସମସ୍ତ ପୃଥିବୀ ଓ ବୃକ୍ଷ ଆଦି ଘୂରୁଛି ଏବଂ ଭ୍ରମବଶତଃ ବାଳକମାନେ କହନ୍ତି ଯେ ଆମ ସହିତ ପୃଥିବୀ ମଧ୍ୟ ଘୂରୁଅଛି । ଏ ସବୁ ଆତ୍ମବିପର୍ଯ୍ୟୟର କାରଣରୁ ହୋଇଥାଏ ।

ଦିତି ପଚାରିଲେ—"ଆତ୍ମ ବିପର୍ଯ୍ୟୟ କ'ଣ ?"

ହିରଣ୍ୟକଶିପୁ କହିଲ—ଅଣରୀରୀ ଆତ୍ମାରେ ଶରୀରର ଭାବନା ହେବା, ଅସତ୍ତ୍ୱକୁ ସତ୍ ବୋଲି ମନେ କରିବା । ଅନାତ୍ମା ମଧ୍ୟରେ ଆତ୍ମାର ଆରୋପ କରିବା । ଏସବୁକୁ ଆତ୍ମ ବିପର୍ଯ୍ୟୟ କୁହାଯାଏ । କେବଳ ମାତ୍ର ଏଇ ଆତ୍ମବିପର୍ଯ୍ୟୟ ହିଁ ଦୁଃଖ, ଶୋକ ଏବଂ ଚିନ୍ତାର ହେତୁ ଅଟେ । ତା'ରି କାରଣରୁ ଏ ପ୍ରିୟ, ସେ ଅପ୍ରିୟ । ଏହା ସୁଖ ତାହା ଦୁଃଖ । ଏହା ଅନୁକୂଳ ତାହା ପ୍ରତିକୂଳ । ଏହା ସଂଯୋଗ ତାହା ବିଯୋଗ । ସେହିଭଳି ସବୁ ପ୍ରକାର ଦ୍ୱନ୍ଦ୍ୱର ଅନୁଭୂତି ଆସିଥାଏ । ଏହି ଆତ୍ମବିପର୍ଯ୍ୟୟ ହେତୁ କର୍ମ ହୁଏ ଏବଂ କର୍ମଦ୍ୱାରା ଜନ୍ମ ମୃତ୍ୟୁ ହୋଇଥାଏ । ନାନାପ୍ରକାର ଶୋକ, ମୋହ, ଦ୍ୱେଷ, ଭୟ, ଉଦ୍ବେଗ, ଆଧି, ବ୍ୟାଧି, ଅବିବେକ, ଆତ୍ମବିସ୍ମୃତି ତଥା ଅନେକ ପ୍ରକାର ଚିନ୍ତା ଗ୍ରାସ କରେ । ଏହି ବିଷୟରେ ମୁଁ ତୁମମାନଙ୍କୁ ଏକ ଅତି ପ୍ରାଚୀନ ଶିକ୍ଷାପ୍ରଦ କଥା ଶୁଣାଇବି । ଏହା ତୁମେ ଅତ୍ୟନ୍ତ ସାବଧାନ ହୋଇ ଶ୍ରବଣ କର । ଏହା ଶୁଣିଲେ ଏ ବିଷୟ ଆପେ ସ୍ପଷ୍ଟ ହୋଇଯିବ ।"

ନାରଦ କହୁଛନ୍ତି—'ଧର୍ମରାଜ ! ଏହା କହି ହିରଣ୍ୟକଶିପୁ, ମାତା, ଭାତୃପତ୍ନୀ ତଥା ଭାତୃଷ୍ପୁତ୍ରମାନଙ୍କୁ ଏକ ଅତ୍ୟନ୍ତ ଶିକ୍ଷାପ୍ରଦ ସୁନ୍ଦର ଦୃଷ୍ଟାନ୍ତ ଶୁଣାଇବା ଆରମ୍ଭ କଲି । ତାହା ଆପଣମାନେ ମଧ୍ୟ ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ ।"

## ଛପ୍ପୟ

ଦେଖୋ ମାତା କୌନ ବନ୍ଧୁ କା କୋ ସମ୍ବନ୍ଧୀ ।
କରେଁ ମୃତକ ହିତଶୋକ ପ୍ରଥା ଜଗ କୀ ୟହ ଅନ୍ଧୀ ॥
ନଦୀ ଧାର ତୃନ ବହେଁ ପରସ୍ପର ମହଁ ମିଲି ଜାବେଁ ।
ସଙ୍ଗସଙ୍ଗ କଛୁ ଚଲେ ଫେର ଇତ ଉତ ବିଲଗାବେଁ ॥
ଆତ୍ମା ଅବିନାଶୀ ଅମର, ସଦା ଏକ ରସ ସର୍ବଗତ ।
ମାୟିକ ଗୁଣ ସମ୍ବନ୍ଧ ତେଁ, ଭ୍ରମବଶ ଦୀଖେଁ ଭ୍ରାନ୍ତବତ ॥

---

Digitized by srujanika@gmail.com

# ଯମରାଜ ଓ ପ୍ରେତବନ୍ଧୁ ସମ୍ବାଦ

ଅତ୍ରାପ୍ୟୁଦାହରନ୍ତୀମମିତିହାସଂ ପୁରାତନମ୍ ।
ଯମସ୍ୟ ପ୍ରେତବନ୍ଧୂନାଂ ସମ୍ବାଦଂ ତଂ ନିବୋଧତ ॥
( ଶ୍ରୀ ଭା ୭ ସ୍କ ॥ ୨ୟ ଅ ॥ ୨୭ ଶ୍ଳୋକ )

## ଛପ୍ପୟ

ନୃପ ସୁୟଜ୍ଞ ଇକ ମରୟୋ ଯୁଦ୍ଧ ମହଁ ଶତ୍ରୁ ହାଥ ତେଁ ।
ଦୁଃଖିତହୁ ପରିଜନ ଭୟେ ଭୂପ କୀ ମୃତ୍ୟୁ ବାତ ତେଁ ॥
ମୃତକ ଦେହକୂଁ ଘେରି ବନ୍ଧୁ ରୋବେଁ ଡକରାବେଁ ।
ଛାତି ସବଇଁ ଧୁନୈଁ ଦୀନ ହ୍ୱୈକେ ବିଲଲାବେଁ ॥
ରାନିନ ରୋବତ ଦେଖି କେ, ଯମ ବାଲ ବନି କେଁ ଗୟେ ।
ବିବିଧ ଭାଁତି କେ ଜ୍ଞାନ ତେଁ, ସବକୂଁ ସମଝାବତ ଭୟେ ॥

ଭଗବାନଙ୍କର ମାୟା କେଡ଼େ ପ୍ରବଳ ନୁହେଁ ! ମନୁଷ୍ୟ ନିତ୍ୟ ଦେଖୁଛୁ, ସଂସାରରେ କେତେ ଲୋକ ନିତ୍ୟ ଜନ୍ମ ହେଉଛନ୍ତି, କେତେ ମରୁଛନ୍ତି । ଆମ ସମ୍ମୁଖରେ କେତେ ଜନ୍ମ ହେଲେ, କେତେକ ଜନ୍ମ ହେବା ମାତ୍ରକେ ମରିଗଲେ, କେତେକ ପାଞ୍ଚ ଦଶବର୍ଷ ହୋଇ ମଲେ, କେତେକ ଯୁବାବସ୍ଥାରେ ମଲେ, କେତେକ ପ୍ରୌଢ଼ାବସ୍ଥାରେ ଏବଂ କେହି କେହି ବୃଦ୍ଧ ହୋଇ ମଲେ । ଆମର କେତେ ସାଥୀ ମରିଗଲେ । ନିଜ ଘରେ ପିତା, କକେଇ, ଦଦେଇ, ଗୋଷ୍ଠି ପରିବାରର ଅନ୍ୟମାନେ ମଲେ । ଆମମାନଙ୍କୁ ମଧ୍ୟ ଦିନେ ନା ଦିନେ ଅବଶ୍ୟ ମରିବାକୁ ହେବ । ତଥାପି ପ୍ରିୟଜନଙ୍କ ମୃତ୍ୟୁରେ ଲୋକେ କେତେ ଦୁଃଖ କରନ୍ତି ନାହିଁ । କେତେ ଲୋକ କନ୍ଦାକଟା କରନ୍ତି । ଏସବୁ ଭଗବାନଙ୍କର ମାୟାଚକ୍ର । ଜ୍ଞାନୀ ପୁରୁଷଙ୍କର ଦୃଷ୍ଟିରେ ଜନ୍ମ ମଧ୍ୟ ଖେଳଟିଏ, ମୃତ୍ୟୁ ମଧ୍ୟ ସେହିପରି ଏକ ଖେଳ । ଜୀବାତ୍ମା ତ ମରେ ନାହିଁ । ଶରୀରର ରୂପାନ୍ତର ହୋଇଥାଏ । ଏଥିନିମନ୍ତେ ଶୋକ କରି କୌଣସି ଲାଭ ନାହିଁ; କାରଣ ମରିଥିବା ଲୋକ ଫେରିବ ନାହିଁ । ଯମ ଯାହାକୁ ଉଠେଇ ନେଲା, ସେ ଚାଲିଗଲା !

Digitized by srujanika@gmail.com

ନାରଦ ମହାରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି—"ରାଜନ୍, ହିରଣ୍ୟକଶିପୁ ଆପଣାର ମାତା, ଭାଇର ପତ୍ନୀ ଏବଂ ପୁତ୍ରମାନଙ୍କୁ ବୁଝେଇ କହୁଛନ୍ତି—ଦେଖ, ତୁମେମାନେ ଧ୍ୟାନପୂର୍ବକ ଶୁଣ, ମୁଁ ତୁମକୁ ଏକ ଦୃଷ୍ଟାନ୍ତ ଶୁଣାଉଛି ।"

ପ୍ରାଚୀନ କାଳରେ ଉଶୀନର ଦେଶରେ ଜଣେ ଅତ୍ୟନ୍ତ ଧର୍ମାତ୍ମା ଶୂରବୀର ରାଜା ଥିଲେ । ତାଙ୍କର ନାମ ଥିଲା ସୁଯଜ୍ଞ । ସୁଯଜ୍ଞ ଯଥା ନାମ ତଥା ଗୁଣର ଥିଲେ । ସେ ବଡ଼ ବଡ଼ ଯାଗ ଯଜ୍ଞ କରିଥିଲେ । ସେ ଆପଣାର ପତ୍ନୀମାନଙ୍କୁ ଦାନ ସମ୍ମାନରେ ସର୍ବଦା ସନ୍ତୁଷ୍ଟ ରଖୁଥିଲେ । ଆପଣାର ବନ୍ଧୁବାନ୍ଧବଙ୍କ ସହିତ ମଧ୍ୟ ସ୍ନେହ ସମ୍ପର୍କ ରଖୁଥିଲେ । ସମସ୍ତ ପ୍ରଜା ତାଙ୍କୁ ପିତାଭଳି ମାନୁଥିଲେ । ସେ ମଧ୍ୟ କୌଣସି ପକ୍ଷପାତ ଓ ପାତର ଅନ୍ତର ନ ରଖି ସେମାନଙ୍କୁ ପୁତ୍ରବତ୍ ପାଳନ କରୁଥିଲେ । ଏହି ସମୟର କଥା, ଶତ୍ରୁମାନେ ମିଳିତ ହୋଇ ତାଙ୍କ ଉପରେ ଆକ୍ରମଣ କଲେ । ରାଜା ଶୂରବୀର ଖୁବ୍ ଯୋଦ୍ଧା ଥିଲେ । ତାଙ୍କର ଆପଣାର ବାହୁବଳ ଉପରେ ବିଶ୍ୱାସ ଥିଲା । ତେଣୁ ସେ ଶତ୍ରୁମାନଙ୍କ ସହିତ ଯୁଦ୍ଧ କଲେ । ଅନେକ ଶତ୍ରୁ ତାଙ୍କୁ ଘେରିଯାଇ ହତ୍ୟା କଲେ ।

ରାଜାଙ୍କର ରାଣୀମାନେ ଯେତେବେଳେ ପ୍ରାଣନାଥଙ୍କର ପରଲୋକ ପ୍ରୟାଣର ଦୁଃଖଦ ସମାଚାର ଶୁଣିଲେ, ସେତେବେଳେ ଛାତିପିଟି ରୋଦନ କରି ବିନା ସବାରିରେ ରଣଭୂମି ଅଭିମୁଖେ ଦୌଡ଼ିବାକୁ ଲାଗିଲେ । ରାଜାଙ୍କର ବନ୍ଧୁବାନ୍ଧବ, ପୁତ୍ର, ମନ୍ତ୍ରୀ ତଥା ପୁରୋହିତମାନେ ଶୋକ ସନ୍ତପ୍ତ ହୋଇ ଅଶ୍ରୁପାତପୂର୍ବକ ରାଜାଙ୍କୁ ଦେଖିବାକୁ ଆସିଲେ । ରାଣୀମାନଙ୍କୁ ଏବଂ ରାଜପରିବାରର ଲୋକମାନଙ୍କୁ ଦେଖି ଧର୍ମତଃ ଶତ୍ରୁସେନା ସେଠାରୁ ଚାଲିଗଲେ ଏବଂ ରାଜ ପରିବାର ପାଇଁ ସବୁ ସୁବିଧା କରିଦେଲେ । ରାଣୀମାନେ ଯେତେବେଳେ ଆପଣା ପ୍ରାଣେଶ୍ୱରଙ୍କୁ ରକ୍ତାକ୍ତ ଅବସ୍ଥାରେ ଭୂମି ଉପରେ ପଡ଼ିଥିବା ଦେଖିଲେ, ସେମାନଙ୍କର ଦୁଃଖର ସୀମା ରହିଲା ନାହିଁ । ମହାରାଜ ଯେଉଁ ରତ୍ନ ଜଡ଼ିତ କବଚ ପିନ୍ଧିଥିଲେ, ତାହା ଶର ତଥା ଅନ୍ୟାନ୍ୟ ଅସ୍ତ୍ର ଶସ୍ତ୍ରାଦିର ପ୍ରହାରରେ ଛିନ୍ନଭିନ୍ନ ହୋଇ ଯାଇଥିଲା । ତାଙ୍କର ବସ୍ତ୍ର ଅସ୍ତବ୍ୟସ୍ତ ହୋଇ ଯାଇଥିଲା । ମଣି, ମୁକ୍ତାର ମାଳା ଛିନ୍ନ ହୋଇ ଏଣେ ତେଣେ ପଡ଼ିଥିଲା । ହୃଦୟକୁ ବହୁ ବାଣ ବିଦ୍ଧ କରିଥିଲା ଏବଂ କ୍ଷତ ସ୍ଥାନରୁ ରକ୍ତସ୍ରାବ ହେଉଥିଲା । ମସ୍ତକର ସୁନ୍ଦର ଶୋଭାମୟମାନ କେଶରାଶି ଇତସ୍ତତଃ ହୋଇଥିଲା । ନେତ୍ରର ଜ୍ୟୋତି ନଷ୍ଟ ହୋଇ ଯାଇଥିଲା । କ୍ରୋଧ ଓ ଆକ୍ରୋଶ ହେତୁ ସେ ଅଧର ଚାପି ରହିଥିଲେ । ତାଙ୍କର ମୁଖାରବିନ୍ଦ ମ୍ଳାନ ହୋଇ ଧୂଳି ଧୂସରିତ ହୋଇଥିଲା । କେଉଁଠାରେ ତୂଣୀର ପଡ଼ିଥିଲା, କେଉଁଠାରେ ଧନୁ ପଡ଼ି ରହିଥିଲା । ତାଙ୍କର ପ୍ରାଣପକ୍ଷୀ ଶରୀର ତ୍ୟାଗକରି ପରଲୋକ ପ୍ରୟାଣ କରିଥିଲା ।

ରାଜାଙ୍କୁ ଏଭଳି ଦଶାରେ ଦେଖି ତାଙ୍କର ସବୁ ରାଣୀ ସେଭଳି ଚିତ୍କାର କଲେ, ଯେପରି ଯୂଥପତିଙ୍କର ମୃତ୍ୟୁରେ ସମସ୍ତ ହସ୍ତିନୀ ଚିତ୍କାର କରିଥାନ୍ତି । ସେଇ ସ୍ତ୍ରୀମାନେ ସତେ ଯେପରି ସମସ୍ତ ଲଜ୍ଜା ପରିତ୍ୟାଗ କରି ଦେଇଥିଲେ । ଯେଉଁମାନଙ୍କୁ

Digitized by srujanika@gmail.com

ଯେବେ ସୂର୍ଯ୍ୟଙ୍କ ପକ୍ଷରେ ଦେଖିବା ମଧ୍ୟ ସମ୍ଭବ ନ ଥିଲା, ସେମାନଙ୍କୁ ଆଜି ସାଧାରଣ ସୈନିକମାନେ ମଧ୍ୟ ଦେଖୁଥିଲେ । ସେମାନଙ୍କ ଆଖିରୁ ଶ୍ରାବଣ ମାସର ବର୍ଷାଧାରା ସଦୃଶ ଅଶ୍ରୁଧାର ବହୁଥିଲା । ସେମାନେ ମୃତ ମହାରାଜାଙ୍କର ଚରଣ-ଯୁଗଳକୁ ବକ୍ଷ-ସ୍ଥଳରେ ଧାରଣକରି କ୍ରନ୍ଦନ କରୁଥିଲେ—"ହେ ନାଥ, ମୃତ୍ୟୁ ବିନା ଆମର ମରଣ ହୋଇଛି । ହେ ପ୍ରାଣନାଥ ! ଆମ ସମସ୍ତଙ୍କୁ ପରିତ୍ୟାଗ କରି ଆପଣ ଏକାକୀ କୁଆଡ଼େ ଗଲେ ?"

ଅତ୍ୟନ୍ତ ଶୋକ ହେତୁ ଅଶ୍ରୁଧାରା ଗଣ୍ଡଦେଶରୁ ବହି ଆସି ବକ୍ଷସ୍ଥଳରେ ପଡ଼ି କୁଚକୁଙ୍କୁମର ଅରୁଣିମା ନେଇ ପ୍ରିୟତମଙ୍କର ପାଦପଦ୍ମରେ ପତିତ ହେବାବେଳେ ମନେ ହେଉଥିଲା, ଯେତେ ଯେପରି ସେମାନେ ଆପଣା ହୃଦୟର ସ୍ନିଗ୍ଧ ଅନୁରାଗରେ ପତି ଦେବତାଙ୍କର ପଦ ପ୍ରକ୍ଷାଳନ କରୁଥିଲେ ।

ସେମାନେ କ୍ରନ୍ଦନ କରୁଥିଲେ । ଶୋକାକୁଳ ହେଉଥିଲେ । ମୃତ ପତିଙ୍କୁ ଆଲିଙ୍ଗନ କରୁଥିଲେ । ସେମାନଙ୍କର ଉତ୍ତରୀୟ ବସ୍ତ୍ର ଖସି ଯାଉଥିଲା ଓ କେଶପାଶ ଅସ୍ତବ୍ୟସ୍ତ ହୋଇ ଯାଇଥିଲା । ବେଣୀରେ ଗ୍ରଥିତ ମାଳତୀ ପୁଷ୍ପର ମାଳ ବିକ୍ଷିପ୍ତ ହୋଇଥିଲା ଏବଂ ଆଖିର ଅଞ୍ଜନ ଧୋଇ ହୋଇଯାଇଥିଲା । ସମ୍ପୂର୍ଣ୍ଣ ଶରୀର ରକ୍ତରେ ଆର୍ଦ୍ର ହୋଇ ଯାଇଥିଲା । ସେମାନେ କୁରରୀ ପକ୍ଷିଣୀ ସଦୃଶ କରୁଣ କ୍ରନ୍ଦନ କରି କରି କହୁଥିଲେ—"ହେ ନିଷ୍ଠୁର ବିଧାତା, ତୁ କ'ଣ କଲୁ ? ଆମ ସହିତ ଏଭଳି ଅନ୍ୟାୟ କିପରି କଲୁ ? ଆମେ ତୋର କି କ୍ଷତିସାଧନ କରିଥିଲୁ, ଯା'ର ପ୍ରତିଶୋଧ ନେଲୁ ? ଅସମୟରେ ତୁ ଆମକୁ ଆମର ପ୍ରାଣେଶ୍ୱରଙ୍କଠାରୁ ପୃଥକ୍ କଲୁ । ଏ ହେ ନିର୍ଦ୍ଦୟୀ ଦୈବ, ତୋର ଦୟା ମଧ୍ୟ ହେଲା ନାହିଁ । ଅବଳାମାନଙ୍କ ଉପରେ ବଳ ପ୍ରଦର୍ଶନ କରିବାକୁ ଲଜ୍ଜା ମଧ୍ୟ ଅନୁଭବ କଲୁ ନାହିଁ । ଆମେ ବର୍ତ୍ତମାନ କା'ର ଆଶ୍ରୟ କରି ରହିବୁ ! କା'ର ପଦ୍ମମୁଖ ଦେଖି ଜୀବନ ଧାରଣ କରିବୁ !"

ବିଧାତାଙ୍କୁ ଏଭଳି ଗାଳି ଦେଇ ପତିଙ୍କୁ ସମ୍ବୋଧନ କରି କହିବାକୁ ଲାଗିଲେ—"ସ୍ୱାମୀନ୍ ! ହେ ପ୍ରାଣନାଥ, ହେ ଜୀବନ ସର୍ବସ୍ୱ, ଆପଣ ତ ଆପଣଙ୍କର ପ୍ରଜାଙ୍କୁ ପୁତ୍ରବତ୍ ପାଳନ କରୁଥିଲେ । ଆପଣ ତ ସମସ୍ତଙ୍କର ବୃତ୍ତିଦାତା ଓ ତ୍ରାତା ଥିଲେ । ଭୟଭୀତ ହୋଇଥିବା ଆମମାନଙ୍କୁ କାହିଁକି ଭୟରୁ ତ୍ରାଣ କରୁନାହାନ୍ତି ? ଆମ ଦୁଃଖିନୀମାନଙ୍କର ସମସ୍ତଙ୍କର ସୁଖସ୍ପର୍ଶୀ କରଧାରଣ କରି କାହିଁକି ସାନ୍ତ୍ୱନା ବାଣୀଦ୍ୱାରା ଧୈର୍ଯ୍ୟ ପ୍ରଦାନ କରୁନାହାନ୍ତି ? ଆପଣ ଆମପରି ଅବଳାମାନଙ୍କୁ ଅନାଥ କରି ଏକାକୀ କେଉଁପରି ପରଲୋକ ଗମନ କଲେ ? ଆପଣଙ୍କ ଭଳି ଅତ୍ୟନ୍ତ କୃତଜ୍ଞ ପ୍ରିୟତମ ବିନା ଆମେମାନେ କେଉଁପରି ଜୀବନ ଧାରଣ କରିବୁ ? କା'ର ସ୍ନେହ ପରିପୂର୍ଣ୍ଣ ମଧୁମୟ ମଞ୍ଜୁଳ ମୁଖ ଦେଖି ପ୍ରାଣ ଧାରଣ କରିବୁ ? ହେ ପୃଥିବୀ ପତି, ଆମ ପତ୍ନୀମାନଙ୍କ ପ୍ରତି ବିମୁଖ ହୋଇ ପୃଥିବୀକୁ ଆଲିଙ୍ଗନ କରି ଆପଣ କାହିଁକି ନିଦ୍ରାଗତ ହୋଇଛନ୍ତି ? ଏହା

Digitized by srujanika@gmail.com

ଆପଣଙ୍କର ଯୋଗ୍ୟ ନୁହେଁ । ଆପଣ ତ ସର୍ବଦା ରତ୍ନଜଡ଼ିତ ଶଯ୍ୟାରେ ଶୟନ କରନ୍ତି । ହେ ବୀର, ଯଦି ଆପଣ ଭୂମଣ୍ଡଳ ପରିତ୍ୟାଗ କରି ପରଲୋକ ଗମନ କରିବାକୁ ସ୍ଥିର କରି ନେଇଛନ୍ତି, ତେବେ ଆପଣ ଏକାକୀ ଯାଆନ୍ତୁ ନାହିଁ । ସେଠାରେ ଆପଣଙ୍କର ସେବା କିଏ କରିବ ? ଆମେମାନେ ସର୍ବଦା ଆପଣଙ୍କର ଚରଣଦାସୀ । ଆମର ଅଧିକାରରୁ ଆମକୁ ବଞ୍ଚିତ କରନ୍ତୁ ନାହିଁ । ଆମର ସ୍ୱତ୍ୱ ଆମଠାରୁ ଛଡ଼େଇ ନିଅନ୍ତୁ ନାହିଁ । ହେ ଦେବ, ଆପଣ ଆମକୁ ମଧ୍ୟ ଆପଣଙ୍କ ସାଙ୍ଗରେ ନେଇ ଯାଆନ୍ତୁ ।''

ହିରଣ୍ୟକଶିପୁ କହିଲେ—''ଦେଖ, ଯେତେବେଳେ ସେହି ସ୍ତ୍ରୀମାନେ ଆପଣାର ମୃତ ପତିଙ୍କୁ ଧରି ଏପରି ବିଳାପ କରିବାକୁ ଲାଗିଲେ, ସେତେବେଳେ ସମସ୍ତଙ୍କର ହୃଦୟ ବିଦୀର୍ଣ୍ଣ ହେବାକୁ ଲାଗିଲା । ସୂର୍ଯ୍ୟାସ୍ତ ହୋଇ ଆସୁଥିଲା । ରାଜାଙ୍କର ବନ୍ଧୁବାନ୍ଧବ ମହାରାଜାଙ୍କର ମୃତ ଦେହର ଦାହ ସଂସ୍କାର କରିବାକୁ ଇଚ୍ଛା କଲେ; କାରଣ ରାତ୍ରି-କାଳରେ ଦାହ ସଂସ୍କାର ହୋଇପାରିବ ନାହିଁ । ମାତ୍ର ଶୋକାକୁଳିତା ସେଇ ସ୍ତ୍ରୀମାନେ କୌଣସିମତେ ରାଜାଙ୍କର ଶରୀରରୁ ପୃଥକ୍ ହେବାକୁ ପ୍ରସ୍ତୁତ ନ ଥିଲେ । ସେତେବେଳେ ରାଜାଙ୍କର ସମସ୍ତ ପରିବାରର ଲୋକେ ଅତ୍ୟନ୍ତ ଦୁଃଖୀ ହେଲେ ।

ଏମାନଙ୍କୁ ଏଭଳି ବିଷାଦଗ୍ରସ୍ତ ହୋଇଥିବା ଦେଖି ଅକସ୍ମାତ୍ କେଜାଣି କେଉଁଠାରୁ ଏକ ଗୁରି ପାଞ୍ଚବର୍ଷର ବାଳକ ଆସି ସେଠାରେ ଉପସ୍ଥିତ ହେଲା । ସେ ଚିରା ମଇଳା ଲୁଗା ପିନ୍ଧିଥିଲା । ତା'ର ଅଧରରେ ମନ୍ଦହାସ ଉକୁଟି ଉଠୁଥିଲା । ସେ ଅତ୍ୟନ୍ତ ତେଜସ୍ୱୀ ମନେ ହେଉଥିଲା । ରାଜାଙ୍କର ରାଣୀମାନଙ୍କୁ ଏବଂ ତାଙ୍କର ବନ୍ଧୁ-ମାନଙ୍କୁ ସେଭଳି ଶୋକମଗ୍ନ ହୋଇଥିବା ଦେଖି ସେ ସ୍ୱୟଂ ନିଜେ ନିଜକୁ କହିବା ଆରମ୍ଭ କରିଦେଲା, ଯେଭଳି ଆକାଶ ସହିତ କଥାବାର୍ତ୍ତା ହେଉଛି ।

ସେ ଉପେକ୍ଷାପୂର୍ଣ୍ଣ କଣ୍ଠରେ କହିଲା—''ଦେଖ, ଭଗବାନଙ୍କର କିଭଳି ମାୟା । ଏହି କ୍ରନ୍ଦନ କରୁଥିବା ସ୍ତ୍ରୀ-ପୁରୁଷମାନେ ମୋଠାରୁ ବୟସରେ ବଡ଼ । କେତେ ଲୋକଙ୍କୁ ପ୍ରତିଦିନ ମରୁଥିବା ଦେଖୁଛନ୍ତି । ତେବେ ମଧ୍ୟ ସେମାନଙ୍କର ବୋଧ ହେଉ ନାହିଁ । ଯଦିଓ ମୁଁ ବାଳକ, ଏଇନେ ମୋର ବୟସ ଅତି କମ୍; ତଥାପି ମଧ୍ୟ ମୋର ସେଭଳି ବିଶେଷ ଦୁଃଖ ହେଉ ନାହିଁ । ଏମାନଙ୍କର ଏଭଳି ଦୟନୀୟ ଅବସ୍ଥା ଦେଖି ଦୟା ହେବରୁ ମୋର ଦୁଃଖ ଜାତ ହେଉଛି । ଏମାନେ ସମସ୍ତେ ସଂସାରର ଜନ୍ମମରଣ ରୂପ ଗତିକୁ ନିରନ୍ତର ଦେଖନ୍ତି । ଦେଖି ଦେଖି ମଧ୍ୟ ଅନ୍ଧ ହେଉଛନ୍ତି । ଆମକୁ ଜାଲରେ ଛନ୍ଦି ରଖିବାକୁ ଚାହାଁନ୍ତି । କହ, ଏଥିରେ ଦୁଃଖ କରିବାର କ'ଣ ଅଛି ? ଆରେ, ସୁନ୍ଦରଙ୍କ ତ ଏଠାରେ ସବୁଦିନ ରହି ନ ଥାନ୍ତା ! ସେ କେଉଁଠୁ ଆସିଥିଲା । ଯେଉଁଠୁ ସେ ଆସିଥିଲା, ସେଠାକୁ ଫେରି ଯାଇଛି । ସେଥିନିମନ୍ତେ କାନ୍ଦିବା ବୃଥା । ଠିକ୍ କଥା, ଏଇ କାନ୍ଦିବା ଲୋକେ ବି ଯଦି ସବୁଦିନ ପାଇଁ ଏଠାରେ ରହନ୍ତେ, ତା'ହେଲେ ବି

Digitized by srujanika@gmail.com

କାନ୍ଦିବାର କିଛି ମୂଲ୍ୟ ଥାଆନ୍ତା । ଏମାନେ ସ୍ୱୟଂ ମରଣଧର୍ମୀ । ଦିନେ ଏମାନଙ୍କୁ ମଧ୍ୟ ମରିବାକୁ ପଡ଼ିବ । ଏହାଙ୍କର ପଥ ଧରିବାକୁ ହେବ । ତେଣୁ କାନ୍ଦି ଲାଭ କ'ଣ ?''

ହିରଣ୍ୟକଶିପୁ କହିଲା—''ମା' ସେଇ ବାଳକର କଥା ଧ୍ୟାନ ଦେଇ ଶୁଣ । ବୋହୂ, ଶୁଣୁଛ ତମେ ? ତମେ ବି ଶୁଣ ! ପିଲାଏ, ତମେ ବି ସେଇ ପିଲାଟିର କଥାକୁ ମନଦେଇ ଶୁଣ । ଦେଖ, ସେ କେତେ ଜ୍ଞାନର ଶବ୍ଦ କଥାଗୁଡ଼ିକ କହିଲା । ସାବଧାନ ହୋଇ ସେ କଥା ଶୁଣ । ମନନ କର, ତମର ସବୁ ଶୋକ ଏବଂ ମୋହ ଦୂର ହୋଇଯିବ !''

## ଛପ୍‌ପୟ

ବୋଲେ ଅପନେ ଆପ ଅହୋ ଅଦଭୁତ ହରି ମାୟା ।
ପତି ହୈ କା କୋ କୌନ କାକୀ ହୈ କାୟା ॥
ନିତଇ ଦେଖେଁ ମରତ ନ ସୋଚେଁ କୋଉ ପ୍ରାନୀ ।
କାଲ ନ ଦେଖେ ଦୀନ ଦୁଖୀ ରାଜା ଅରୁ ରାନୀ ॥
ଆୟେ ଜହଁ ତେଁ ଜୀବ ଜିହ, ଜଏଁ ତହାଁଇ ଗମନ ହୈ ।
ସ୍ୱୟଂ ତହାଁ ସବ ଜାୟେଁଗେ, ବ୍ୟର୍ଥ ଶୋକ ଦୁଖ ରୁଦନ ହୈ ॥

---

Digitized by srujanika@gmail.com

# ସବୁରି ରକ୍ଷକ ଶ୍ରୀହରି

ଅହୋ ବୟଂ ଧନ୍ୟତମା ଯଦତ୍ର
ତ୍ୟକ୍ତାଃ ପିତୃଭ୍ୟାଂ ନ ବିଚିନ୍ତୟାମଃ ।
ଅଭକ୍ଷ୍ୟମାଣା ଅବଲା ବୃକାଦିଭିଃ
ସ ରକ୍ଷିତା ରକ୍ଷତି ଯୋ ହି ଗର୍ଭେ ॥

( ଶ୍ରୀ ଭା ୭ ସ୍କ ॥ ୨ୟ ଅ ॥ ୩୮ ଶ୍ଳୋକ )

## ଛପ୍‌ପୟ

ଶିଶୁପନ ତେଁ ଇ ହମେଁ ପିତା ମାତା ନେ ତ୍ୟାଗେ୍ୟା ।
କୋଇ ତଙ୍ଗ ନହିଁ ରଖେଁ କହେଁ ସବ ବଡ଼ୋ ଅଭାଗୋ ॥
ହ୍ୱୈ ଅନାଥ ବନ ମାଁହି ଫିରେଁ ତରୁବର ସୋ ଜାବେଁ ।
ଭୋଜନ ହୂ ମିଲି ଜାଇ ଭେଡ଼ିଆ ସିଂହ ନ ଖାବେଁ ॥
ମୃତ୍ୟୁ ସମୟ ଯଦି ନିକଟ ନହିଁ, ରହେ ଗୃହିଁ ବନ ମହିଁ ପରଯ୍ୟୋ ।
କରେଁ ସଦା ପାଲନ ଜିନନି, ଗର୍ଭ ମାହିଁ ପାଲନ କର୍‌ୟୋ ॥

କାଳକୁ ଦୁର୍ନିବାର କୁହାଯାଇଛି । ମୃତ୍ୟୁକୁ କେହି ଏଡ଼ାଇ ଦେଇପାରିବ ନାହିଁ । ଜନ୍ମ ସହିତ ମୃତ୍ୟୁ ଉତ୍ପନ୍ନ ହୋଇଥାଏ । ମୃତ୍ୟୁର ମୁହୂର୍ତ୍ତ ଜନ୍ମ ନେବା ସାଙ୍ଗରେ ମାତାର ଉଦର ମଧ୍ୟରେ ହିଁ ନିର୍ଦ୍ଧାରିତ ହୋଇଯାଏ । ଷଠୀମାତା (ବିଧିମାତା) ଆପଣା ଲେଖନୀରେ ତା'ର ଲଲାଟରେ ଲେଖି ଦିଅନ୍ତି; ଅମୁକ ସମୟରେ ଅମୁକ ଦ୍ୱାରା, ଅମୁକ ସ୍ଥାନରେ ମୃତ୍ୟୁ ହେବ । ଯାହା ଷଠୀମାତା ଲେଖିଦେଇଗଲେ, ସେଇ କପାଳ ଲିଖନ କେହି ଆନ କରିପାରିବେ ନାହିଁ । ଏହାର ଅନ୍ୟଥା ହୋଇପାରିବ ନାହିଁ । ବିଧି ଲେଖା ଲିଭାଇ ଦେବାକୁ କା'ର ଶକ୍ତି ଅଛି ? ଯା'ର କାଳ ପୂରିନାହିଁ, ତାକୁ କୌଣସି ଉପାୟରେ କେହି ବି ମାରିଦେଇ ପାରିବେ ନାହିଁ । ତାକୁ ବିଷ ଦିଅନ୍ତୁ, ତାହା ଜୀର୍ଣ୍ଣ ହୋଇଯିବ ବା ବମନ ହୋଇ ବାହାରିଯିବ । ବିଷଧର ସର୍ପ ଦଂଶନ କରନ୍ତୁ, କିଛି ହେବ ନାହିଁ । ସହସ୍ର ସହସ୍ର ଅସ୍ତ୍ର ଶସ୍ତ୍ରର ପ୍ରହାର ସହନ କରି ସେ ଜୀବିତ ଫେରି ଆସିବ ।

Digitized by srujanika@gmail.com

ତା'ର ବିପତ୍ତି, ଯା'ର କାଳ ପୂରିଛି, ସେ ସାମାନ୍ୟ ଗୋଟିଏ ବାଙ୍କବାରେ ବି ମରିଯିବ । ଛିଙ୍କ ଆସି ପ୍ରାଣ ଚାଲିଯିବ । ବସି ବସି, ଖିଆପିଆ କରୁ କରୁ, କଥାବାର୍ତ୍ତା କଲାବେଳେ ହୃଦୟ ଗତି ବନ୍ଦ ହୋଇଯିବ । ତେଣୁ ଅବଶ୍ୟମ୍ଭାବୀ ମୃତ୍ୟୁ ପାଇଁ ଦୁଃଖ କରିବା, ଚିନ୍ତା କରିବା ଉଚିତ ନୁହେ । ଯେ ଜନ୍ମ ହୋଇଛି, ସେ ଅବଶ୍ୟ ମରିବ । ମୃତ୍ୟୁ ଅବଶ୍ୟମ୍ଭାବୀ, ତାକୁ କେହି ଅନ୍ୟଥା କରିପାରିବ ନାହିଁ । ଯାହା ଦୁର୍ନିବାର ବସ୍ତୁ ତା ଲାଗି ଚିନ୍ତା କରିବା ମୂର୍ଖତା ।

ହିରଣ୍ୟକଶିପୁ ତା'ର ମାତା, ଭ୍ରାତୃବଧୂ ଓ ପୁତ୍ରମାନଙ୍କୁ ବୁଝେଇ କହୁଛି— "ଦେଖ, ଯେତେବେଳେ ସୁଯଜ୍ଞର ରାଣୀମାନେ ବିଳାପ କରୁଥିଲେ, ସେତେବେଳେ ସେ ବାଳକ ହସି ହସି କହିଲା—ଏତେ ବୟସ୍କ ସ୍ତ୍ରୀ ପୁରୁଷ ଅନାଥଙ୍କ ଭଳି ରୋଦନ କରୁଛନ୍ତି । ଏମାନଙ୍କ ଘର ଅଛି, ଦ୍ୱାର ଅଛି, ଧନ ଅଛି, ପରିବାର ଅଛି; ତଥାପି ଏମାନେ ଆପଣାକୁ ଦୁଃଖୀ ମନେ କରୁଛନ୍ତି । ଯେହେତୁ ସେମାନଙ୍କର ଆପଣାର ପ୍ରିୟ ରାଜାଙ୍କର ମୃତ୍ୟୁ ହୋଇଛି । ଯେ ମରିଗଲା ଗଲା । ମଲା ଲୋକ ତ ଆଉ ଫେରି ଆସି ପାରିବ ନାହିଁ । ଯା'ର କାଳ ଆସିଛି, ତାକୁ କେହି ବଞ୍ଚେଇ ପାରିବେ ନାହିଁ । ଯା'ର କାଳ ପୂରି ନାହିଁ, ତାକୁ କେହି ହେଲେ ମାରିଦେଇ ପାରିବେ ନାହିଁ ।"

ଆମେ ଦୃଷ୍ଟାନ୍ତ ଖୋଜିବାକୁ ବାହାରକୁ କୁଆଡ଼େ ଯିବା, ମୁଁ ମେ ନିଜ କଥା କହୁଛି—"ଗୋଟିଏ ଦରିଦ୍ର ଘରେ ମୋର ଜନ୍ମ । ବାଲ୍ୟକାଳରେ ପିତାମାତା ଅବୋଧ ଅବସ୍ଥାରେ ଛାଡ଼ିଦେଇ ପରଲୋକ ଗମନ କଲେ । ମୁଁ ଅନାଥ ଓ ଅସହାୟ ହୋଇଗଲି । କୌଣସି ଆତ୍ମୀୟସ୍ୱଜନ ମୋତେ ଆଶ୍ରୟ ଦେଲେନାହିଁ । ଘୋର ଅରଣ୍ୟକୁ ଆସି ମୁଁ ଭାଗ୍ୟର ଭରସାରେ ବସିଗଲି । ମୁଁ ସ୍ଥିର କରିନେଲି ଯେ, ଯଦି ମୋର ମୃତ୍ୟୁ ନିଶ୍ଚିତ, ତା'ହେଲେ ମୋତେ କେହି ବି କେତେ ସୁଖ ଦେଇ ମଧ୍ୟ ବଞ୍ଚେଇ ପାରିବ ନାହିଁ । ଯଦି ମୋର ମୃତ୍ୟୁ ଏଇନେ ନାହିଁ, ତେବେ କେହି ବି କୌଣସି ଉପାୟରେ ମାରିଦେଇ ପାରିବ ନାହିଁ । ଏଇ ଧାରଣାକୁ ଦୃଢ଼କରି ମୁଁ ସ୍ୱଚ୍ଛନ୍ଦରେ ବଣ ମଧ୍ୟରେ ବିଚରଣ କରିବାକୁ ଲାଗିଲି । ନା ଉଦ୍ଧବଠୁଁ ନିଆ ନା ମାଧବକୁ ଦିଆ ! କିଛି ନାହିଁ । ପ୍ରାରବ୍ଧ-ବଶତଃ ଯାହା ମିଳି ଯାଇଥାଏ, ତାକୁ ଖାଇନିଏ । ଗଙ୍ଗାଙ୍କର ସ୍ୱଚ୍ଛ ନିର୍ମଳ ପାପହାରୀ ଜଳପାନ କରିନିଏ, ଆଉ ଗଛମୂଳେ ପଡ଼ିରହେ । ମୋତେ ନା କୌଣସି ସିଂହ ଖାଉଛି ନା ବାଘ ! ନା ଚିତା ଆସୁଛି ନା ହେଣ୍ଟାବାଘ ! ଭାଲୁ ଆସି ପାଖଦେଇ ଚାଲିଯାଏ । ସାପ ବେଳେ ବେଳେ ସାଙ୍ଗରେ ଆସି ଶୋଇପଡ଼େ । ନା କେହି ବାମୁଣ୍ଡନ୍ତି, ନା ହଇରାଣ କରନ୍ତି; କାରଣ କାଳ ପୂରିନାହିଁ । ଯେଉଁଦିନ କାଳ ପୂରିଯିବ, ସେତେବେଳେ ବିରାଟ ମହଲରେ ଥିଲେ ବି ବଞ୍ଚିବ ନାହିଁ । ନା କେହି କାହାକୁ ମାରିପାରିବ ନା ବଞ୍ଚେଇ ଦେଇପାରିବ । ଏଇ ସୁଯଜ୍ଞ କେଜାଣି କେତେ ଯୋଦ୍ଧାଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ, ସେ ସମୟରେ କେହି ତାଙ୍କର ସାମାନ୍ୟ କ୍ଷତି ମଧ୍ୟ କରିପାରି ନ ଥିଲେ । ବର୍ତ୍ତମାନ ତାଙ୍କର ମୃତ୍ୟୁର ସମୟ ଉପସ୍ଥିତ ହେଲା । ଶତ୍ରୁ ହାତରେ ମୃତ୍ୟୁ ହେଲା ।

Digitized by srujanika@gmail.com

ଏଥିରେ ଶୋକ ସନ୍ତାପ କରିବାକୁ କ'ଣ ଅଛି ? ଦେଖ, ଚନ୍ଦ୍ରହାସକୁ ମାରିବାକୁ କେତେ ଉପାୟ କରାଗଲା; ମାତ୍ର ସେ ମଲା ନାହିଁ, ବରଂ ଭଗବାନଙ୍କ କୃପାରୁ ତା'ର ବୈଭବ ବଢ଼ିଲା ଓ ସେ ଅନାଥରୁ ରାଜା ହେଲା ।

ଏ କଥା ଶୁଣି ଶୌନକ ପଚାରିଲେ—"ମହାଭାଗ ! ଚନ୍ଦ୍ରହାସକୁ ଶତ୍ରୁମାନେ କାହିଁକି ମାରିବାକୁ ଚାହିଁଲେ ଓ ସେ କେମିତି ବଞ୍ଚିଗଲେ । ଏ କଥା ଶୁଣିବାକୁ ଅତ୍ୟନ୍ତ ଇଚ୍ଛା ହେଉଛି । ଆପଣ ଉଚିତ ମନେ କରୁଥିଲେ ସେଇ ଉପାଖ୍ୟାନ କହନ୍ତୁ ।"

ଶୌନକଙ୍କର କଥା ଶୁଣି ଶ୍ରୀ ସୂତ କହିଲେ—"ରାଜନ୍, ଏହା ଅତ୍ୟନ୍ତ ସୁନ୍ଦର, ରୋଚକ ଓ ଶିକ୍ଷାପ୍ରଦ କଥା । ଏହା ଆପଣଙ୍କୁ ଶୁଣାଉଛି, ଆପଣମାନେ ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ । ଜଣେ ବଡ଼ ଧର୍ମାତ୍ମା ରାଜା ଥିଲେ । ତାଙ୍କର ପୁତ୍ର ଜାତ ହେଲା । ପୁତ୍ର ସର୍ବାଙ୍ଗ ସୁନ୍ଦର ଥିଲା । ତା'ର ମୁଖମଣ୍ଡଳ ଭବ୍ୟ ଥିଲା । ସେ ଦେଖିବାକୁ ଅତ୍ୟନ୍ତ ମନୋହର ମନେ ହେଉଥିଲା । ତା'ର ଅଙ୍ଗ ସୁଗଠିତ ଏବଂ ଦେହର ବର୍ଣ୍ଣ ସୁବର୍ଣ୍ଣ ସଦୃଶ ଥିଲା । ସର୍ବଗୁଣସମ୍ପନ୍ନ ହୋଇଥିଲେ ହେଁ ତା'ର ଏକ ଦୋଷ ଥିଲା । ସେ ବ୍ୟଙ୍ଗ ଥିଲା । ପାଞ୍ଚୋଟି ସ୍ଥାନରେ ତା'ର ଗୋଟିଏ ହାତରେ ଛଅଗୋଟି ଆଙ୍ଗୁଠି ଥିଲା ।" ଜ୍ୟୋତିଷମାନେ କହିଲେ—"ମହାରାଜ, ବିଶେଷ ଅଙ୍ଗବିଶିଷ୍ଟ ବାଳକ ମାତା-ପିତାଙ୍କ ପାଇଁ ଅଶୁଭ । ତା'ର ଧନ ରହିବ ନାହିଁ । ଏଣୁ ଆପଣ ତାକୁ ପରିତ୍ୟାଗ କରନ୍ତୁ ।"

ରାଜାଙ୍କର ଗୋଟିଏ ମାତ୍ର ପୁତ୍ର ଥିଲା ଏବଂ ତାହା ମଧ୍ୟ ବୃଦ୍ଧ ବୟସରେ ! ଯେଉଁଭଳି ସୁନ୍ଦର ପୁତ୍ରକୁ କିଭଳି ପରିତ୍ୟାଗ କରନ୍ତେ ! ସେ କଥାଟି ପ୍ରତି ଦୃଷ୍ଟି ନ ଦେଇ ପୁତ୍ରର ଲାଳନ ପାଳନ ଅତ୍ୟନ୍ତ ସ୍ନେହରେ କରିବାକୁ ଲାଗିଲେ ।

ସବୁ ସମୟ ଗୋଟିଏ ଭଳି ଯାଏନାହିଁ । ଦୁଃଖ ପରେ ସୁଖ, ସୁଖ ପରେ ଦୁଃଖ, ଏ ଚକ୍ର ନିରନ୍ତର ଚାଲିଥାଏ । ନା ସଂସାରରେ କେହି ସଦା ସର୍ବଦା ସୁଖୀ ହୋଇ ରହିଛି ଅଥବା ଦୁଃଖୀ । ଏତେବେଳ ପର୍ଯ୍ୟନ୍ତ ଯେଉଁ ରାଜା ସବୁ ସୁଖର ଉପଭୋଗ କରୁଥିଲେ ଏବଂ ପୁତ୍ର ଚନ୍ଦ୍ରହାସକୁ ପ୍ରାଣରୁ ବଳି ଭଲ ପାଉଥିଲେ, ତାଙ୍କ ଉପରେ ଆକସ୍ମିକ ଭାବରେ ତାଙ୍କର ଶତ୍ରୁରାଜା ଆକ୍ରମଣ କଲେ । ଯୁଦ୍ଧରେ ରାଜା ନିହତ ହେଲେ । ରାଣୀ ସ୍ୱାମୀଙ୍କର ମୃତ୍ୟୁ ସମ୍ବାଦ ପ୍ରାପ୍ତ ହେବା ମାତ୍ରକେ ଶରୀର ତ୍ୟାଗ କଲେ । ସେତେବେଳେ କେବଳ ମାତ୍ର ଚାରି ପାଞ୍ଚବର୍ଷର ମାତୃପିତୃହୀନ ବାଳକ ରାଜକୁମାର ଚନ୍ଦ୍ରହାସ ହିଁ ଜୀବିତ ରହିଲା । କୁମାରର ଧାଈ ତାକୁ ପୁତ୍ରଠାରୁ ବଳି ସ୍ନେହ କରୁଥିଲା । ସେ ଯେତେବେଳେ ଦେଖିଲା ଯେ କେବଳ କୁମାର ହିଁ ବଞ୍ଚି ଯାଇଛି ଶତ୍ରୁ ହାତରେ ପଡ଼ିଲେ ସେମାନେ ତାକୁ ମାରିଦେବେ, ସେ ତାକୁ ଅତ୍ୟନ୍ତ କୌଶଳ ସହକାରେ ଲୁଚେଇ ଗୁପ୍ତମାର୍ଗ ଦେଇ ରାଜଧାନୀ ବାହାରକୁ ଚାଲିଗଲା । ସେ ରାଜ-

Digitized by srujanika@gmail.com

କୁମାରକୁ ଚିରା ପୁରୁଣା ଲୁଗା ପିନ୍ଧେଇ ଦେଇଥିଲା । ସେ ଗାଆଁକୁ ଯାଇ ଭିକ୍ଷା କରେ ଏବଂ ସମସ୍ତଙ୍କୁ କହେ, ଏ ଏକ ଅନାଥ ବାଳକ । ଚିରା ପୁରୁଣା ଲୁଗାରେ କାମଦେବ ଭଳି ଶିଶୁକୁ ଦେଖି ସମସ୍ତେ ଚକିତ ହୋଇ ଯାଉଥିଲେ ଏବଂ ତା ଉପରେ ଦୟାକରି କିଛି ନା କିଛି ଅବଶ୍ୟ ଦେଉଥିଲେ । ଏଭଳି ଭାବରେ ସେ ଧାଈ ଭିକ୍ଷା କରି କରି କୁନ୍ତଳ ଦେଶରେ ପହଞ୍ଚିଲା । ସେଠାକାର ରାଜା ଅତ୍ୟନ୍ତ ଧାର୍ମିକ ଥିଲେ । ରାଜ୍ୟର ସମସ୍ତ ଭାର ତାଙ୍କର ପ୍ରଧାନ ମନ୍ତ୍ରୀ ଧୃଷ୍ଟବୁଦ୍ଧିଙ୍କୁ ଅର୍ପଣ କରିଥିଲେ । ସେଭଳି ଧୃଷ୍ଟବୁଦ୍ଧି ରାଜକାର୍ଯ୍ୟରେ ଅତ୍ୟନ୍ତ ପ୍ରବୀଣ; ମାତ୍ର ଭାରି ଜିଦ୍‌ଖୋର ଥିଲା । ସେ ଯେଉଁ କଥା ନିଶ୍ଚିତ କରି ନେଉଥିଲା, ତାକୁ ସମସ୍ତ ଶକ୍ତି ଖଟେଇ ଯେକୌଣସିମତେ ଅବଶ୍ୟ କରୁଥିଲା । ରାଜ୍ୟ ସାରା ତା'ର ପ୍ରଭୁତ୍ୱ ଥିଲା । ସମସ୍ତେ ତା'ର ନାଁ ଶୁଣିଲେ ଡରୁଥିଲେ । ରାଜା ନାମ ମାତ୍ର ରାଜା ଥିଲେ । ବାସ୍ତବରେ କୁନ୍ତଳ ଦେଶର ବିନା ଛତ୍ରର ରାଜା ଥିଲା ଧୃଷ୍ଟବୁଦ୍ଧି । ତା'ର ପୁତ୍ରଟିଏ ଥିଲା । ତା ନାଁ ମଦନ । ସେ ଅତ୍ୟନ୍ତ ସରଳ ଓ ସାଧୁ ସ୍ୱଭାବର ଥିଲା । ସେ ମାତାପିତାଙ୍କର ଆଜ୍ଞାକାରୀ ଏବଂ ସାଧୁସେବୀ ଥିଲା । ଧାଈ କୁନ୍ତଳ ଦେଶରେ ପହଞ୍ଚି ଲୋକଙ୍କୁ କହିଲା—"ମୋତେ କେହି ଚାକିରୀରେ ରଖ, ଯେମିତି ମୁଁ ମୋର ଏଇ ପିଲାଟିର ଲାଳନ ପାଳନ କରିପାରିବି ।"

ସେଇ ପିଲାଟିର ରୂପଲାବଣ୍ୟ ଦେଖି ନଗରବାସୀମାନେ କହିଲେ—"ମାତା, ଆପଣ ମହାମନ୍ତ୍ରୀ ଧୃଷ୍ଟବୁଦ୍ଧିଙ୍କ ନିକଟକୁ ଯାଆନ୍ତୁ । ଆପଣ ତାଙ୍କୁ ପ୍ରାର୍ଥନା କଲେ, ସେ ଆପଣଙ୍କୁ ଅବଶ୍ୟ ଉତ୍ତର ଦେବେ ।" ଧାଈ ଏକଥା ଶୁଣି ଧୃଷ୍ଟବୁଦ୍ଧିଙ୍କ ନିକଟକୁ ଗଲା । ଯୋଗକୁ ମୁଖ୍ୟମନ୍ତ୍ରୀଙ୍କ ସହିତ ଦ୍ୱାର ସମ୍ମୁଖରେ ଭେଟ ହୋଇଗଲା । ଧାଈ ଦୀନ-ସ୍ୱରରେ କାନ୍ଦ କାନ୍ଦ ହୋଇ କହିଲା—"ଅନ୍ନଦାତା, ମୁଁ ନିରାଶ୍ରିତା ଅନାଥ ସ୍ତ୍ରୀଟିଏ । ବିପତ୍ତିରେ ପଡ଼ି ଏଣେ ତେଣେ ବୁଲୁଛି । ମୋର ଏ ଡିନି ରାଜବଂଶର ପୁଅ, ତାକୁ ନେଇ ମୁଁ ଆପଣଙ୍କର ଶରଣାର୍ଥିନୀ ହୋଇଛି । ମୋତେ ମଜୁରୀ ମିଳିଲେ ଏ ପିଲାଟିର ଲାଳନ ପାଳନ କରିପାରିବି ।"

ସେ ପିଲାଟିର ସରଳ, ସୁନ୍ଦର ଚେହେରା ଦେଖି ମହାମନ୍ତ୍ରୀଙ୍କର ଦୟା ହେଲା ଓ ସେ କହିଲେ—"ଠିକ୍ ଅଛି, ତୁ ଏଇ ମହଲରେ ରହି ତୋ ଦେଇ ଯାହା ହେଉଛି କର । ତୋର ସବୁ ଆବଶ୍ୟକତା ଏଇଠି ପୂରଣ ହେବ ।"

ଧାଈ ମହାମନ୍ତ୍ରୀଙ୍କର ଜୟ ଜୟକାର କଲା ଓ ସେଠାର ମହଲରେ ରହି ଚାକରାଣୀ କାମ କରିବାକୁ ଲାଗିଲା । ଚନ୍ଦ୍ରହାସକୁ ଆଶ୍ରୟ ମିଳିଲା । ସେ ମହାମନ୍ତ୍ରୀଙ୍କର ପିଲାମାନଙ୍କ ସହିତ ଖେଳିବାକୁ ଲାଗିଲା । ସେଠାରେ ତ କୌଣସି କାମ ନ ଥିଲା, ସୁଖରେ ତା'ର ଦିନ କଟିବାକୁ ଲାଗିଲା ।

ଯୁଆଡ଼େ ଗଲେ ବି ଭାଗ୍ୟ ସାଙ୍ଗରେ ଯାଏ ! ଭାଗ୍ୟବାନକୁ ସବୁଠାରେ ସୁଖ ମିଳେ; ମାତ୍ର ଭାଗ୍ୟହୀନର କେଉଁଠାରେ ହେଲେ ସୁଖ ନାହିଁ । ଚନ୍ଦ୍ରହାସର ଦୁର୍ଭାଗ୍ୟର

Digitized by srujanika@gmail.com

ଅନ୍ତ ନ ଥିଲା । ବର୍ଷେ ଦୁଇବର୍ଷ ପରେ ତା'ର ଧାତ୍ରୀ ମଧ୍ୟ ତାକୁ ଅନାଥ କରିଦେଇ ଇହଧାମ ତ୍ୟାଗକରି ପରଲୋକ ଗମନ କଲା । ତା'ପରେ ଚନ୍ଦ୍ରହାସ ସବୁ ଦିଗରୁ ଅନାଥ ଓ ନିରାଶ୍ରୟ ହୋଇଗଲା । ଯେତେବେଳେ ମନୁଷ୍ୟ ସବୁ ଦିଗରୁ ନିରାଶ ହୋଇଯାଏ, ସେତେବେଳେ ଭଗବାନଙ୍କୁ ସ୍ମରଣ କରେ । ଭଗବାନଙ୍କୁ ତ ନିର୍ବଳର ବଳ, ନିରାଶ୍ରୟର ଆଶ୍ରୟ ବୋଲି କୁହାଯାଇଛି । ଯେ ସବୁ ଦିଗରୁ ନିରାଶ୍ରୟ ହୋଇଯାଏ, ଆପଣାର ପୁରୁଷାର୍ଥ ହରେଇ ବସେ, ତାକୁ ଭଗବାନଙ୍କର କୃପାର ଅନୁଭବ ହୁଏ । ଚନ୍ଦ୍ରହାସ ମଧ୍ୟ ଦେଖିଲା ଓ ଭାବିଲା, ସଂସାରରେ ବର୍ତ୍ତମାନ ମୋର ଏଇନେ କେହି ନାହିଁ । ଏକମାତ୍ର ଶ୍ରୀହରି ଶରଣ । ଏହା ଭାବି ସେ ଆର୍ତ୍ତସ୍ୱରରେ କାନ୍ଦି କାନ୍ଦି ଏକାନ୍ତରେ ଭଗବାନଙ୍କୁ ଡାକିବାକୁ ଲାଗିଲା । ସଂଯୋଗକୁ ସେଠାକୁ ଜଣେ ମହାତ୍ମା ପଦାର୍ପଣ କଲେ । ସେଇ ବାଳକର ସେପରି ନିଷ୍ଠା ଦେଖି ତା ଉପରେ କୃପା କଲେ । ଭଗବାନଙ୍କର ନାମର ଉପଦେଶ ଦେଲେ ଏବଂ ପୂଜା କରିବାକୁ ଏକ ଶାଳଗ୍ରାମ ବିଗ୍ରହ ଦେଲେ । କହିଲେ—"ଏ ଭଗବାନ ! ପ୍ରତିଦିନ ଏହାଙ୍କୁ ସ୍ନାନ କରେଇ ଚରଣାମୃତ ଗ୍ରହଣ କରିବୁ ଏବଂ ଏହାଙ୍କୁ ଭୋଗ ଦେବାପରେ ହିଁ ପ୍ରସାଦ ପାଇବୁ ।"

ଚନ୍ଦ୍ରହାସକୁ ସତେ ଯେପରି କୋଟିନିଧି ମିଳିଗଲା । ଭଗବାନ ଶାଳଗ୍ରାମଙ୍କୁ ପ୍ରାପ୍ତ ହୋଇ ସେ ପରମ ପ୍ରସନ୍ନ ହେଲା । ତାକୁ ସେ କେଉଁଠି ରଖନ୍ତା, ତାଙ୍କ ପାଇଁ କୌଣସି ସ୍ଥାନ ନ ଥିଲା, ଏଣୁ ସେ ଭଗବାନଙ୍କର ଶ୍ରୀ ବିଗ୍ରହକୁ ସର୍ବଦା ଆପଣାର ମନ ମଧ୍ୟରେ ରଖୁଥିଲା । ସକାଳେ ନଦୀକୁ ଯାଏ, ଭଗବାନଙ୍କୁ ମୁଖରୁ ବାହାର କରି ସ୍ନାନ କରାଏ, ସେଇଠାରୁ ମୃତ୍ତିକା ନେଇ ଲଗାଏ, ଜଙ୍ଗଲରୁ ଯେକୌଣସି ଫଳମୂଳ ମିଳେ, ତାହା ନୈବେଦ୍ୟ ଭାବରେ ଅର୍ପଣ କରେ ଏବଂ ପୂଜା ପରେ ତାଙ୍କୁ ପୁନଶ୍ଚ ମୁଖ ମଧ୍ୟରେ ଧାରଣ କରେ । ଗଦ ଗଦ କଣ୍ଠରେ ପ୍ରଭୁଙ୍କର ସ୍ତୁତି କରୁ କରୁ ତାଙ୍କର ଧ୍ୟାନରେ ତନ୍ମୟ ହୋଇଯାଏ । ଘରକୁ ଫେରି ତାଙ୍କୁ ମନ୍ତ୍ରୀ ଘରୁ ଯାହା କିଛି ବି ଭୋଜନ ମିଳେ, ତାକୁ ପ୍ରଥମେ ଭଗବାନଙ୍କୁ ଭୋଗ ଦେଇ ତା'ପରେ ତାକୁ ପ୍ରସାଦ ଭାବରେ ଗ୍ରହଣ କରେ । ଏହିଭଳି ସେ ନିରନ୍ତର ଭଗବାନଙ୍କ ଧ୍ୟାନ ଏବଂ ଭଗବତ୍ ପରିଚର୍ଯ୍ୟାରେ ନିମଗ୍ନ ରହିବାକୁ ଲାଗିଲା । ମହାମନ୍ତ୍ରୀ ଧୃଷ୍ଟବୁଦ୍ଧିଙ୍କର ଦୁଇ ତିନି ବର୍ଷର ଏକ ପୁତ୍ରୀ ଥିଲା, ତା'ର ନାଁ ବିଷୟା । ସେ ଅତ୍ୟନ୍ତ ସୁନ୍ଦର ଥିଲା । ମହାମନ୍ତ୍ରୀଙ୍କର ତା ପ୍ରତି ଅତ୍ୟନ୍ତ ସ୍ନେହ ଥିଲା । ଗୋଟିଏ ମାତ୍ର ପୁତ୍ରୀ ବୋଲି ସେ ତାକୁ ଜୀବନରୁ ବଳି ସ୍ନେହ କରୁଥିଲେ । ଝିଅଟି ସରଳ, ଚଞ୍ଚଳ ଥିଲା । ଯେ ବି ତାକୁ ଦେଖୁଥିଲା, ସ୍ନେହରେ ଉଠେଇ ନେଇ କୋଳ କରୁଥିଲା ଓ ଆଦର କରୁଥିଲା । ଝିଅଟି ଚନ୍ଦ୍ରହାସ ସହିତ ଖେଳେ । ଚନ୍ଦ୍ରହାସର ବୟସ ଛଅ ସାତ ଓ କନ୍ୟାର ବୟସ ଦୁଇ ତିନିବର୍ଷ । ଉଭୟେ ପରସ୍ପରକୁ ସ୍ନେହ କରୁଥିଲେ ।

Digitized by srujanika@gmail.com

ଥରେ ମହାମନ୍ତ୍ରୀଙ୍କ ଘରେ କୌଣସି ପର୍ବର ମହୋତ୍ସବ ଥିଲା । ଦୂର-ଦୂରାନ୍ତରୁ ସନ୍ଥ ମହାତ୍ମା ଓ ବ୍ରାହ୍ମଣମାନେ ଉତ୍ସବରେ ପଦାର୍ପଣ କରିଥିଲେ । ମହାମନ୍ତ୍ରୀ ସେମାନଙ୍କୁ ଅତ୍ୟନ୍ତ ଆଦର ସହକାରେ ସତ୍କାର କଲେ । ଯେତେବେଳେ ଅତ୍ୟନ୍ତ ଆଡ଼ମ୍ବରରେ ଉତ୍ସବ ଅନୁଷ୍ଠାନ ହେଉଥାଏ, ସେତେବେଳେ ମହାମନ୍ତ୍ରୀ ଆପଣାର ସେଇ ଶିଶୁ କନ୍ୟାକୁ ନେଇ ମହାତ୍ମାମାନଙ୍କର ଚରଣ ତଳେ ରଖି ପଚାରିଲା—"ହେ ମହାତ୍ମାମାନେ, ଏ ମୋର ପ୍ରାଣରୁ ବଳି ଆଦରର କନ୍ୟା । ଆପଣମାନେ ସର୍ବଜ୍ଞ । କହନ୍ତୁ, ଏହାର ଭାଗ୍ୟରେ କ'ଣ ଅଛି ? ଏହାକୁ ଭଲ ଘର-ବର ମିଳିବ ତ ?"

ମହାମନ୍ତ୍ରୀ ଯେତେବେଳେ ମହାତ୍ମାମାନଙ୍କୁ ପଚାରୁଥିଲେ, ସେତେବେଳେ ଚନ୍ଦ୍ରହାସ ମଧ୍ୟ ସେଠାରେ ଥିଲା । ସେହି ସନ୍ଥମାନଙ୍କ ମଧ୍ୟରୁ ଜଣେ ବୃଦ୍ଧ ସନ୍ଥ ସେ ଝିଅଟିର ହାତ ଦେଖିବାକୁ ଲାଗିଲେ । ସହସା ତାଙ୍କର ଦୃଷ୍ଟି ଚନ୍ଦ୍ରହାସର ତେଜସ୍ୱୀ ମୁଖମଣ୍ଡଳ ଉପରେ ପଡ଼ିଲା । ସେ ବାଳକ ଚନ୍ଦ୍ରହାସକୁ ଆପଣା ସମୀପକୁ ଡାକିଲେ । ତା'ର ସମସ୍ତ ଅଙ୍ଗର ଲକ୍ଷଣ ଦେଖି ମହାମନ୍ତ୍ରୀଙ୍କୁ କହିଲେ—"ମନ୍ତ୍ରୀ ମହୋଦୟ, ଆପଣ କିଛି ଭାବିବେ ନାହିଁ ଯଦି, କଥାଟିଏ କହିବି ।"

ମନ୍ତ୍ରୀ ଅତ୍ୟନ୍ତ ଉଲ୍ଲସିତ ହୋଇ କହିଲେ—"ମହାଭାଗ, କ'ଣ ଭାବିବି ? ଆପଣ ଯାହା ଭାବୁଛନ୍ତି ନିଃସଙ୍କୋଚରେ କହନ୍ତୁ ।"

ଏହା ଶୁଣି ବୃଦ୍ଧ ସନ୍ଥ କହିଲେ—"ଦେଖନ୍ତୁ, ଏ ବାଳକ ଅତ୍ୟନ୍ତ ପ୍ରତାପଶାଳୀ । ଭବିଷ୍ୟତରେ ଏ ଆପଣଙ୍କର ସ୍ୱାମୀ ଏବଂ ଆପଣଙ୍କର ଏହି କନ୍ୟାର ପତି ହେବ । ତେଣୁ ଅତ୍ୟନ୍ତ ଶ୍ରଦ୍ଧାରେ ଆପଣ ଏହାର ପାଳନ ଓ ଭରଣପୋଷଣ କରନ୍ତୁ ।"

ଏହା ଶୁଣି ବୃଦ୍ଧ ମନ୍ତ୍ରୀ ମନେ ମନେ ଅତ୍ୟନ୍ତ କ୍ରୋଧ ହେଲେ । ଭାବିଲେ—"ଏହା ମୋର ଘୋର ଅପମାନ । ମୁଁ ତ ଭାବିଛି ମୋ ପୁଅର ବିବାହ କୌଣସି ରାଜକୁମାରୀ ସହିତ କରିବି । ମୁନି କହୁଛନ୍ତି ଏ ଅନାଥ ଦାସୀ ପୁଅ ମୋର ଜାମାତା ହେବ ଏବଂ ମୋର ସ୍ୱାମୀ ମଧ୍ୟ । କଦାପି ଏହା ହେବାକୁ ଦେବି ନାହିଁ । ଏହା ମୋର ଘୋର ଅପମାନ । ଏତେ ହୀନ ଯେ ମୋର ଦୟାରେ ଅନ୍ନରେ ପ୍ରତିପାଳିତ, ତାକୁ ମୁଁ କିପରି କନ୍ୟାଦାନ କରିପାରିବି ? କିଭଳି ତା'ର ପାଦପୂଜା କରିବି ? କେଉଁପରି ଏହାର ଅଧୀନ ହୋଇ ଏହାର ଆଜ୍ଞା ପାଳନ କରିବି ? ସମ୍ଭବ, ଋଷି କିଛି ବଡ଼ୁର କରିଛନ୍ତି । ବର୍ତ୍ତମାନ ତ ଏ ମୋର ଅଧୀନରେ ଅଛି । ଏହାକୁ ଏ ସମୟରେ ନିହତ କରାଇବି ? 'ମୂଳ ମାଇଲେ ଯିବ ସରି' । ମୂଳ ଛିନ୍ନ ହେଲେ କେଉଁଭଳି ଶାଖା ପ୍ରଶାଖା ବାହାରିବ ? ଏ ରହିବ ନାହିଁ, ଯଦି ମୋର ଜାମାତା ହେବ, ରାଜା କେମିତି ହେବ ?" ଏହା ଭାବି ଆପଣା ମନକଥା ଗୋପନ ରଖି କହିଲେ—"ମହାଭାଗ,

Digitized by srujanika@gmail.com

ଦୈବଗତ ଲକ୍ଷଣ । କେଜାଣି ମୁହୂର୍ତ୍ତିକରେ କ'ଣରୁ କ'ଣ ହୋଇଯିବ । ଯାହା ହେବାର ଥିବ, ତାହା ହିଁ ହେବ ।" ଏହା କହି ସେ ପୁତ୍ରୀକୁ ନେଇ ଭିତରକୁ ଗଲେ । ଉତ୍ସବ ମଧ୍ୟ ଶେଷ ହେଲା । ସନ୍ଥ ମହାତ୍ମାମାନେ ଯେଝା ସ୍ଥାନକୁ ଚାଲିଗଲେ ।

ତା'ପରଦିନ ମହାମନ୍ତ୍ରୀ ଧୃଷ୍ଟବୁଦ୍ଧି ଘାତକମାନଙ୍କୁ ଡାକି କହିଲା – "ଦେଖ, ତୁମେମାନେ ଦାସୀର ଏଇ ନୀଚ ପୁଅକୁ ନେଇ ଘୋର ଜଙ୍ଗଲ ମଧ୍ୟରେ ହତ୍ୟା କରି ଫିଙ୍ଗିଦେଇ ଆସିବ । ବଡ଼ ସାବଧାନତା ସହକାରେ ଏ କାର୍ଯ୍ୟ କରିବ, ଯେପରି କେହି ଜାଣିବେ ନାହିଁ ।"

ଘାତକମାନେ କରଯୋଡ଼ି ମହାମନ୍ତ୍ରୀଙ୍କର ଆଜ୍ଞା ଶିରୋଧାର୍ଯ୍ୟ କଲେ । ଯେତେବେଳେ ରାତ୍ରୀ ହେଲା, ସେମାନେ ସେଇ ବାଳକକୁ ଧରିନେଲେ । ସଘନ ବନ ମଧ୍ୟରେ ଏକ ପଥର ଚଟାଣ ଉପରେ ବାଳକ ଚନ୍ଦ୍ରହାସକୁ ବସେଇଦେଇ, ଚକ୍ ଚକ୍ କରୁଥିବା ଖଣ୍ଡା ବାହାର କରି କହିଲେ—"ଏ ପିଲା, ତୋର ଯାହା କରିବା କଥା କରିପକା । ଆମେ ବର୍ତ୍ତମାନ ତୋର ମୁଣ୍ଡକାଟ କରିବୁ ।"

ଆଶ୍ଚର୍ଯ୍ୟ ହୋଇ ଚନ୍ଦ୍ରହାସ ପଚାରିଲା—"ଭାଇମାନେ, ତମେମାନେ ମୋତେ କାହିଁକି ମାରିବାକୁ ଚାହୁଁଛ ? ମୁଁ ତମମାନଙ୍କର କ'ଣ କ୍ଷତି କରିଛି ?"

ଜଣେ ଘାତକ କହିଲା –"ତୁ ତ ଆମର କୌଣସି କ୍ଷତି କରିନାହୁଁ; ମାତ୍ର ମହାମନ୍ତ୍ରୀ ଏଭଳି ଆଦେଶ ଦେଇଛନ୍ତି । ଆମେମାନେ ତାଙ୍କର ଅଧୀନ । ଆମର କାର୍ଯ୍ୟ କେବଳ ହତ୍ୟା କରିବା । ଯାହାକୁ ହତ୍ୟା କରିବାର ଆଦେଶ ମିଳେ, ଆମେ ତାକୁ ହତ୍ୟା କରୁ ।"

ଏହା ଶୁଣି ଚନ୍ଦ୍ରହାସ କହିଲା—"ଠିକ୍ କଥା ଭାଇ. ଯଦି ତୁମେ ମାରିବାକୁ ଚାହୁଁଛ, ତା'ହେଲେ ନିଶ୍ଚୟ ମାରିବ; କିନ୍ତୁ ମୁହୂର୍ତ୍ତେ ମାତ୍ର ଅପେକ୍ଷା କର, ମୁଁ ମୋର ଭଗବାନଙ୍କର ପୂଜାସ୍ତୁତି କରିନିଏ । ତା'ପରେ ତମେ ପ୍ରସନ୍ନ ଚିତ୍ତରେ ମୋତେ ହତ୍ୟା କରିବ ।"

ଏହା ଶୁଣି ଘାତକ କହିଲା—"ଆମେ ଏତେ ସମୟ ଅପେକ୍ଷା କରିପାରିବୁ ନାହିଁ ।"

ସେଇ ଘାତକମାନଙ୍କ ମଧ୍ୟରେ ଯେ ମୁଖ୍ୟ ଥିଲା, ସେ ଏହା ଶୁଣି କହିଲା — "ଭଗବାନଙ୍କ ପୂଜା କରିବାକୁ ଚାହୁଁଛି ତ କରୁ । ଆମର ଆଉ କ'ଣ ବା କାମ ଅଛି ?"

ମୁଖିଆର କଥା ଶୁଣି ସମସ୍ତେ ସହମତ ହେଲେ । ସମୀପରେ ଏକ ଜଳସ୍ରୋତ ବହି ଯାଉଥିଲା । ଚନ୍ଦ୍ରହାସ ତହିଁରେ ସ୍ନାନ କଲା । ମୁଖ ମଧ୍ୟରୁ ଶାଳଗ୍ରାମଙ୍କର

Digitized by srujanika@gmail.com

ଶ୍ରୀହରିଙ୍କ ପାହାର କଲା । ବଧିବନ୍ତ୍ର ପୂଜା କଲା ଏବଂ ନେତ୍ର ବନ୍ଦକରି ଅତ୍ୟନ୍ତ କରୁଣା-ପୂରିତ ବାଣୀରେ ଭଗବାନଙ୍କର ସ୍ତୁତି ପାଠ କରିବାକୁ ଲାଗିଲା । ସେ ବୁଝୁଥିଲା ଯେ, ଏହା ମୋର ଅନ୍ତିମ ସ୍ତୁତି । ଏଣୁ ତା'ର ହୃଦୟ ଭରି ଉଠୁଥିଲା । ଇଚ୍ଛା ନ ଥିଲେ ମଧ୍ୟ ଉଭୟ ନେତ୍ରରୁ ଅଶ୍ରୁଧାରା ପ୍ରବାହିତ ହେଉଥିଲା । ଗଦ୍‌ଗଦ କଣ୍ଠରେ ସେ ମମତାପୂର୍ଣ୍ଣ ବାଣୀରେ ପ୍ରଭୁଙ୍କୁ ଡାକୁଥିଲା । ତା'ର କରୁଣ କ୍ରନ୍ଦନ ଓ ପ୍ରେମୋଦ୍ରେକ କାରଣରୁ ପଥର ମଧ୍ୟ ତରଳିଗଲା, ବାୟୁର ଗତି ବନ୍ଦ ହୋଇଗଲା । ପ୍ରକୃତି ସ୍ତବ୍ଧ ହୋଇଗଲା । ଘାତକମାନଙ୍କ ହୃଦୟରେ ମଧ୍ୟ ଦୟାଭାବ ଜାଗରିତ ହେଲା । ସେମାନେ ଭାବିବାକୁ ଲାଗିଲେ—"ମହାମନ୍ତ୍ରୀ କାହିଁକି ଏ ଫୁଲପରି କୋମଳ ବାଳକକୁ ମାରିବାକୁ ଚାହାନ୍ତି । ଏ କାହାର ବା କ'ଣ ଅପକାର କରିଥିବ । ଭଗବାନଙ୍କ ପ୍ରତି ଏ ବାଳକର କେତେ ଅନୁରାଗ ! ଏହାର ବୁଦ୍ଧି କେତେ ନିର୍ମଳ ! ଭଗବାନଙ୍କ ପ୍ରତି ଏହାର ଅନ୍ତରରେ କେତେ ଭକ୍ତି ନାହିଁ ? ଆମେ ଏହାକୁ ବିନା ଅପରାଧରେ କାହିଁକି ମାରିବା ?"

ଘାତକମାନେ ଏଭଳି ଭାବନା କରୁଥିବାବେଳେ ଚନ୍ଦ୍ରହାସ ପୂଜାନୁଷ୍ଠାନ ସମାପ୍ତ କରି ଘାତକମାନଙ୍କ ନିକଟକୁ ଆସିଲା ଏବଂ ଆପଣାର ସ୍ୱଭାବସୁଲଭ ସରଳ କଣ୍ଠରେ ବିନୟ ସହକାରେ କହିଲା—"ଭାଇମାନେ, ଏଇନେ ତୁମେମାନେ ମୋତେ ମାରିପାର ।"

ଏହା ଶୁଣି ସେହି ବୃଦ୍ଧ ମୁଖିଆ କହିଲା—"ପୁଅ, ମହାମନ୍ତ୍ରୀଙ୍କର ତୁ କ'ଣ ଅପରାଧ କରିଛୁ ? ସେ ତୋତେ କାହିଁକି ମାରିବାକୁ ଚାହାନ୍ତି ?"

ଚନ୍ଦ୍ରହାସ କହିଲା—"ଭାଇ, ମୁଁ ଆଦୌ ଜାଣି ନାହିଁ, ସେ କାହିଁକି ମୋତେ ମାରିବାକୁ ଇଚ୍ଛା କରିଛନ୍ତି । ସେ ତ ମୋତେ ସର୍ବଦା ପୁଅପରି ସ୍ନେହ କରନ୍ତି ।"

ଏହା ଶୁଣି ବୃଦ୍ଧ ମୁଖିଆ କହିଲା—"ଦେଖ, ତୁ ଭୁଲରେ ସୁଦ୍ଧା ମହାମନ୍ତ୍ରୀଙ୍କ ପାଖକୁ ଯିବୁ ନାହିଁ, ତା'ହେଲେ ଆମେ ତୋତେ ଜୀବିତ ଛାଡ଼ିଦେବୁ । କହ, ଆମ କଥା ମାନିବୁ ?"

ଚନ୍ଦ୍ରହାସ କହିଲା—"ଆଉ ମୋର ତାଙ୍କ ପାଖକୁ ଯିବାର କ'ଣ ଆବଶ୍ୟକତା ଅଛି । ଏଣିକି ମୁଁ ଏକାନ୍ତ ଜଙ୍ଗଲରେ ବିଚରଣ କରିବି ଏବଂ ଭଗବାନଙ୍କର ଭଜନ କରିବି ।"

ଚନ୍ଦ୍ରହାସର ସରଳତା ଓ ସୁକୁମାରତାରେ ମୁଗ୍ଧ ହୋଇ ଘାତକମାନେ ତାକୁ ମାରିବାକୁ ଇଚ୍ଛା କଲେ ନାହିଁ । ସେମାନଙ୍କ ମନରେ ମଧ୍ୟ ଦୟାର ଭାବ ସଞ୍ଚାର ହେଲା । ଚିହ୍ନ ନେବା ନିମନ୍ତେ ତା'ର ଯେଉଁ ଅଧିକ ଆଙ୍ଗୁଠିଟି ଥିଲା, ତାହା ସେମାନେ କାଟିନେଲେ । ଆଙ୍ଗୁଠି କଟିଯିବା ହେତୁ ବାଳକ ଅଚେତ ହୋଇ ପଡ଼ିଲା । ତାକୁ

Digitized by srujanika@gmail.com

ସେହି ଅବସ୍ଥାରେ ସେଠାରେ ଛାଡ଼ିଦେଇ ଘାତକମାନେ ନଗରକୁ ଚାଲିଗଲେ । ଚନ୍ଦ୍ରହାସ ସେହିଠାରେ ଅଚେତ ହୋଇ ପଡ଼ିରହିଲା । ମହାମନ୍ତ୍ରୀଙ୍କ ସମୀପକୁ ଯାଇ ଘାତକମାନେ ନିବେଦନ କଲେ - "ମହାରାଜ ! ଆମେ ଆପଣଙ୍କର ଆଜ୍ଞା ଅନୁସାରେ ସେ ବାଳକକୁ ମାରିଦେଲୁ । ଚିହ୍ନ ସ୍ୱରୂପ ତା'ର ଯେଉଁ ଅଧିକା ଆଙ୍ଗୁଠି ଥିଲା, ତାହା କାଟି ଆଣିଛୁ ।"

ତାହା ଶୁଣି ମହାମନ୍ତ୍ରୀ ସନ୍ତୁଷ୍ଟ ହେଲେ । ତାଙ୍କର ସନ୍ଦେହ କରିବାର କୌଣସି କାରଣ ହିଁ ନ ଥିଲା । ସେ ଭାବୁଥିବେ ଯେ, ଘାତକମାନେ ମୋର ଆଜ୍ଞାର ଉଲଂଘନ କରିପାରିବେ ନାହିଁ । ତେଣୁ ସେ ଶତ୍ରୁ ମରିଗଲା ବୋଲି ନିଶ୍ଚିନ୍ତ ହୋଇଗଲେ । ଯା'ର ରକ୍ଷା ଭଗବାନ କରନ୍ତି, ତାକୁ କେହି କୌଣସିମତେ ମାରିଦେଇ ପାରିବ ନାହିଁ । ଦୈବ ଗତିକୁ କେହି କୌଣସି ପୁରୁଷାର୍ଥ ଦ୍ୱାରା ଅନ୍ୟଥା କରିପାରିବ ନାହିଁ । ଚନ୍ଦ୍ରହାସର ସେହି ଅଶୁଭ ଲକ୍ଷଣ ଚାଲିଗଲା । ଷଷ୍ଠ ଆଙ୍ଗୁଠିଟି କଟିଯିବା ପରେ ତା'ର ଭାଗ୍ୟୋଦୟର ସମୟ ଉପସ୍ଥିତ ହେଲା । ସେ ଘୋର ଅରଣ୍ୟ ମଧ୍ୟରେ ଏକାକୀ ଅଚେତ ଅବସ୍ଥାରେ ପଡ଼ି ରହିଥିଲା । ଅନେକ ପକ୍ଷୀ ତାକୁ ଘେରି ପକ୍ଷ ମେଲାଇ ଛାୟା ପ୍ରଦାନ କରୁଥିଲେ । ସେ ସମୟରେ ଦୈବଯୋଗକୁ ମୃଗୟା ବିହାରରେ ଆସି କୁଳିନ୍ଦ ନରେଶ ସେଠାରେ ପହଞ୍ଚିଲେ ।

କୌଣସି ମୃଗର ଅନୁଧାବନ କରି ସେ ସୈନିକ ଓ ସାରଥିମାନଙ୍କଠାରୁ ବିଚ୍ଛିନ୍ନ ହୋଇଯାଇଥିଲେ । ସେ ସେଠାରେ ଏକାକୀ ଥିଲେ । ଘୋର ଜଙ୍ଗଲ ମଧ୍ୟରେ ସେ ଏକ ଅତ୍ୟନ୍ତ ସୁନ୍ଦର ସୁକୁମାର ବାଳକକୁ ପକ୍ଷୀମାନେ ଘେରି ରହିଥିବା ଦେଖିଲେ । ପକ୍ଷୀମାନେ ପକ୍ଷ ମେଲାଇ ତାକୁ ଛାୟା ପ୍ରଦାନ କରୁଥିଲେ । ରାଜା ସେଇ ବାଳକର ଦୈଵିକ ତେଜ ଦେଖି ବିସ୍ମିତ ହୋଇଗଲେ । ସେ ମନେ ମନେ ଭାବିଲେ - "ବାଲ୍ୟକାଳରେ ଯଦି ତା'ର ଏଭଳି ତେଜ, ତେବେ ବଡ଼ ହୋଇ ଏ କ'ଣ କରିବ ନାହିଁ !"

କୁଳିନ୍ଦ ନରେଶ କୁନ୍ତଳ ନରେଶଙ୍କର ମଣ୍ଡଳିକ କରଦ ରାଜା ଥିଲେ । ତାଙ୍କର କୌଣସି ସନ୍ତାନ ନ ଥିଲା । ଅରଣ୍ୟ ମଧ୍ୟରେ ସେ ସେହି ବାଳକକୁ ଦେଖି ତାଙ୍କର ଚିତ୍ତ ସ୍ୱତଃ ଆକର୍ଷିତ ହେଲା । ଯେତେବେଳେ ଯାହା ହେବାକୁ ଥାଏ, ଲୋକଙ୍କର ବୁଦ୍ଧି ମଧ୍ୟ ସେହିଭଳି ହୋଇଯାଏ । ଚନ୍ଦ୍ରହାସର ଏଇନେ ଅଭ୍ୟୁଦୟର ସମୟ ଆସି ଯାଇଛି । ରାଜା ତାକୁ ଆଦରରେ ଘରକୁ ନେଇଗଲେ । ରାଣୀ ଏକ ରୂପଲାବଣ୍ୟଯୁକ୍ତ ସୁନ୍ଦର ସୁକୁମାର ବାଳକକୁ ପାଇ ପରମ ପ୍ରସନ୍ନ ହେଲେ । ସେମାନେ ତାକୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିନେଲେ । ପ୍ରଜାମାନେ ଆନନ୍ଦୋତ୍ସବ କଲେ । ରାଜାରାଣୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ରାଜମହଲରେ ଚନ୍ଦ୍ରହାସ ଶୁକ୍ଳପକ୍ଷ ଚନ୍ଦ୍ରମା ସଦୃଶ ବଢ଼ିବାକୁ ଲାଗିଲା । ସେ ବାଲ୍ୟକାଳରୁ ସାଧୁ ସେବକ ତଥା ଭଗବତ୍

Digitized by srujanika@gmail.com

ଭକ୍ତ ଥିଲା । ଏଣୁ ସର୍ବତ୍ର ତା'ର ଭକ୍ତିର ଖ୍ୟାତି ବ୍ୟାପ୍ତ ହେଲା । ସବୁଠାରୁ ସନ୍ଥ ମହାତ୍ମା ଓ ପଣ୍ଡିତମାନେ ଆସି ତାଙ୍କୁ ଦର୍ଶନ ଦେବାକୁ ଲାଗିଲେ । ସେ ମଧ୍ୟ ତନ ମନ ଧନ ଦ୍ୱାରା ସମସ୍ତଙ୍କର ଯଥୋଚିତ ସେବା କରେ । ଆଉ କ'ଣ, ତା'ପରେ ରାଜପ୍ରାସାଦରେ ସାଧୁ, ସନ୍ଥ ସର୍ବଦା ପଦାର୍ପଣ କରିବାକୁ ଲାଗିଲେ । ସର୍ବତ୍ର କଥା କୀର୍ତ୍ତନର ଅନୁଷ୍ଠାନ ଓ ନିତ୍ୟ ଉତ୍ସବର ଆୟୋଜନ ହେବାକୁ ଲାଗିଲା ।

କୁଳିନ୍ଦ ନରେଶ ପୁତ୍ରର ଏଭଳି ବ୍ୟବହାର ହେତୁ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ । ଚନ୍ଦ୍ରହାସ ଯେତେ ଅଧିକ ବ୍ୟୟ କରୁଥିଲା, ତାଙ୍କର ଆନନ୍ଦ ଯେତେ ଅଧିକ ହେଉଥିଲା । ସେଇ କାରଣରୁ କୁଳିନ୍ଦ ନରେଶଙ୍କଠାରୁ କେତେ ବର୍ଷ ଧରି ରାଜ୍ୟ କର ଯାଇପାରିଲା ନାହିଁ ।

ଥରେ ମହାମନ୍ତ୍ରୀ ଧୃଷ୍ଟବୁଦ୍ଧି ରାଜାଙ୍କୁ କହିଲେ—"ପ୍ରଭୁ ! ଆମର ସମସ୍ତ ମଣ୍ଡଳିକ ରାଜା ନିଶ୍ଚିତ ସମୟରେ କର ପଠେଇ ଦେଉଛନ୍ତି; ମାତ୍ର କୁଳିନ୍ଦ ନରେଶ ଅନେକ ବର୍ଷ ହେଲା ପଠାଉ ନାହାନ୍ତି । ଆଦେଶ ହେଲେ ଆକ୍ରମଣ କରି ତାଙ୍କୁ ବନ୍ଦୀ କରି ନେଇ ଆସିବି । ମୋର ପୁତ୍ରୀ ମଧ୍ୟ ବର୍ତ୍ତମାନ ଯୁବତୀ । ତାହା ନିମନ୍ତେ ଯୋଗ୍ୟ ବର ଅନୁସନ୍ଧାନ ମଧ୍ୟ କରିବି ।"

କୁନ୍ତଳ ନରେଶ ନିଜେ ଧର୍ମାତ୍ମା ଥିଲେ । ସେ ଶୁଣିଥିଲେ ଯେ ଏବେ କୁଳିନ୍ଦ ନରେଶ ଦାନ ପୁଣ୍ୟ କରିଛନ୍ତି । ସେ ଏକ ଦତ୍ତକ ପୁତ୍ର ମଧ୍ୟ ଗ୍ରହଣ କରିଛନ୍ତି । ତେଣୁ ସେ ପ୍ରଧାନ ମନ୍ତ୍ରୀଙ୍କୁ କହିଲେ—"ମନ୍ତ୍ରୀ ମହାଶୟ, ଯଦି କୌଣସି ବ୍ୟସନ ହେତୁ ରାଜ୍ୟକର ଦେଉ ନ ଥାନ୍ତେ, ତେବେ ଆକ୍ରମଣ କରିବା ଉଚିତ ହୁଅନ୍ତା । ସେ ସାଧୁ ସେବା କରୁଛନ୍ତି । ଏଣୁ ଆପଣ ସେନା ନେଇ ତାଙ୍କର ରାଜ୍ୟକୁ ଘେରି ଯାଆନ୍ତୁ, କେବଳ ମାତ୍ର ଭୟ ଦେଖେଇ ଯେତେ ହେଉଛି କମ୍ ବେଶି ନେଇ ଆସନ୍ତୁ । ତାଙ୍କର କୌଣସି ପ୍ରକାର କ୍ଷତି କରିବେ ନାହିଁ ।

ମୁଁ ଶୁଣିଛି, ରାଜା ଏକ ଦତ୍ତକ ପୁତ୍ର ଗ୍ରହଣ କରିଛନ୍ତି । ଯଦି ସେ ଯୋଗ୍ୟ, ତେବେ ତାଙ୍କୁ ଯୁବରାଜ କରିଦେବେ ଏବଂ ସେ ଯଦି ଆପଣଙ୍କ ପୁତ୍ରୀର ଯୋଗ୍ୟ ବୋଲି ମନେକରନ୍ତି, ତେବେ ସେ ବିଷୟରେ ମଧ୍ୟ ଚିନ୍ତା କରିବେ ।"

ରାଜାଙ୍କର ଏଭଳି ଆଜ୍ଞା ଶୁଣି ଧୃଷ୍ଟବୁଦ୍ଧି ଚତୁରଙ୍ଗିଣୀ ସେନା ନେଇ ସଦଳ-ବଳ କୁଳିନ୍ଦ ଦେଶର ରାଜଧାନୀରେ ଉପସ୍ଥିତ ହେଲେ । ସେ ରାଜାଙ୍କର ଦୁର୍ଗ ଘେରିଯାଇ ଯୁଦ୍ଧବାଦ୍ୟ ବଜେଇବାକୁ ଲାଗିଲେ ।

କୁଳିନ୍ଦ ନରେଶ ପ୍ରଥମରୁ ଡରି ରହିଥିଲେ । ସେ ଧୃଷ୍ଟବୁଦ୍ଧି କଭଳି କ୍ରୂରମନ୍ତ୍ରୀ, ତାହା ଜାଣିଥିଲେ । ଯଦି ଯୁଦ୍ଧ ହେବ, ତା'ହେଲେ ସେ ଉଦ୍ଧାର ପ୍ରାପ୍ତ ହୋଇପାରିବେ ନାହିଁ । ତେଣୁ ସେ ଚନ୍ଦ୍ରହାସ ହାତରେ ଅନେକ ଉପହାର ସାମଗ୍ରୀ ଧୃଷ୍ଟବୁଦ୍ଧି ନିକଟକୁ ପଠେଇ ଆପଣାର ଅପରାଧ ନିମନ୍ତେ କ୍ଷମା ପ୍ରାର୍ଥନା କଲେ ।

Digitized by srujanika@gmail.com

ଧୃଷ୍ଟବୁଦ୍ଧି ତାହା ହିଁ ଚାହୁଁଥିଲା । ଯୁଦ୍ଧ କରିବାପାଇଁ ସେ ରାଜାଙ୍କର ଆଜ୍ଞାପ୍ରାପ୍ତ ହୋଇ ନଥିଲା । କୁଳିନ୍ଦ ନରେଶଙ୍କର ଏ ବ୍ୟବହାରରେ ସେ ପ୍ରସନ୍ନ ହେଲା । ଚନ୍ଦ୍ରହାସଙ୍କୁ ଦେଖିବା ମାତ୍ରକେ ସେ ଆଶ୍ଚର୍ଯ୍ୟ ଚକିତ ହେଲା । ତା'ର ବାରମ୍ବାର ସନ୍ଦେହ ଜାତ ହେଲା, ହେଉ ନ ହେଉ ଇଏ ବୋଧହୁଏ ସେଇ ପିଲା । ବାରବର୍ଷର ବାଳକ ଚନ୍ଦ୍ରହାସ ଅଠର ବର୍ଷର ହୋଇ ସାରିଥିଲା । ତା'ର ଚେହେରା କିଛି ବଦଳି ଯାଇଥିଲା । ମହାମନ୍ତ୍ରୀ ରାଜାଙ୍କୁ ଡାକି ସ୍ନେହରେ କହିଲେ—"ମହାରାଜ, ମୁଁ ତ କେବଳ ମାତ୍ର ଭୟ ପ୍ରଦର୍ଶନ କରୁଥିଲି । ଆପଣ ଅନେକ ବର୍ଷ ହେଲା କର ଦେଇ ନାହାନ୍ତି । କିଛି କଥା ନାହିଁ । ଆପଣ ଯେତେ ପାରିବେ, ଦେଇ ଦିଅନ୍ତୁ । ଅବଶିଷ୍ଟ ମୁଁ ମହାରାଜାଙ୍କୁ କହି ଛାଡ଼ କରାଇଦେବି । ଆପଣ ଏ କୁମାର କେଉଁଠାରୁ ଗ୍ରହଣ କଲେ ?"

ମନ୍ତ୍ରୀ ପଚାରିଲାରୁ ରାଜା ସମସ୍ତ ବୃତ୍ତାନ୍ତ ଠିକ ଠିକ କହିଗଲେ । ସେ କଭଲି ମୃଗୟା ଉଦ୍ଦେଶ୍ୟରେ ଯାଇଥିଲେ । ସେଠାରେ କେଉଁଭଳି ପକ୍ଷୀ ଘେରି ରହିଥିବା ଅବସ୍ଥାରେ ଏ ବାଳକ ପ୍ରାପ୍ତ ହେଲା । ତା'ର ଗୋଟିଏ ଆଙ୍ଗୁଠି କଟା ଯାଇଥିଲା । ସେଥିରୁ ରକ୍ତ ବହୁଥିଲା । ସେ ତାକୁ ନେଇଆସି ଦତ୍ତକ ପୁତ୍ର ଭାବରେ ଗ୍ରହଣ କରିଛନ୍ତି । ଆପଣ ମହାରାଜଙ୍କୁ କହି ଯୁବରାଜ ଭାବରେ ସ୍ୱୀକୃତି ପ୍ରଦାନ କରନ୍ତୁ, ଯେପରି ସେ ରାଜ୍ୟର ଅଧିକାରୀ ହେବ ।"

ଧୃଷ୍ଟବୁଦ୍ଧି ଏହା ଶୁଣି ମନେ ମନେ ଜଳି ଉଠିଲେ । ତାଙ୍କର ଈର୍ଷାବୃତ୍ତି ଜାଗରିତ ହୋଇଉଠିଲା । ସେ ମନେ ମନେ ସ୍ଥିର କରିନେଲେ ଯେ, ଯେ କୌଣସିମତେ ଏ ଦୁଷ୍ଟକୁ ମାରିବାକୁ ହେବ । ତେବେ ଖୋଲା ଖୋଲି ଭାବରେ କେମିତି ମରେଇବେ ? ତେଣୁ ସେ ତାଙ୍କର ମନୋଗତ ଭାବ ଗୋପନ ରଖି ପ୍ରକାଶ୍ୟରେ ପ୍ରସନ୍ନ ହୋଇ କହିଲେ—"ଭଲ କଥା, ବାଳକଟି ଭାରି ସୁଶୀଳ, ଯୋଗ୍ୟ ଓ ଉତ୍ସାହୀ ମନେ ହେଉଛି । ମୁଁ ମୋର ପୁତ୍ର ପାଖକୁ ଏକ ପତ୍ର ଲେଖି ଦେଉଛି, ତାକୁ ଧରି ସେ ଏକାକୀ ଚାଲିଯାଉ । ସେଠାରେ ମୋର ପୁତ୍ର ଏହାକୁ ରାଜାଙ୍କ ସମ୍ମୁଖରେ ଉପସ୍ଥିତ କରାଇବ । ମହାରାଜ ଏହାକୁ ଯୁବରାଜ ଭାବରେ ସ୍ୱୀକାର କରିନେବେ ଏବଂ ସମ୍ଭବତଃ କରଦ ରାଜା ସ୍ଥାନରେ ସ୍ୱତନ୍ତ୍ର ରାଜାର ମାନ୍ୟତା ମଧ୍ୟ ପ୍ରଦାନ କରିବେ ।"

ସରଳ ରାଜାଙ୍କୁ ମନ୍ତ୍ରୀଙ୍କର କପଟତାର ଅନୁମାନ ସୁଦ୍ଧା ହେଲା ନାହିଁ । ସେ କଥା ସହର୍ଷ ସ୍ୱୀକାର କରିନେଲେ । ମନ୍ତ୍ରୀ ପୁଅ ନାମରେ ଏକ ଗୁପ୍ତ ପତ୍ର ଲେଖି ଦେଲେ । ସେହି ପତ୍ରରେ କେବଳମାତ୍ର ଏହି ଗୋଟିଏ ଶ୍ଳୋକ ଥିଲା—

ବିଷମସ୍ମୈ ପ୍ରଦାତବ୍ୟଂ ହତ୍ୱା ମଦନ ଶତ୍ରବେ ।
କାର୍ଯ୍ୟାକାର୍ଯ୍ୟ ନ କର୍ତ୍ତବ୍ୟଂ କର୍ତ୍ତବ୍ୟଂ କଲ ମେ ପ୍ରିୟମ୍ ॥

Digitized by srujanika@gmail.com

ଏହାର ଅର୍ଥ ହେଲା—"ହେ ପୁତ୍ର ମଦନ, ଏହି ଶତ୍ରୁକୁ ତୁ ତତ୍କାଳ ବିଷ ଦେବୁ । ଏଥିରେ କର୍ତ୍ତବ୍ୟାକର୍ତ୍ତବ୍ୟର ବିଚାର କରିବୁ ନାହିଁ । ତୁ ମୋର ଏହି ପ୍ରିୟ କାର୍ଯ୍ୟଟି ଅବଶ୍ୟ କରିଦେବୁ ।"

ଏଇଭଳି ପତ୍ର ଦେଇ ସଉମୁଦ କରି ଉପରେ ମଦନର ନାମ ଲେଖି ସେ ଚନ୍ଦ୍ରହାସକୁ ଦେଇ କହିଲେ—"ତମେ କାଲି ପ୍ରାତଃକାଳରୁ ଉଠି ଚାଲିଗଲେ ଦ୍ୱିପ୍ରହର ପର୍ଯ୍ୟନ୍ତ ସେଠାରେ ପହଞ୍ଚିଯିବ । ମୋର ପୁତ୍ର ଯେତେବେଳ ପର୍ଯ୍ୟନ୍ତ ଫେରିବାକୁ କହିନାହିଁ, ତୁମେ ସେଠାରେ ରହିବ ।"

ମହାମନ୍ତ୍ରୀଙ୍କ କଥା ଶୁଣି ରାଜକୀୟ ବସ୍ତ୍ରାଲଙ୍କାରରେ ସଜ୍ଜିତ ହୋଇ ଚନ୍ଦ୍ରହାସ ଆପଣାର ସୁନ୍ଦର ଧଳାଘୋଡ଼ା ଚଢ଼ି କୁନ୍ତଳପୁର ଅଭିମୁଖରେ ବାହାରିଲା । ସେ ତ ସ୍ୱଭାବତଃ ସୁନ୍ଦର ଥିଲା । ତଦୁପରି ରାଜଦରବାରକୁ ଯିବା ନିମନ୍ତେ ସେ ସାବଧାନତା ସହକାରେ ସଜବାଜ ହୋଇଥିଲା । ଯୁବାବସ୍ଥାର ଲାବଣ୍ୟ ତା'ର ମୁଖମଣ୍ଡଳରେ ଉଛୁଳି ଉଠୁଥିଲା । ସେ କାମଦେବ ସଦୃଶ ଦେଖାଯାଉଥିଲା । ତା'ର ଅଙ୍ଗ ପ୍ରତ୍ୟଙ୍ଗରୁ ସୌନ୍ଦର୍ଯ୍ୟର ଆଭା ଫୁଟି ଉଠୁଥିଲା । ସେ ମୂର୍ତ୍ତିମାନ ସୌନ୍ଦର୍ଯ୍ୟ ସଦୃଶ ମନେ ହେଉଥିଲା । ଯାଉ ଯାଉ ଦ୍ୱିପହର ହେଲା । ଖରାଦିନ । ମାର୍ଗଶ୍ରମ ହେତୁ ସେ କ୍ଳାନ୍ତ ହୋଇପଡ଼ିଥିଲା । ଶୋଷ ମଧ୍ୟ ହେଉଥିଲା । ସମୀପରେ ସେ ଏକ ପୁଷ୍ପବାଟିକା ଦେଖିଲା । ସ୍ୱଚ୍ଛଜଳରେ ପରିପୂର୍ଣ୍ଣ ଏକ ପୁଷ୍କରିଣୀ ମଧ୍ୟ ଥିଲା । ଏକ ବଡ଼ ବୃକ୍ଷର ଡାଳରେ ସେ ଘୋଡ଼ା ବାନ୍ଧି ଦେଲା । ପୁଷ୍କରିଣୀରେ ହାତପାଦ ଧୋଇ, ମନଭରି ପାଣିପିଇ ସେଇ ସମୀପସ୍ଥ ବୃକ୍ଷ ଛାୟାରେ ବିଶ୍ରାମ କଲା । ମାର୍ଗଶ୍ରମ ହେତୁ ତା'ର ନିଦ ହୋଇଗଲା ଏବଂ ସେ ଗଭୀର ନିଦ୍ରାରେ ଶୋଇପଡ଼ିଲା ।

ସେହି ପୁଷ୍ପବାଟିକା ମହାମନ୍ତ୍ରୀ ଧୃଷ୍ଟବୁଦ୍ଧିଙ୍କର । ସଂଯୋଗର କଥା ଯେ ସେଦିନ ମହାମନ୍ତ୍ରୀଙ୍କର ଅଲଅଲ ଝିଅ ବିଷୟା ସଖୀମାନଙ୍କ ସଙ୍ଗରେ ପୁଷ୍ପବାଟିକାକୁ କ୍ରୀଡ଼ା କରିବା ଉଦ୍ଦେଶ୍ୟରେ ଆସିଥିଲା । ତା'ର ସଖୀମାନେ ଏଣେତେଣେ ଜଳ ବିହାର ଏବଂ ନାନା କ୍ରୀଡ଼ା କରୁଥିଲେ । ସେ ଏକାକୀ ବୁଲୁ ବୁଲୁ ସେଠାରେ ପହଞ୍ଚିଲା, ଯେଉଁଠାରେ ଚନ୍ଦ୍ରହାସ ଶୋଇପଡ଼ିଥିଲା ।

ବିଷୟା ଚଉଦ ବର୍ଷ ପୂର୍ତ୍ତିକରି ପନ୍ଦର ବର୍ଷରେ ପଦାର୍ପଣ କରିଥିଲା । ଯୌବନ ତାହା ସହିତ ଲୁଚକାଳି ଖେଳୁଥିଲା । ସେ ତା'ର ଅବ୍ୟକ୍ତ ପ୍ରେରଣାର କାରଣରୁ ତା'ର ସଙ୍କେତରେ ନାଚିବାକୁ ବିବଶ ଥିଲା । ତା'ର ଚଞ୍ଚଳତାରେ ମାଦକତା ଥିଲା, ନେତ୍ରର ଚପଳତା ଅଧିକତର ହୋଇଥିଲା । ହୃଦୟ କାହାପାଇଁ ବ୍ୟାକୁଳ ହେଉଥିଲା । ଅନ୍ତଃକରଣରୁ ଏକ ଅବ୍ୟକ୍ତ ମଧୁର ବେଦନା ଉଠି ତା'ର ଅଙ୍ଗ ପ୍ରତ୍ୟଙ୍ଗର ଅପୂର୍ବ ଶିହରଣ ଜାତ କରୁଥିଲା । ଦୂରରୁ ସେ କାମଦେବ ସଦୃଶ ସାକାର ସୌନ୍ଦର୍ଯ୍ୟ ସ୍ୱରୂପ ସେଇ ଯୁବକଙ୍କୁ ବୃକ୍ଷ ଛାୟାରେ ବିନା ଶଯ୍ୟାରେ ଭୂମି ଉପରେ ଶୋଇଥିବା ଦେଖିଲା ।

Digitized by srujanika@gmail.com

କରୁଣା, ସ୍ନେହ ଉତ୍କଣ୍ଠା ଏବଂ ଅନେକ ଭାବ ଏକା ସାଙ୍ଗରେ ଉଦୟ ହେବା ଫଳରେ ଶନା ସଙ୍କୋଚରେ ସେ ତା'ର ସମୀପରେ ଉପସ୍ଥିତ ହେଲା ।

ଯୁବକ ଗଭୀର ନିଦ୍ରାରେ ଶୋଇପଡ଼ିଥିଲା । ଏଭଳି ମନେ ହେଉଥିଲା ଯେପରି ପୂର୍ଣ୍ଣ ଚନ୍ଦ୍ରରେ ଦୁଇଟି କମଳ ପୁଷ୍ପ ମୁଦ୍ରିତ ହୋଇ ରହିଥିଲା । ତା'ର ଅଙ୍ଗ ପ୍ରତ୍ୟଙ୍ଗରୁ ସୌନ୍ଦର୍ଯ୍ୟର କରଣ ଫୁଟି ସେହି ପୁଷ୍ପବାଟିକାକୁ ଆଲୋକିତ କରୁଥିଲା । ଯୁବକକୁ ଜଣା-ନ ଥିଲା ଯେ କେହି ଲୁଚିରହି ତା'ର ସୌନ୍ଦର୍ଯ୍ୟ ସୁଧାପାନ କମ୍ପିତ ହୋଇ କରୁଅଛି । ତା'ର ମୁଖମଣ୍ଡଳକୁ ଦେଖୁଁ ଦେଖୁଁ ବିଷୟାର ଦୃଷ୍ଟି ତା'ର ମୁକୁଟ ପାଶର ପଛପଟେ ବନ୍ଧା ହୋଇଥିବା ପତ୍ର ଉପରେ ପଡ଼ିଲା । ସେ କୁତୂହଳୀ ହୋଇ ଧୀରେ ଧୀରେ ସେଇ ପତ୍ର ଖୋଲିନେଲା । ଦେଖିଲା ଷଣି ବିସ୍ମିତ ହେଲା । ତା' ଉପରେ ତା'ର ପିତାଙ୍କର ମୁଦ୍ରିକାର ଚିହ୍ନ ଥିଲା ।

ପିତା ପୂର୍ବରୁ ଧୃଷ୍ଟବୁଦ୍ଧି ପତ୍ନୀଙ୍କୁ କହୁଥିଲେ—"ବିଷୟା ଏଇନେ ବଡ଼ହୋଇ ଯାଇଛି । ଏ ବର୍ଷ ଯେଉଁଭଳି ହେଉ ତା'ର ବିବାହ କରିବାକୁ ହେବ । ମୁଁ କୁନ୍ତଳ ଦେଶକୁ ଯାଉଛି । ସେଠାରେ କୌଣସି ଯୋଗ୍ୟବର ଦେଖିଲେ ପ୍ରସ୍ତାବ ନିଶ୍ଚିତ କରି ଆସିବି ।" ମାତାପିତାଙ୍କ ମଧ୍ୟରେ ଯେତେବେଳେ ଏକଥା ହେଉଥିଲା, ସେ ତାହା ଲୁଚି ରହି ଶୁଣିଥିଲା । ସହସା ସେହି କଥା ସ୍ମରଣ କରି ତା'ର ଉତ୍ସୁକତା ଆହୁରି ବଢ଼ିଗଲା । ପିତା ମୋ ପାଇଁ କେଉଁ ବର ନିର୍ଣ୍ଣୟ କରିଛନ୍ତି । ଯଦି ପିତା ମୋ ପାଇଁ ଏହାଙ୍କୁ ପଠେଇଛନ୍ତି ତା'ହେଲେ ମୋର ଜୀବନ ସଫଳ ହେଲା । ଯଦି ଏହାଙ୍କ ବ୍ୟତୀତ ଅନ୍ୟ କେହି ହୋଇଥାଏ, ତେବେ ମୁଁ ବର୍ତ୍ତମାନ ବିଷ କିଣି ଖାଇ ପ୍ରାଣତ୍ୟାଗ କରିବି ।

ଏହା ଭାବି ସେ ଧୀରେ ଧୀରେ ସେ ପତ୍ରର ଆବରଣ ଖୋଲିଲା । ସେଥିରେ ଲେଖାଥିଲା ।

ବିଷମସ୍ମୈ ପ୍ରଦାତବ୍ୟଂ ତ୍ୱୟା ମଦନ ଶର୍ମଦେ ।

କାର୍ଯ୍ୟାକାର୍ଯ୍ୟ ନ କର୍ତ୍ତବ୍ୟଂ କର୍ତ୍ତବ୍ୟଂ କାଳ ମେ ପ୍ରିୟମ ॥

ବିଷୟା ଥରେ ପଢ଼ିଲା, ଦୁଇଥର ପଢ଼ିଲା, ତିନିଥର ପଢ଼ିଲା । ସେ ବୁଝି-ପାରିଲା ନାହିଁ, କାହିଁକି ତା'ର ପିତା ଏତେ ସୁନ୍ଦର ଓ ସୁକୁମାର ଯୁବକକୁ ବିଷଦେଇ ହତ୍ୟା କରିବାପାଇଁ କହିଛନ୍ତି । ପୁଣି ଭାବିଲା —ଲେଖିବାର ବୋଧହୁଏ ଭୁଲକରି ଦେଇଛନ୍ତି । ସେ "ବିଷୟାସ୍ମୈ ପ୍ରଦାତବ୍ୟଂ ତ୍ୱୟା ମଦନଶର୍ମଦେ" ଏପରି ଲେଖିଥାନ୍ତେ । ପିତାଙ୍କର ଏଇ ଭୁଲ ସୁଧାରିଦେବା ଉଚିତ । ଏହା ଭାବି ସେ ନଖ-ଦ୍ୱାରା କଜ୍ଜଳରେ 'ମ'କୁ 'ୟା' କରିଦେଲା ଏବଂ ମଦନ ତଥା ଶର୍ମଦେ ଦୁଇ ପୃଥକ୍ ଶବ୍ଦ ଥିଲେ ସେମାନଙ୍କୁ ମିଶେଇ ସମାସାନ୍ତ ପଦ କରିଦେଲା । ତା'ପରେ ତା'ର ଅର୍ଥ

Digitized by srujanika@gmail.com

ହେଲା "କାମଦେବଙ୍କୁ ମଧ୍ୟ ଆପଣାର ସୌନ୍ଦର୍ଯ୍ୟ ଦ୍ୱାରା ତିରସ୍କୃତ କରୁଥିବା ଏହି ବିଷୟା ପ୍ରଦାନ କରିବ । ଅର୍ଥାତ୍ ଏହି ଯୁବକ ସହିତ ବିଷୟାର ବିବାହ କରାଇ ଦେବ। ଏହି କାର୍ଯ୍ୟପାଇଁ କର୍ତ୍ତବ୍ୟାକର୍ତ୍ତବ୍ୟର ବିଚାର କରିବ ନାହିଁ । ମୋର ପ୍ରସନ୍ନତା ନିମନ୍ତେ ଏହି କାର୍ଯ୍ୟ ଶୀଘ୍ର ସମ୍ପନ୍ନ କରିବ ।"

ସେପରି କରିଦେଇ, ପତ୍ରକୁ ପୂର୍ବଭଳି ବନ୍ଦ କରିଦେଇ ସେ ଯୁବକର ପାଗରେ ପୂର୍ବଭଳି ବାନ୍ଧିଦେଲା । କିଛି ସମୟ ପରେ ଯୁବକର ନିଦ୍ରାଭଙ୍ଗ ହେଲା । ସେ ତୁରନ୍ତ ଉଠିପଡ଼ି ଘୋଡ଼ାଚଢ଼ି ଚାଲିଗଲା । ସେ ତ ପୂର୍ବରୁ ଘର ଦେଖିଥିଲା । ସେ ଘରେ ପହଞ୍ଚି ମନ୍ତ୍ରୀପୁତ୍ର ମଦନଙ୍କୁ ଭେଟିଲା । ଚନ୍ଦ୍ରହାସଙ୍କୁ ରାଜକୁମାର ଭଳି ବେଶଭୂଷାରେ ଦେଖି ମଦନ ଅତ୍ୟନ୍ତ ପ୍ରସନ୍ନ ହେଲା । ମଦନ ଅତ୍ୟନ୍ତ ସଜ୍ଜନ ଓ ସ୍ନେହୀ ଯୁବକ । ଆପଣାର ପିତାଙ୍କର ପତ୍ର ପଢ଼ି ସେ ଅଧିକ ଆନନ୍ଦିତ ହେଲା । ସେ ତୁରନ୍ତ ପୁରୋହିତ ଡାକି ବିଷୟାର ବିବାହ ଲଗ୍ନ ସମ୍ବନ୍ଧରେ ପ୍ରଶ୍ନ କଲା ।

ପୁରୋହିତ କହିଲେ—"ଆସନ୍ତାକାଲି ହିଁ ସର୍ବଶ୍ରେଷ୍ଠ ମୁହୂର୍ତ୍ତ ଅଛି । ଆପଣଙ୍କର ପିତାଙ୍କର ଆଦେଶ 'ତୁରନ୍ତ ମୋର ପ୍ରିୟକାର୍ଯ୍ୟ ସମ୍ପନ୍ନ ହେଉ' । ଏଣୁ ଆସନ୍ତାକାଲି ବିବାହ କରିଦେବା ଉଚିତ ହେବ । ଉତ୍ସବ ଆଦି ପିତା ଫେରିବା ପରେ କରାଯିବ ।"

ମଦନ ମଧ୍ୟ ତାହା ହିଁ ଚାହୁଁଥିଲା । ସେ ତୁରନ୍ତ ସବୁ ବ୍ୟବସ୍ଥା କରିଦେଲା । ତା'ପରଦିନ ଉଭୟଙ୍କର ବିବାହ ମହା ଆଡ଼ମ୍ବରରେ ସମ୍ପନ୍ନ ହେଲା ।

ଏଣେ ମନ୍ତ୍ରୀ ଭାବିନେଲେ ଚନ୍ଦ୍ରହାସ ନିଶ୍ଚୟ ମରି ଯାଇଛି । ଏଣୁ ସେ ସେନା ସହିତ କୁନ୍ତଳପୁରୀକୁ ଫେରି ଆସିଲେ । ସେ ନଗରରେ ପଦାର୍ପଣ କରିବା ମାତ୍ରକେ ସୂତ, ମାଗଧ, ବନ୍ଦୀ, ଭିକ୍ଷୁକ ତଥା ବେଦଜ୍ଞ ବ୍ରାହ୍ମଣମାନେ ତାଙ୍କର ଜୟ ବିଜୟକାର କଲେ ଏବଂ ପୁତ୍ରୀ ନିମନ୍ତେ ସୁନ୍ଦର ବରପ୍ରାପ୍ତିର ଉପଲକ୍ଷ୍ୟରେ ଆନନ୍ଦ ପ୍ରକାଶ କରି ବଧେଇ ଜଣାଇଲେ ।

ଧୃଷ୍ଟବୁଦ୍ଧି ଆଶ୍ଚର୍ଯ୍ୟ ଚକିତ ହେଲା । ପୁତ୍ରୀକୁ କିପରି ଏବଂ କେବେ ପତିପ୍ରାପ୍ତ ହେଲା, ତାହା ସେ ଆଦୌ ବୁଝିପାରିଲା ନାହିଁ । ସେ ନିଜର କୁଳ ପୁରୋହିତଙ୍କୁ ପଚାରିଲା—"ପୁରୋହିତ ମହାଶୟ, କଥା କ'ଣ ?"

ପୁରୋହିତ କହିଲେ—"ଅନ୍ନଦାତା, କାଲି ମହା ଆଡ଼ମ୍ବରରେ ଭାଗ୍ୟବତୀ ବିଷୟାଙ୍କର ପରିଣୟ ହୋଇଯାଇଛି । ଚିରଞ୍ଜୀବ ମଦନ ସମସ୍ତଙ୍କୁ ଯଥେଷ୍ଟ ଦାନ ଦକ୍ଷିଣା ପ୍ରଦାନ କରିଛନ୍ତି । ସମସ୍ତେ ତାଙ୍କର ଉଦାରତା ହେତୁ ଅତ୍ୟନ୍ତ ପ୍ରସନ୍ନ ହୋଇଛନ୍ତି । ଏ ସବୁ ଆପଣଙ୍କର ପୁଣ୍ୟର ପ୍ରତାପ ମାତ୍ର ।"

Digitized by srujanika@gmail.com

ଏହା ଶୁଣି ମନ୍ତ୍ରୀ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ମହଲରେ ପହଞ୍ଚିଲାରୁ ସମସ୍ତେ ପ୍ରଣାମ କଲେ । ଚନ୍ଦ୍ରହାସ ମଧ୍ୟ ନବବଧୂ ବିଷୟା ସହିତ ଆସି ଶ୍ୱଶୁରଙ୍କର ଚରଣରେ ପ୍ରଣାମ କରିବାକୁ ଦାସ-ଦାସୀ ପରିବୃତ୍ତ ହୋଇ ଆସିଲେ । ଧୃଷ୍ଟବୁଦ୍ଧି ଉପର ମନରେ ଉଭୟଙ୍କୁ ଆଶୀର୍ବାଦ ଦେଲା; ମାତ୍ର ଭିତରେ ଭିତରେ ତା'ର ପ୍ରବଳ ଦ୍ୱେଷାଗ୍ନି ଜଳି ଉଠୁଥିଲା । ସେ ମନେ ମନେ ନିଷ୍ପତ୍ତି କରିନେଲା, ଆପଣା ଝିଅ ବିଧବା ହେଉ ପଛକେ, ଶତ୍ରୁର ବିନାଶ ଅବଶ୍ୟ କରିବ । ଏହାକୁ ଜୀବିତ ରଖିବ ନାହିଁ ।

ଏହା ପରେ ସେ ଘାତକଙ୍କୁ ଡାକିଲା ଏବଂ କହିଲା—"ସୂର୍ଯ୍ୟାସ୍ତ ପରେ ଯେ ଭଦ୍ରକାଳୀଙ୍କର ମନ୍ଦିରକୁ ପୂଜାଥାଳି ନେଇ ଯିବ, ତୁମେମାନେ ତା'ର ଶିରଚ୍ଛେଦନ କରି ଚାଲି ଆସିବ ।"

ଘାତକମାନେ ତ କେବଳ ମାତ୍ର ଚାକର, ସେମାନେ ସ୍ୱୀକାର କଲେ । ତେଣେ ଧୃଷ୍ଟବୁଦ୍ଧି ଚନ୍ଦ୍ରହାସକୁ ଡାକି କହିଲା—"ଦେଖ, ଆମ ଏଠାକାର ଲୋକାଚାର ଅନୁସାରେ ବିବାହର ଦ୍ୱିତୀୟ ଦିନ ଜାମାତା ଏକାକୀ ଯାଇ ଭଦ୍ରକାଳୀଙ୍କର ପୂଜା କରିଥାଏ । ତେଣୁ ତୁମେ ସୂର୍ଯ୍ୟାସ୍ତ ପରେ ଭଦ୍ରକାଳୀଙ୍କର ମନ୍ଦିରକୁ ଯିବ । ସେଠାରେ ଭଦ୍ରକାଳୀଙ୍କର ପୂଜା ଆରାଧନା କରି ସ୍ତୁତିପାଠ କରି ଚାଲି ଆସିବ ।" ଚନ୍ଦ୍ରହାସର ମନରେ ତ ଛନ୍ଦ କପଟ କିଛି ନ ଥିଲା, ସୂର୍ଯ୍ୟାସ୍ତ ହେବାପରେ ସେ ମନ୍ତ୍ରୀ ଦେଇଥିବା ପୂଜାଥାଳି ଧରି ମନ୍ଦିରକୁ ବାହାରିଲା । ଭଦ୍ରକାଳୀଙ୍କ ମନ୍ଦିର ଦୂର ଅରଣ୍ୟ ମଧ୍ୟରେ ଥିଲା; ତଥାପି ମଧ୍ୟ ସେ ମନ୍ତ୍ରୀଙ୍କର ନିର୍ଦ୍ଦେଶ ଅନୁସାରେ ଚାଲି ଚାଲି ଗଲା ।

ତେଣେ କୁନ୍ତଳ ନରେଶଙ୍କ ପାଖକୁ ଯାଇ ଲୋକେ ମହାମନ୍ତ୍ରୀଙ୍କର ଭାଗ୍ୟର ପ୍ରଶଂସା କରିବାକୁ ଲାଗିଲେ । ଚନ୍ଦ୍ରହାସର ଶୀଳ, ସୌନ୍ଦର୍ଯ୍ୟ, ସ୍ୱଭାବର ଭୂୟସୀ ପ୍ରଶଂସା କଲେ । ରାଜା ମନେ ମନେ ଭାବିଲେ—"ଦେଖ, ମୁଁ ମନ୍ତ୍ରୀକୁ ମୋର ପୁତ୍ରୀ ନିମନ୍ତେ ପତି ଅନ୍ୱେଷଣ କରିବାକୁ ପଠେଇଲି । ଝିଅ ଯୁବତୀ ହେଲାଣି—ମୋର କେହି ପୁତ୍ର ମଧ୍ୟ ନାହିଁ । ଶୀଘ୍ର ମୁଁ ତା'ର ବିବାହ କରି ଭଗବଦ୍ଭଜନ କରିବାକୁ ଚାହୁଁଛି – ମନ୍ତ୍ରୀ ଏଯାଏଁ ମୋ ନିକଟକୁ ଆସିଲେ ନାହିଁ ।" ସହସା ସେ ସମୟରେ ଚିରଞ୍ଜୀବୀ ଭଗବାନ ଲୋମଶ ଋଷି ସେଠାରେ ପଦାର୍ପଣ କଲେ ।

ମୁନିଙ୍କୁ ଦେଖି ମହାରାଜ ତାଙ୍କର ଆଦରରେ ସ୍ୱାଗତ ସତ୍କାର କଲେ । ଶାସ୍ତ୍ରୀୟ ବିଧିରେ ପୂଜା କଲେ । ଉଭୟ ପକ୍ଷରୁ କୁଶଳ ପ୍ରଶ୍ନ ପରେ ରାଜା ଆପଣା ପୁତ୍ରୀକୁ ଡାକି ମୁନିଙ୍କର ଚରଣ ତଳେ ପ୍ରଣିପାତ କରାଇଲେ ଏବଂ କରଯୋଡ଼ି ଜଣାଇଲେ—"ବ୍ରହ୍ମନ୍, ମୋର ବୃଦ୍ଧାବସ୍ଥା ଉପସ୍ଥିତ ହେଲା । ଏହି ପୁତ୍ରୀ ମୋର ଏକମାତ୍ର ସନ୍ତାନ । ମୁଁ ଚାହୁଁଛି, ଏହା ନିମନ୍ତେ ଯୋଗ୍ୟ ବର ପ୍ରାପ୍ତ ହେଲେ, ତା'ର ବିବାହ କରାଇ, ରାଜ୍ୟଭାର ସମର୍ପଣ କରି ଭଗବାନଙ୍କର ଆରାଧନା କରନ୍ତି ।"

Digitized by srujanika@gmail.com

ସର୍ବଙ୍କ ମୁନି ଧ୍ୟାନାବସ୍ଥିତ ହୋଇ ଦେଖିଲେ ଏବଂ କହିଲେ—"ରାଜନ୍, ଆପଣଙ୍କର ଆୟୁ ସମାପ୍ତ ହୋଇଯାଇଛି । କେବଳ କାଲି ପର୍ଯ୍ୟନ୍ତ ପରମାୟୁ ଶେଷ ଅଛି ।"

ଏହା ଶୁଣି ରାଜା ଅତ୍ୟନ୍ତ ଭୟଭୀତ ହେଲେ ଏବଂ କିଂକର୍ତ୍ତବ୍ୟବିମୂଢ଼ ହୋଇ ଦୁଃଖ ଓ ଶୋକରେ ଅଧୀର ହୋଇ କହିଲେ—"ବ୍ରହ୍ମନ୍, ମୁଁ ତ ଏ ପର୍ଯ୍ୟନ୍ତ କିଛି କରିନାହିଁ । ମୋପରେ ମୋର ଏ ଝିଅକୁ କିଏ ବିବାହ କରିବ ? କିଏ ଏହା ନିମନ୍ତେ ଯୋଗ୍ୟବର ଅନୁସନ୍ଧାନ କରିବ ? କିଏ ଏତେ ବଡ଼ ରାଜ୍ୟର ଶାସନ ସମ୍ଭାଳିବ ! ମୁଁ ଏ ପର୍ଯ୍ୟନ୍ତ ଭଗବତ ଭଜନ ସୁଦ୍ଧା କରିନାହିଁ । ଇହଲୋକ ପରିତ୍ୟାଗ କରି ଯିବା ନିମନ୍ତେ କୌଣସି ସାଧନ ମଧ୍ୟ ସଂଗ୍ରହ କରିନାହିଁ । ମୁଁ ବର୍ତ୍ତମାନ କ'ଣ କରିବି ଚିନ୍ତା ମଧ୍ୟ କରିପାରୁ ନାହିଁ ।"

ଏହା ଶୁଣି ଲୋମଶ ଋଷି ଧୈର୍ଯ୍ୟ ଦେଇ କହିଲେ—"ରାଜନ୍, ଆପଣ ଚିନ୍ତା କରନ୍ତୁ ନାହିଁ । ଭକ୍ତ ଭୟହାରୀ ଭଗବାନ୍ ବାସୁଦେବ ସମସ୍ତଙ୍କର କଲ୍ୟାଣ କରନ୍ତି । ତାଙ୍କର ବିଧାନ ଅନ୍ୟଥା ହେବ ନାହିଁ । ଆପଣଙ୍କର ରାଜ୍ୟର ଅଧିକାରୀ ଏବଂ ଏଇ କନ୍ୟା ନିମନ୍ତେ ସର୍ବଥା ଅନୁରୂପ ବର ଏଇ ରାଜଧାନୀରେ ସ୍ୱତଃ ହିଁ ଉପସ୍ଥିତ ହୋଇ ସାରିଛି । ଯେଉଁ ଚନ୍ଦ୍ରହାସ ସହିତ ମହାମନ୍ତ୍ରୀଙ୍କର କନ୍ୟାର ବିବାହ ହୋଇଛି, ସେ ହିଁ ଆପଣଙ୍କ କନ୍ୟାର ଭାବିପତି । ସେହି ଏ ରାଜ୍ୟଭାର ସମ୍ଭାଳି ପାରିବ । ସେ ସର୍ବଥା ଏହାର ଯୋଗ୍ୟ । ବର୍ତ୍ତମାନ ଶୁଭଲଗ୍ନ ଅଛି, ଆପଣ ତାକୁ ଡାକି ବର୍ତ୍ତମାନ ତା'ର ବିବାହ କରାନ୍ତୁ । ଲଗ୍ନ ଚାଲି ନ ଯାଉ । ରାଜ୍ୟାଭିଷେକ କାଲି ସକାଳେ କରେଇବେ ।"

ଏହା ଶୁଣି ରାଜାଙ୍କର ଆନନ୍ଦର ସୀମା ରହିଲା ନାହିଁ । ମନ୍ତ୍ରୀଙ୍କର ପୁତ୍ର ମଦନ ରାଜାଙ୍କ ପାଖରେ ହିଁ ବସିଥିଲା । ଏ ପର୍ଯ୍ୟନ୍ତ ମଦନକୁ ଜଣା ନଥିଲା ଯେ ମନ୍ତ୍ରୀ ଫେରି ଆସିଛନ୍ତି । ରାଜାଙ୍କୁ ମଧ୍ୟ ଜଣା ନ ଥିଲା । ତେଣୁ ରାଜା ମଦନକୁ କହିଲେ—"ତମେ ବର୍ତ୍ତମାନ ଅତିଶୀଘ୍ର ରଥ ନେଇଯାଅ ଆଉ ତମର ଭଉଣୋଇଙ୍କୁ ନେଇ ଆସ । ସେତେ-ବେଳେ ଭିତରେ ମୁଁ କନ୍ୟାଦାନର ସମସ୍ତ ସାମଗ୍ରୀର ବ୍ୟବସ୍ଥା କରି ରଖୁଛି । ଦେଖ, ସାବଧାନ, ଯେମିତି ଲଗ୍ନ ଚାଲି ନ ଯାଏ ।"

ମହାରାଜଙ୍କର ଆଜ୍ଞା ପାଇ ମଦନର ଆନନ୍ଦର ସୀମା ରହିଲା ନାହିଁ । ସେ ଭାବିଲା—"ବର୍ତ୍ତମାନ ରାଜା ମଧ୍ୟ ଆମର ଘରକୁ ଆସୁଛି । ସେ ସବୁ ଭାବି ସେ ଦ୍ରୁତଗାମୀ ରଥନେଇ ଆପଣାର ଭବନ ଅଭିମୁଖରେ ଗମନ କଲା । ସଂଯୋଗକୁ ସେପଟେ ପୂଜାସାମଗ୍ରୀ ଧରି ଚନ୍ଦ୍ରହାସ ଆସୁଥିଲା । ଦୂରରୁ ଭଉଣୋଇକୁ ପୂଜା ଥାଳିଧରି ଖାଲି ପାଦରେ ଚାଲିଚାଲି ଆସୁଥିବା ଦେଖି ବିସ୍ମିତ ହୋଇ ମଦନ ପଚାରିଲା—"କୁଆଡ଼େ ଯାଉଛ ?"

Digitized by srujanika@gmail.com

ଚନ୍ଦ୍ରହାସ କହିଲେ—"ବର୍ତ୍ତମାନ ବାପା ଫେରି ଆସିଛନ୍ତି । ସେ ମୋତେ ଆଦେଶ ଦେଇଛନ୍ତି ଯେ ମୁଁ କୁଳ ପରମ୍ପରାର ଲୌକିକ ରୀତି ଅନୁସାରେ ବିବାହ ଉପରାନ୍ତ ଭଦ୍ରକାଳୀଙ୍କର ପୂଜା କରି ଆସିବି । ତେଣୁ ମୁଁ ପୂଜା କରିବା ଉଦ୍ଦେଶ୍ୟରେ ଯାଉଛି ।"

ମଦନ ହସି ହସି କହିଲା—"ବିନା ପୂଜନରେ ତମର ଭାଗ୍ୟୋଦୟ ହେଉଛି । ମହାରାଜ ତମକୁ ବର୍ତ୍ତମାନ ଡକେଇଛନ୍ତି । ରହିଲା ପୂଜା କଥା, ଏହା ତ ଲୌକିକ ରୀତି, ଆପଣଙ୍କ ପାଇଁ ମୁଁ ଯାଇ ପୂଜା କରିଦେଇ ଆସିବି । ତମେ ଏଇନେ ଏଇ ରଥରେ ଯାଇ ରାଜଭବନରେ ଉପସ୍ଥିତ ହୁଅ । ବିଳମ୍ବ କରିବା କଥା ନୁହେଁ ।" ଏହା କହି ମଦନ ଚନ୍ଦ୍ରହାସକୁ ରଥରେ ବସେଇ ସ୍ୱୟଂ ପୂଜାଥାଳି ନେଇ ଭଦ୍ର-କାଳୀଙ୍କର ମନ୍ଦିରକୁ ଗଲା ।

ଚନ୍ଦ୍ରହାସ ରଥରେ ବସି ରାଜପ୍ରାସାଦରେ ପହଞ୍ଚିଲା । ରାଜା ଦ୍ୱାରଦେଶରେ ଅପେକ୍ଷାକରି ରହିଥିଲେ । ବିତି ଯାଉଥିବା ପ୍ରତ୍ୟେକ ମୁହୂର୍ତ୍ତ ତାଙ୍କୁ ବ୍ୟସ୍ତ କରୁଥିଲା । ସେ ନିଜ ଆଖିରେ ଆପଣା ଝିଅର ବାହାଘର ଦେଖି ଯିବାକୁ ଚାହୁଁଥିଲେ । ତାଙ୍କର ଭୟ ହେଉଥିଲା ଯେପରି ମହାମୁନିଙ୍କର ନିଶ୍ଚିତ କରିବା ଲଗ୍ନ ଚାଲି ନ ଯାଉ । ଚନ୍ଦ୍ରହାସ ପହଞ୍ଚି ରାଜାଙ୍କର ପାଦଛୁଇଁ ପ୍ରଣାମ କରିବା ମାତ୍ରକେ ରାଜା ଚଞ୍ଚଳ ଉଠି ତାକୁ ଆଲିଙ୍ଗନ କରିନେଲେ । ଚନ୍ଦ୍ରହାସର ଶୀଳ, ସ୍ୱଭାବ, ସଦାଚାର, ରୂପଲାବଣ୍ୟ ତଥା ଭବ୍ୟ ଆକୃତି ଦେଖି ରାଜା ଅତ୍ୟଧିକ ପ୍ରସନ୍ନ ହେଲେ । ଚନ୍ଦ୍ରହାସ ମହାମୁନି ଲୋମଶଙ୍କ ପାଦତଳେ ପ୍ରଣାମ କଲା । ବ୍ରାହ୍ମଣମାନେ ବେଦଧ୍ୱନି କଲେ । ବିବାହର ମଙ୍ଗଳବାଦ୍ୟ ସମୂହ ବାଜି ଉଠିଲା । ପୁଣ୍ୟାହବାଚନର ମଧୁର ଧ୍ୱନିରେ ରାଜପ୍ରାସାଦ ମୁଖରିତ ହୋଇଉଠିଲା । ରାଣୀ ମଧ୍ୟ ଅତି ଆନନ୍ଦିତା ହେଲେ । ସେ ବରର ସୁନ୍ଦର ରୂପକୁ ଚାହିଁ ରହୁଥିଲେ, ବାରମ୍ବାର ଦେଖିଲେ ମଧ୍ୟ ତୃପ୍ତି ଆସୁ ନ ଥିଲା । ଯେତେ ସୁନ୍ଦର ରାଜକୁମାରୀ ଥିଲା, ତା'ଠାରୁ ସୁନ୍ଦର ଥିଲା ଚନ୍ଦ୍ରହାସ । ଦୁହିଁଙ୍କର ଅନୁପମ ଯୋଡ଼ି ଦେଖି ମାତାପିତା, ମୁନି, ପରିଜନ, ଅନ୍ୟାନ୍ୟ ସମସ୍ତ ମନ୍ତ୍ରୀ ତଥା ପୁରୋହିତମାନେ ପରମ ସନ୍ତୁଷ୍ଟ ହେଲେ । ଶାସ୍ତ୍ରୀୟ ବିଧି ଅନୁସାରେ ଚନ୍ଦ୍ରହାସର ବିବାହ ରାଜକୁମାରୀ ସହିତ ସମ୍ପନ୍ନ ହେଲା । ପ୍ରାତଃ ମଙ୍ଗଳକୃତ୍ୟ କରି ରାଜା ଚନ୍ଦ୍ରହାସକୁ ଆନନ୍ଦୋତ୍ସାହରେ ରାଜମୁକୁଟ ପିନ୍ଧେଇଦେଇ, ତାହା ହାତରେ ରାଜ୍ୟଭାର ଅର୍ପଣ କରି ମୁନିଙ୍କର ଅନୁମତି ନେଇ ବାନପ୍ରସ୍ଥ ଗ୍ରହଣ କଲେ ।

ତେଣେ ପୂଜାଥାଳି ନେଇ ମଦନ ଭଦ୍ରକାଳୀଙ୍କ ମନ୍ଦିରରେ ପ୍ରବେଶ କରିବା ମାତ୍ରକେ ମହାମନ୍ତ୍ରୀଙ୍କ ଦ୍ୱାରା ନିଯୁକ୍ତ ଘାତକମାନେ ତା'ର ଶିରଚ୍ଛେଦନ କଲେ ଏବଂ ମୃତ ଶରୀର ସେହିଠାରେ ଛାଡ଼ିଦେଇ ଚାଲିଆସିଲେ ଓ ମନ୍ତ୍ରୀଙ୍କୁ ସବୁ ବୃତ୍ତାନ୍ତ ଜଣାଇ ଦେଲେ । ମନ୍ତ୍ରୀ ତ ପ୍ରଥମ ଘଟଣାରୁ ହିଁ ସନ୍ଦେହ କରୁଥିଲେ, ତେଣୁ କଥାଟିର ସତ୍ୟା-ସତ୍ୟ ପରୀକ୍ଷା କରିବା ନିମନ୍ତେ ସେ ମନ୍ଦିରକୁ ଗଲେ । ସେଠାରେ ସେ ଯାହା ଦେଖିଲେ

Digitized by srujanika@gmail.com

ସେଥିରେ ତାଙ୍କର ହୃଦୟ ବିଦୀର୍ଣ୍ଣ ହେବାକୁ ଲାଗିଲା । ସେ ଦେଖିଲେ ତାଙ୍କର ପ୍ରିୟତମ ପୁତ୍ର ମରି ପଡ଼ିଛି । ସେ ସମୟରେ କେତେଜଣ ଆସି ମହାମନ୍ତ୍ରୀଙ୍କର ଜୟଜୟକାର କଲେ ଏବଂ ଅତ୍ୟନ୍ତ ପ୍ରସନ୍ନତା ବ୍ୟକ୍ତ କରି କହିଲେ—"ଅନ୍ନଦାତା, ଆପଣ ଏଠାରେ କ'ଣ କରୁଛନ୍ତି । ମହାରାଜା ତେଣେ ଆପଣଙ୍କର ଜାମାତା ସହିତ ତାଙ୍କର ପୁତ୍ରୀର ବିବାହ କରି ତା'ର ହାତରେ ରାଜ୍ୟଭାର ଅର୍ପଣ କରୁଛନ୍ତି । ଆମେମାନେ ଦାନ ଦକ୍ଷିଣା ନେଇ ଫେରୁଛୁ ।"

ଏହା ଶୁଣି ଧୃଷ୍ଟବୁଦ୍ଧି ଅତ୍ୟନ୍ତ ଅଧିକ ମର୍ମାହତ ହେଲେ । ସେ ଭାବିଲେ ମୋ ଜୀବନକୁ ଧିକ୍ । ମୁଁ ଯାହାକୁ ମାରିବାକୁ ଇଚ୍ଛାକଲି, ସେ ରାଜା ହେଲା ଏବଂ ମୋର ଜୀବନରୁ ବଳି ପ୍ରିୟତମ ପୁତ୍ରର ମୃତ୍ୟୁ ହେଲା । ମୁଁ ବର୍ତ୍ତମାନ ଜୀବିତ ରହି କ'ଣ କରିବି ?" ଏହା ଭାବି ସେ ଲୋକମାନଙ୍କୁ ବିଦା କରିଦେଲେ ଏବଂ ସ୍ୱୟଂ ଖଡ଼୍‌ଗରେ ଆତ୍ମହତ୍ୟା କଲେ । ପିତାପୁତ୍ର ଉଭୟଙ୍କର ମୃତ ଦେହ ଭଦ୍ରକାଳୀଙ୍କର ମନ୍ଦିର ପ୍ରାଙ୍ଗଣରେ ପଡ଼ି ରହିଲା । ଦ୍ୱାର ବନ୍ଦ ହୋଇ ରହିଥିଲା ।

ପ୍ରଭାତ କାଳରେ ଯେତେବେଳେ ରାଜ୍ୟାଭିଷେକ କାର୍ଯ୍ୟ ଶେଷ ହେଲା, ସେତେବେଳେ ଆପଣାର ନବୀନା ପତ୍ନୀକୁ ନେଇ ଚନ୍ଦ୍ରହାସ ଆପଣାର ପିତୃସ୍ଥାନୀୟ ଶ୍ୱଶୁର ଧୃଷ୍ଟବୁଦ୍ଧିଙ୍କୁ ପ୍ରଣାମ କରିବାକୁ ବାଦ୍ୟ ଘୋଷଣା ସହିତ ମହାମନ୍ତ୍ରୀଙ୍କର ବାସଭବନରେ ପହଞ୍ଚିଲା । ସେଠାରେ ପହଞ୍ଚି ଜାଣିଲା, ନା ମଦନ ନା ଧୃଷ୍ଟବୁଦ୍ଧି କେହିହେଲେ ଘରେ ଉପସ୍ଥିତ ନ ଥିଲେ । ସେ ସମୟରେ ଅନେକ ଲୋକ ଆସି ଚନ୍ଦ୍ରହାସଙ୍କୁ ସୂଚନା ଦେଲେ—"ପ୍ରଭୋ ! ରାତ୍ରୀକାଳରେ କେହି ମହାମନ୍ତ୍ରୀ ଓ ମନ୍ତ୍ରୀ ପୁତ୍ରଙ୍କୁ ହତ୍ୟା କରିଛି । ଉଭୟେ ଭଦ୍ରକାଳୀଙ୍କ ମନ୍ଦିର ପ୍ରାଙ୍ଗଣରେ ହାଣ ଖାଇ ପଡ଼ି ରହିଛନ୍ତି ।" ଏହା ଶୁଣି ଚନ୍ଦ୍ରହାସର ଦୁଃଖର ସୀମା ରହିଲା ନାହିଁ । ସେ କାନ୍ଦି କାନ୍ଦି ଭଦ୍ରକାଳୀଙ୍କ ମନ୍ଦିରକୁ ଗଲା ।

ମନ୍ଦିରରେ ପହଞ୍ଚି ସେ ଉଭୟ ଶାଳକ ଓ ଶ୍ୱଶୁରଙ୍କୁ ମରି ପଡ଼ିଥିବାର ଦେଖିଲା । ସେ କାନ୍ଦି କାନ୍ଦି ଅତ୍ୟନ୍ତ କାତର ସ୍ୱରରେ ଭଦ୍ରକାଳୀଙ୍କର ସ୍ତୁତି ପାଠ କଲା । ତା'ର ସ୍ତୁତିରେ ସନ୍ତୁଷ୍ଟ ହୋଇ ଭଦ୍ରକାଳୀ ପ୍ରକଟିତ ହୋଇ, କହିଲେ— "ବତ୍ସ, ମୁଁ ତୋର ଭକ୍ତିରେ ଅତ୍ୟନ୍ତ ସନ୍ତୁଷ୍ଟ । ତୁ ତ ଭଗବାନଙ୍କର ଭକ୍ତ । ଭଗବାନ୍ଙ୍କ ଭକ୍ତଙ୍କ ସହିତ ଦ୍ୱେଷ ଆଚରଣ କରୁଥିବା ଲୋକଙ୍କର ମଙ୍ଗଳ ହୁଏ ନାହିଁ । ଏହି ଧୃଷ୍ଟବୁଦ୍ଧି ହୃଦୟରେ ତୋ ପ୍ରତି ଦ୍ୱେଷଭାବ ରଖିଥିଲା । ତେଣୁ ସ୍ୱୟଂ ତା'ର ବିନାଶ ହୋଇଛି । ଯଦ୍ୟପି ମଦନର ତୋ ପ୍ରତି କୌଣସି ଦ୍ୱେଷ ନ ଥିଲା; ତଥାପି ଶତ୍ରୁପୁତ୍ର ବୋଲି ତା'ର ମୃତ୍ୟୁ ହୋଇଛି । ବର୍ତ୍ତମାନ ତୋର ଯାହା ଇଚ୍ଛା, ସେହି ବର ମାଗ ।"

ଭଦ୍ରକାଳୀଙ୍କର କଥା ଶୁଣି ଚନ୍ଦ୍ରହାସ କହିଲା—"ମାତା, ଯଦି ଆପଣ ମୋ ପ୍ରତି ପ୍ରସନ୍ନ ହୋଇଛନ୍ତି ଏବଂ ବର ପ୍ରଦାନ କରିବାକୁ ଇଚ୍ଛା କରନ୍ତି, ତା'ହେଲେ

Digitized by srujanika@gmail.com

ମୁଁ ଆପଣଙ୍କଠାରୁ ଏତିକି ହିଁ ମାଗୁଛି ଯେ, ମୋର ଶ୍ୱଶୁର ଓ ଶାଳକକୁ ଜୀବନ ଦାନ କରନ୍ତୁ ଏବଂ ମୋର ଶ୍ୱଶୁରଙ୍କର ଅନ୍ତଃକରଣ ଶୁଦ୍ଧ କରି ଦିଅନ୍ତୁ । ତାଙ୍କର ମନରୁ ଦ୍ୱେଷଭାବ ଚାଲିଯାଉ ।"

ଚନ୍ଦ୍ରହାସର ଏଭଳି ନିଷ୍କପଟଭାବ ଦେଖି ଭଦ୍ରକାଳୀ ଅତିଶ ସନ୍ତୁଷ୍ଟ ହେଲେ । ଚାହୁଁ ଚାହୁଁ ସେମାନଙ୍କ ମସ୍ତକ ଶରୀରରେ ଲାଗିଗଲା । ସେମାନେ ଏପରି ଉଠିଲେ ଯେପରି ନିଦ୍ରିତ ପୁରୁଷ ନିଦ୍ରାଭଙ୍ଗ ହେଲେ ଉଠି ଠିଆହୋଇଯାଏ । ଧୃଷ୍ଟବୁଦ୍ଧିର ଅନ୍ତଃକରଣ ପବିତ୍ର ହୋଇଯାଇଥିଲା । ସେ ଚନ୍ଦ୍ରହାସକୁ ସମ୍ମୁଖରେ ଦେଖି ଦଉଡ଼ି ଆସି ଆଲିଙ୍ଗନ କଲା । ବ୍ୟାକୁଳ ହୋଇ କାନ୍ଦିବାକୁ ଲାଗିଲା । କାନ୍ଦି କାନ୍ଦି ସେ ଚନ୍ଦ୍ରହାସର ରାଜ୍ୟାଭିଷେକର ଅଭିମନ୍ତ୍ରିତ ଜଳରେ ଆର୍ଦ୍ର କେଶରାଶିକୁ ଅଧିକ ଆର୍ଦ୍ର କରିବାକୁ ଲାଗିଲା । ତାକୁ ଲୁହରେ ଗାଧୋଇଦେଲା । ଆଜି ଶ୍ୱଶୁର ଜ୍ୱାଇଁ ପ୍ରୀତିପୂର୍ବକ ଭେଟାଭେଟି ହେଲେ । ମଦନ ମଧ୍ୟ ଶ୍ରଦ୍ଧାସହିତ ଚନ୍ଦ୍ରହାସକୁ ଅଭିନନ୍ଦନ କଲା । ପ୍ରଜାମାନେ ଚନ୍ଦ୍ରହାସକୁ ଅଭିନନ୍ଦନ ଜଣାଇଲେ । ସମସ୍ତେ ସମସ୍ୱରରେ ତାକୁ ସମ୍ରାଟରୂପେ ଗ୍ରହଣକରି ଜୟ-ଜୟକାର କଲେ । ସମାଚାର ଶୁଣିବା ମାତ୍ରକେ କୁଳିନ୍ଦ ଦେଶର ରାଜାରାଣୀ ଦୌଡ଼ି ଆସିଲେ । ଆପଣା ପୁତ୍ରକୁ ରାଜସିଂହାସନରେ ଦେଖି ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ଧୃଷ୍ଟବୁଦ୍ଧି ମଧ୍ୟ ଆପଣା ଜାମାତାକୁ ଆଶୀର୍ବାଦ ଦେଇ ମନ୍ତ୍ରୀପଦ ତ୍ୟାଗକରି ତପସ୍ୟା କରିବାକୁ ବଣକୁ ଚାଲିଗଲେ । ତାଙ୍କ ସ୍ଥାନରେ ମଦନ ମହାମନ୍ତ୍ରୀ ହେଲା । ଉଭୟ ଶଳାଭିଣୋଇ ମିଶି ଧର୍ମପୂର୍ବକ କୁଳିନ୍ଦ ଓ କୁନ୍ତଳ ଦେଶ ପାଳନ କଲେ । ଏଣୁ କେହି ସତ୍ୟ କହିଥିଲା —

ଜାକ୍ ପାଁଇନ ପନହୀ ନହିଁ, ତିନହେ ଦେତ ଗଜରାଜ ।
ବିଷ ଦେତେ ବିଷୟା ମିଲୀ, ରାମ ଗରୀବ ନିବାଜ ॥

ସୂତ କହୁଛନ୍ତି —"ହେ ମୁନିଗଣ, ଆପଣମାନେ ପ୍ରଶ୍ନ କରିବାରୁ ମୁଁ ଚନ୍ଦ୍ରହାସର ଏହି ମନୋହର କଥା ଶୁଣାଇଲି । ଦେଖନ୍ତୁ, ଧୃଷ୍ଟବୁଦ୍ଧି ତାକୁ ମାରିବା ପାଇଁ କେତେ ଉପାୟ କଲା; ମାତ୍ର ତା'ର ମୃତ୍ୟୁ ନ ଥିଲା, ତେଣୁ ମୃତ୍ୟୁ ହେଲା ନାହିଁ । ଗର୍ଭର କୋଠରୀ ମଧ୍ୟକୁ ଯେଉଁଠାକୁ ଶୁଦ୍ଧବାୟୁ ଓ ଅନ୍ନଜଳ ପ୍ରବେଶ କରିପାରେ ନାହିଁ, ଯେଠାରେ ମଧ୍ୟ ସେ ବାଳକର ରକ୍ଷା କରନ୍ତି, ତେବେ ସଂସାରରେ ପ୍ରଭୁ ଥାଇ ସେ କିଭଳି ରକ୍ଷା କରିବେ ନାହିଁ । ଯା'ର ଯେତେ ଆୟୁ ତାକୁ ତାହା ଭୋଗ କରିବାକୁ ପଡ଼େ । ଯେତେବେଳେ ତା'ର ମୃତ୍ୟୁ ସମୟ ଉପସ୍ଥିତ ହୁଏ, ସେତେବେଳେ କେହି ତାକୁ ବଞ୍ଚେଇ ପାରନ୍ତି ନାହିଁ । "ସୁଯଜ୍ଞର ପତ୍ନୀମାନଙ୍କୁ ବାଳକ ବେଶଧାରୀ ଯମରାଜ କହୁଛନ୍ତି —"ହେ ରାଜ ପତ୍ନୀଗଣ, ତୁମେମାନେ ମୂଢ଼, ସୁଯଜ୍ଞପାଇଁ ଦୁଃଖ କରନାହିଁ । ତାଙ୍କର ଏପର୍ଯ୍ୟନ୍ତ ଆୟୁ ଥିଲା । ସେ ଜୀବିତ ହୋଇପାରିବେ ନାହିଁ ।"

Digitized by srujanika@gmail.com

ଏହି ଦୃଷ୍ଟାନ୍ତ ନେଇ ହିରଣ୍ୟକଶିପୁ ତା'ର ମାତା, ଭ୍ରାତୃ ପତ୍ନୀ ଏବଂ ପୁତ୍ରଗ-ମାନଙ୍କୁ ଆଶ୍ୱାସନା ଦେଲା ଯେ, ଦୈବ ଯୋଗ ମନେକରି ତୁମମାନଙ୍କର ହିରଣାକ୍ଷ ପାଇଁ ଦୁଃଖ କରିବା ଉଚିତ ନୁହେଁ ।

## ଛପ୍‌ପୟ

ମାରନ ଚହ୍ୟୋ ଧୃଷ୍ଟବୁଦ୍ଧି ନେ ଚନ୍ଦ୍ରହାସ କୁଁ ।
ବଧିକନ ସୌଂପ୍ୟୋ ବିବଧି କରେ ଉଦ୍ୟୋଗ ନାଶକୁଁ ॥
କିନ୍ତୁ ମୃତ୍ୟୁ ନହିଁ ଭଇ ରାଜ ଦ୍ୱୈ ଦେଶନ ପାୟୋ ।
ଦ୍ୱୈ ଦ୍ୱୈ ରାନୀ ମିଲୀଂ ଶ୍ୱସୁରହୁ ମୃତକ କିବାୟୋ ॥
ବିଷ ବଦଲେ ବିଷୟା ମିଲୀ, ଭିକ୍ଷୁକ ତେ ରାଜା ଭୟୋ ।
ଭୟୋ ଭାଗ୍ୟ ଅନୁକୂଲ ଜବ, ତବ ତସ ବାଲକ ବନ ଗୟୋ ॥

---

Digitized by srujanika@gmail.com

# ଦୈବ ରକ୍ଷିତ ହିଁ ଯଥାର୍ଥ ରକ୍ଷିତ

ପଥି ଚ୍ୟୁତଂ ତିଷ୍ଠତି ଦିଷ୍ଟରକ୍ଷିତମ୍
ଗୃହେସ୍ଥିତଂ ତଦ୍ ବିହତଂ ବିନଶ୍ୟତି ।
ଜୀବତ୍ୟନାଥୋଽପି ତଦୀକ୍ଷିତୋ ବନେ
ଗୃହେଽପି ଗୁପ୍ତୋଽସ୍ୟ ହତୋ ନ ଜୀବତି ॥
( ଶ୍ରୀ ଭା ୭ ସ୍କ ॥ ୨ୟ ଅ ॥ ୪୦ ଶ୍ଳୋକ )

## ଛପ୍ପୟ

ପୁରୁଷ ବଳୀ ନହିଁ ହୋନ୍ତ ଦୈବ ଇ ବଳୀ କହାବେ ।
ଯୈସୋ ହୋନୋ ହୋଇ ଦୈବ ତସ ବୁଦ୍ଧି ବନାବେ ॥
ନଷ୍ଟ ହୋନ କୋ ସମୟ ଯାସୁ କୋ ଅବଇ ନାଇ ।
ଅନ୍ତ କରକେ ପୁରୁଷାର୍ଥ ସକେଂ ନହିଁ ଲୋଗ ନସାଇ ॥
ଗିରୀ ଗୈଲ ମେଂ ବସ୍ତୁ ହୁ, ଜ୍ୟୋଂ କୀ ତ୍ୟୋଂ ରହୀ ଜାୟଗୀ ।
ନଷ୍ଟ ହୋନ କୋ ଜଦ ସମୟ, ତୋ ଘର ମହିଁ ନସି ଜାୟଗୀ ॥

ଭଗବାନଙ୍କ ଅମୋଘ ସଂକଳ୍ପ ବୋଲି କୁହାଯାଇଛି । ମନୁଷ୍ୟ ଅନେକ ଇଚ୍ଛା କରେ; ତାହା ମଧ୍ୟରୁ କେତେକ ପୂର୍ଣ୍ଣ ହୁଏ, କେତେକ ମଧ୍ୟ ପୂର୍ଣ୍ଣ ହୁଏ ନାହିଁ । ମାତ୍ର ଭଗବାନଙ୍କର ଇଚ୍ଛା ଏବଂ ତା'ର ପୂର୍ତ୍ତି ଦୁଇଟି ସ୍ୱତନ୍ତ୍ର କଥା ନୁହେଁ । ତାଙ୍କର ଯାହା ଇଚ୍ଛା ହେଲା ପୂରଣ ହେଲା ବୋଲି ଜାଣ । ଏହି ସଂପୂର୍ଣ୍ଣ ଜଗତର ରଚନା ପ୍ରଭୁ କ୍ରୀଡ଼ା ଭଳି ଇଚ୍ଛା ମାତ୍ରକେ କରିଥାନ୍ତି । ସେଥିନିମନ୍ତେ ତାଙ୍କୁ ନା ଚେଷ୍ଟା କରିବାକୁ ପଡ଼େ ନା ପରିଶ୍ରମ, କେବଳ ମାତ୍ର ଇଚ୍ଛା । ଏହି ଚରାଚର ବିଶ୍ୱ ପ୍ରଭୁଙ୍କର ଇଚ୍ଛା ଉପରେ ଅବଲମ୍ବିତ । ଯେଉଁପରି ଉଦ୍ୟାନର ବୃକ୍ଷ ଉପରେ ଚତୁର ମାଳୀର ଦୃଷ୍ଟି ରହିଥାଏ, କିଏ କେତେ ବଢ଼ୁଛି, କା'ର କେଉଁ ସମୟରେ କଲମୀ କରାଯିବ, କେଉଁ ସମୟରେ କାହାକୁ ନେଇ କେଉଁଠି ରଖାଯିବ, କେବେ କେଉଁଠାରେ ଖତ ଦେବାକୁ ପଡ଼ିବ, କେତେବେଳେ ପାଣି ଦେବାକୁ ହେବ, ସବୁ କଥା ଦେଖି ସେ ସାବଧାନ ସହକାରେ ପାଳନ-ପୋଷଣ କରେ । ସେଥିରେ ସେ ଭୁଲ ହେବାକୁ

Digitized by srujanika@gmail.com

ହଏ ନାହିଁ । ମାଳୀର କାର୍ଯ୍ୟରେ ଭୁଲ ହୋଇପାରେ; ମାତ୍ର ଭଗବାନଙ୍କ କାର୍ଯ୍ୟରେ କଦାପି ଭୁଲ ହୁଏନାହିଁ । ତାଙ୍କର ଏହି ଅଖଣ୍ଡ ଲୀଳାମୟ ବ୍ୟାପାର ନିରନ୍ତର ପ୍ରବାହ ରୂପରେ ଚାଲିଥାଏ । ତା'ର ଆଦି ନାହିଁ, ଅନ୍ତ ମଧ୍ୟ ନାହିଁ । ଆଦିକାଳରୁ ତାହା ଏଭଳି ବ୍ୟବସ୍ଥିତ ରୂପରେ ଚାଲି ଆସିଛି । ଯେଉଁମାନେ ଏହି ବ୍ୟବସ୍ଥାର ରହସ୍ୟ ବୁଝିଯାଆନ୍ତି, ସେହିମାନେ ଜ୍ଞାନୀ ବୋଲାନ୍ତି, ସେମାନଙ୍କର କୌଣସି ଘଟଣାରେ ହର୍ଷ ଓ ବିସ୍ମୟ ହୁଏ ନାହିଁ । ସେମାନେ ବୁଝିଥାନ୍ତି ଏ ଘଟଣା ନିଶ୍ଚିତଭାବରେ ହେବାକୁ ଥିଲା, କାରଣ ପ୍ରଭୁଙ୍କର ଇଚ୍ଛା ବିନା କୌଣସି କଥା ଘଟେ ନାହିଁ । ମାତ୍ର ଯେଉଁମାନେ ଅଜ୍ଞାନୀ, ସେମାନେ ସବୁ କଥାକୁ ନୂତନ ଓ ଅକସ୍ମାତ୍ କଥା ମନେକରି କେତେବେଳେ କାନ୍ଦନ୍ତି, କେତେବେଳେ ହସନ୍ତି, କେତେବେଳେ ସୁଖୀ, କେତେବେଳେ ଦୁଃଖୀ ହୋଇଥାନ୍ତି । ଏହା ହିଁ ଅଜ୍ଞାନ ଓ ମୂର୍ଖତା ।

ବାଳକ ସୁଯଜ୍ଞଙ୍କର ପତ୍ନୀମାନଙ୍କୁ ବୁଝେଇ କହୁଛି—"ହେ ଅବଳାମାନେ, ତୁମେ କ୍ରନ୍ଦନ କର ନାହିଁ । ସମସ୍ତଙ୍କର ରକ୍ଷକ ସେହି ଶ୍ରୀହରି । ବର୍ତ୍ତମାନ ଏ ମୃତ ଦେହ ତମର କେଉଁପରି ରକ୍ଷା କରିବ ? ସେହି ଅଚ୍ୟୁତ ଅଜ ଅବିନାଶୀ ଶ୍ରୀହରି ଆପଣାର ଇଚ୍ଛାମାତ୍ରକେ ସମ୍ପୂର୍ଣ୍ଣ ସୃଷ୍ଟିର ରଚନା କରିଥାନ୍ତି । ସ୍ୱୟଂ ରଚନା କରି ଏହାର ପାଳନ ମଧ୍ୟ କରନ୍ତି ଏବଂ ଯେତେବେଳେ ଇଚ୍ଛା ହେଲା, ଖେଳ ସରିଲା ଆଉ ମଣିଷ ଚାଲିଗଲା, କହି କହି ତା'ର ସଂହାର ମଧ୍ୟ କରନ୍ତି । ଏହି ଚରାଚର ବିଶ୍ୱ ତାଙ୍କ ହାତର ଖେଳନା । ତାଙ୍କର ମନୋରଞ୍ଜନ ଓ ଖେଳର ସାଧନମାତ୍ର । ଯେପରି ବାଳକ ଯେତେବେଳେ ଇଚ୍ଛା ସେତେବେଳେ 'ପେଣ୍ଡୁ' ନେଇ ଖେଳପାରେ, ଯେତେ-ବେଳେ ପାରେ ସେତେବେଳେ ତାକୁ ଭାଙ୍ଗିଦେଇ ଫୋପାଡ଼ି ଦେଇପାରେ; ଗଢ଼ିବା ଓ ଭାଙ୍ଗିବାପାଇଁ ବାଳକ ଯେଉଁପରି ସ୍ୱତନ୍ତ୍ର, ସେହିପରି ଶ୍ରୀହରି ଉତ୍ପତ୍ତି, ପାଳନ ଓ ସଂହାର ନିମନ୍ତେ ସ୍ୱତନ୍ତ୍ର । ସବୁ ଦିଗରୁ ସମର୍ଥ ।"

ଏହା ଶୁଣି ରାଜାଙ୍କର ପୁରୋହିତ ପଚାରିଲେ—"ବାଳକ, ତମେ ତ ଅତ୍ୟନ୍ତ ଜ୍ଞାନର କଥା କହୁଛ, ତେବେ କହ, କେହି କ'ଣ ଆପଣାର ପୁରୁଷାର୍ଥ ବଳରେ ମୃତ୍ୟୁକୁ ଏଡ଼ାଇ ଦେଇପାରିବ ନାହିଁ ? କୌଣସି ନଷ୍ଟ ହୋଇଯାଉଥିବା ବସ୍ତୁକୁ ସୁରକ୍ଷିତ ରଖିପାରିବ ନାହିଁ ?"

ତାହା ଶୁଣି ବାଳକ କହିଲା—"ପୁରୋହିତ ମହାଶୟ, ପୁରୁଷାର୍ଥ ସେହିଠାରେ କାର୍ଯ୍ୟକାରୀ ହୋଇଥାଏ, ଯେଉଁଠାରେ ପ୍ରାରବ୍ଧ ଅନୁକୂଳ । ଯେଉଁ କାର୍ଯ୍ୟରେ ଦୈବ ବିପରୀତ, ସେଠାରେ ପୁରୁଷାର୍ଥ ବିଫଳ ହୋଇଯାଏ । ତଥାପି ମଧ୍ୟ ପୁରୁଷାର୍ଥ ନିରନ୍ତର କରୁଥିବା ଉଚିତ; କାରଣ ତାହାଦ୍ୱାରା ପ୍ରାରବ୍ଧ ସମ୍ବନ୍ଧରେ ଜାଣିହୁଏ । ଜାଣିହୁଏ, ଏ ବସ୍ତୁ ମୋ ଭାଗ୍ୟରେ ଅଛି ନା ନାହିଁ । ସବୁ ବସ୍ତୁର ଅବଧି ନିର୍ଦ୍ଧାରିତ ହୋଇରହିଛି । ଯେତେ ଦିନ ଯେଉଁ ବସ୍ତୁର ଅବଧି, ତାକୁ ସେତେଦିନ ପର୍ଯ୍ୟନ୍ତ କେହି ନଷ୍ଟକରି

ପାରିବେ ନାହିଁ । ତାଲୁ ଛକ ରାସ୍ତାରେ ପକେଇ ଦିଅ, ପାଦରେ ଦଳିଦିଅ, ତାହା ସେହିଭଳି ରହିଥିବ । ତା'ର ବିପରୀତ, ଯାହାର ନଷ୍ଟ ହୋଇଯିବାର ବେଳ ଆସିଯାଇଛି, ତାକୁ ସାତୋଟି ତାଲା ପକେଇ ବନ୍ଦକରି ରଖିଲେ ମଧ୍ୟ ତାହା ନଷ୍ଟ ହୋଇଯିବ । ଯା'ର ଜୀବନ କାଳ ସରିନାହିଁ ତାକୁ ବାଘ ସିଂହମାନଙ୍କ ମଧ୍ୟରେ ଛାଡ଼ିଦେଲେ ମଧ୍ୟ ସେ ଜୀବିତ ରହିଥିବ । ଯା'ର ଜୀବନକାଳ ସମାପ୍ତ ହୋଇଯାଇଛି, ତାକୁ ସାତ ମହଲାରେ ସୁରକ୍ଷିତ ପୁଷ୍ପଶଯ୍ୟାରେ ଶୁଆଇ ରଖିଲେ ମଧ୍ୟ ସେ ସେଠାରେ ମରିଯିବ । ଦେଖ, ଭଗବାନ ଅକୃତବ୍ରଣଙ୍କର ରକ୍ଷା କେଉଁଭଳି କରିଥିଲେ ।''

ଏହା ଶୁଣି ଶୌନକ ପଚାରିଲେ—''ହେ ସୂତ, ଅକୃତବ୍ରଣଙ୍କୁ କେଉଁ ବିପତ୍ତିରୁ ଭଗବାନ କେଉଁଭଳି ଭାବରେ ରକ୍ଷାକଲେ, ସେହି କଥା ଆପଣ ଉଚିତ ମନେ କରୁଥିଲେ ଆମକୁ ଶୁଣାନ୍ତୁ ।''

ଏହା ଶୁଣି ଶ୍ରୀ ସୂତ କହିଲେ—''ହେ ମୁନିଗଣ, ଏହା ଏକ ଅଦ୍ଭୁତ ପୌରାଣିକ ଆଖ୍ୟାନ । ଏହା ତ୍ରେତୟା ଯୁଗର କଥା । ସେ ସମୟରେ ପ୍ରାୟ ସବୁ ବ୍ରାହ୍ମଣ ଆପଣା ସ୍ୱଧର୍ମରେ ନିରତ ତପ ସ୍ୱାଧ୍ୟାୟରେ ମଗ୍ନ ରହୁଥିଲେ । ସେତେବେଳେ ଜଣେ ଶାନ୍ତ ଦାନ୍ତ ମୁନି କୌଣସି ଅରଣ୍ୟରେ ଆପଣାର ପତ୍ନୀ ସହିତ ପର୍ଣ୍ଣକୁଟୀର ନିର୍ମାଣ କରି ବାସକରି ତପସ୍ୟା କରୁଥିଲେ । ତାଙ୍କର ଏକ ଅତି ସୁନ୍ଦର ପୁତ୍ର ଜାତ ହେଲା । ସେଭଳି ଏକ ସୁନ୍ଦର ପୁତ୍ରର ମୁଖ ଦର୍ଶନ କରି ସେହି ମୁନି ଦମ୍ପତିଙ୍କର ଆନନ୍ଦର ସୀମା ରହିଲା ନାହିଁ । ଥରେ ସନ୍ଧ୍ୟା ସମୟରେ ମୁନି ସନ୍ଧ୍ୟା ପୂଜାରେ ମଗ୍ନ ଥିଲେ । ମୁନି ପତ୍ନୀ ନଦୀକୁ ଜଳ ଆଣିବା ନିମନ୍ତେ ଯାଇଥିଲେ, ସେତେବେଳେ କୁଆଡୁ ଗୋଟିଏ ହେଟାବାଘ ଆସି ଶିଶୁଟିକୁ ଉଠେଇ ନେଲା । ମୁନି ଯେତେବେଳେ ଦେଖିଲେ, ସେତେବେଳେ ତା ପଛରେ ଅନେକ ଦୌଡ଼ିଲେ; ମାତ୍ର ତାଙ୍କର ସବୁ ପରିଶ୍ରମ ବ୍ୟର୍ଥ ହେଲା । ହେଟାବାଘ ସେହି ଶିଶୁକୁ ନେଇ ଚାଲିଗଲା । ସେହି ବାଳକର କିନ୍ତୁ ମୃତ୍ୟୁ ସମୟ ଆସି ନ ଥିଲା । ଏଣୁ ସେହି ହେଟାବାଘର ମନରେ ଶିଶୁପ୍ରତି ଦୟାଭାବ ଜାଗରିତ ହେଲା । ସେ ତାକୁ ନେଇଯାଇ ତା'ର ପତ୍ନୀକୁ ଦେଲା । ସେ ତାକୁ ଆପଣାର ଗୁମ୍ଫା ମଧ୍ୟରେ ରଖି ତାହା ସହିତ ଖେଳିବାକୁ ଲାଗିଲା । ଆପଣାର ପୁତ୍ରମାନଙ୍କ ସହିତ ସେ ତାକୁ ପୁତ୍ରବତ୍ ସ୍ନେହ କଲା । ହେଟାବାଘ ଯେଉଁ ଜୀବମାନଙ୍କୁ ମାରିଆଣେ, ସେ ସେଇ ମାଂସ ଶିଶୁକୁ ଖୁଆଏ । ଧୀରେ ଧୀରେ ସେହି ଶିଶୁ ମଧ୍ୟ ହେଟାବାଘର ପିଲାମାନଙ୍କ ସହିତ ମିଶିଗଲା । ହାତ ପାଦ ସାହାଯ୍ୟରେ ଚତୁଷ୍ପଦ ପ୍ରାଣୀମାନଙ୍କ ପରି ଚାଲିବାକୁ ଲାଗିଲା । ହେଟାବାଘମାନଙ୍କର ଭାଷା କହିବାକୁ ଲାଗିଲା ।

ଥରେ ଭଗବାନ ପରଶୁରାମ ସେହି ବାଟଦେଇ ଯାଉଥିଲେ । ସେ ଯେତେବେଳେ ମନୁଷ୍ୟ ବାଳକକୁ ହେଟାବାଘ ଛୁଆମାନଙ୍କ ସାଙ୍ଗରେ ଦେଖିଲେ ଏବଂ ତା'ର ପଶୁବତ୍ ଆଚରଣ ଲକ୍ଷ୍ୟ କଲେ, ସେ ସେତେବେଳେ ବିସ୍ମିତ ହେଲେ । ସେ

Digitized by srujanika@gmail.com

ପିଲାଟିକୁ ଧରନେଲେ । ଯେ ଏକୋଇଶବାର ଆପଣାର ଗୋଟିଏ ମାତ୍ର ପରଶୁରେ ସମସ୍ତ ଭୂମଣ୍ଡଳର କ୍ଷତ୍ରିୟ ସଂହାର କରିଥିଲେ, ତାଙ୍କ ସମ୍ମୁଖରେ ମ୍ଳେଚ୍ଛାଚାରୀ କ'ଣ ରହନ୍ତେ ? ସେମାନେ ଡରି ପଳେଇ ଗଲେ । ପରଶୁରାମ ପିଲାଟିକୁ ଧରି ଆଶ୍ରମକୁ ଚାଲି ଆସିଲେ ।

ଭଗବାନ ପରଶୁରାମ ଦେଖିଲେ, ପିଲାଟି ଏତେଦିନ ମ୍ଳେଚ୍ଛାଚାରୀମାନଙ୍କ ସାଙ୍ଗରେ ରହିଲା; ମାତ୍ର ସେମାନେ ତା'ର ଅଙ୍ଗରେ ଗୋଟିଏ ହେଲେ କ୍ଷତ କରି ନ ଥିଲେ । ତାକୁ କୌଣସି ପ୍ରକାର କଷ୍ଟ ଦେଇ ନ ଥିଲେ । ତେଣୁ ସେ ତା'ର ନାଁ ଦେଲେ ଅକୃତବ୍ରଣ ।

ସେହି ମହାତ୍ମା ଅକୃତବ୍ରଣ ଅତ୍ୟନ୍ତ ତେଜସ୍ୱୀ, ତପସ୍ୱୀ ଏବଂ ଭଗବାନ ପରଶୁରାମଙ୍କର ଏକନିଷ୍ଠ ଅନୁଯାୟୀ ହେଲେ । ଯେତେବେଳେ ଭଗବାନ ପରଶୁରାମ ପିତାମହ ଭୀଷ୍ମଙ୍କ ସାଙ୍ଗରେ ଯୁଦ୍ଧ କଲେ, ସେତେବେଳେ ତାଙ୍କର ରଥର ସାରଥି ଥିଲେ 'ଅକୃତବ୍ରଣ' ।

ସୂତ କହିଲେ—"ମହାମନା, ଅକୃତବ୍ରଣଙ୍କର ଆୟୁ ଥିଲା, ଏଣୁ ମ୍ଳେଚ୍ଛାଚାରୀ-ମାନଙ୍କ ମଧ୍ୟରେ ରହି ମଧ୍ୟ ବଞ୍ଚି ରହିଲେ । ଏହାର ବିପରୀତ ସିନ୍ଧୁରାଜ ଜୟଦ୍ରଥର ଆୟୁ ନ ଥିଲା । କେତେ ଯତ୍ନ ସତ୍ତ୍ୱେ ବି ସେ ମରିଗଲା । ଅର୍ଜୁନ ଅଭିମନ୍ୟୁର ମୃତ୍ୟୁରେ ପ୍ରତିଜ୍ଞା କରିଥିଲେ ଯେ ଆଜି ସୂର୍ଯ୍ୟାସ୍ତ ପୂର୍ବରୁ ଯଦି ମୁଁ ଜୟଦ୍ରଥକୁ ମାରି ନ ପାରେ, ତେବେ ସ୍ୱୟଂ ଅଗ୍ନିରେ ଝାସ ଦେଇ ଭସ୍ମ ହୋଇଯିବି । ତେଣେ ଦ୍ରୋଣାଚାର୍ଯ୍ୟ ଓ ଦୁର୍ଯ୍ୟୋଧନଙ୍କ ଏଗାର ଅକ୍ଷୌହିଣୀ ସେନା ପ୍ରତିଜ୍ଞା କରିଥିଲେ ଯେ, ସେମାନେ ଯେ କୌଣସି ମତେ ଜୟଦ୍ରଥକୁ ବଞ୍ଚେଇ ନେବେ । ହେ ମୁନିଗଣ, ଆପଣମାନେ ବିଚାର କରନ୍ତୁ, ଏଗାର ଅକ୍ଷୌହିଣୀ ସୈନ୍ୟମାନଙ୍କ ମଧ୍ୟରେ ଗୋଟିଏ ବ୍ୟକ୍ତିର ଲୁଚିରହିବା କେତେ ବଡ଼ କଥା, ତା ଶୁଣି ମାତ୍ର ଅଧାଦିନ ଲାଗି ବଡ଼ ବଡ଼ ମହାରଥୀମାନେ ନାନାପ୍ରକାର ବ୍ୟୂହ ରଚନା କରି ତାହା ମଧ୍ୟରେ ଜୟଦ୍ରଥକୁ ଲୁଚେଇ ରଖିଥିଲେ; ମାତ୍ର ତା'ର କାଳ ଉପସ୍ଥିତ ହୋଇ ସାରିଥିଲା । କାଳର ସେ ନିୟନ୍ତା, ସେହି ଶ୍ରୀକୃଷ୍ଣ ମଧ୍ୟ ତାକୁ ସୂର୍ଯ୍ୟାସ୍ତ ପୂର୍ବରୁ ପରଲୋକରେ ପହଞ୍ଚେଇ ଦେବାକୁ ସ୍ଥିରକରି ସାରିଥିଲେ, ସେ ସୂର୍ଯ୍ୟାସ୍ତ ପୂର୍ବରୁ ଅର୍ଜୁନର ବାଣରେ ନିହତ ହେଲା ।

ଗୋଟିଏ ନୁହଁ, ଏହିଭଳି ଲକ୍ଷ ଲକ୍ଷ ଦୃଷ୍ଟାନ୍ତ ରହିଛି । ଅନେକ ଅସୁର ଅମରତ୍ୱ ପ୍ରାପ୍ତିପାଇଁ ବିଭିନ୍ନ ବରଦାନ ଚାହିଁଛନ୍ତି । ସେମାନେ ସଂସାରକୁ ନିଜକୁ ସବୁଠାରୁ ବଳୀୟାନ୍, ମହାନ୍ ପରାକ୍ରମୀ ବୋଲି ମନେ କରିଛନ୍ତି; ସମସ୍ତ ଆସିବାରୁ ସେମାନେ ମଧ୍ୟ ସାଧାରଣ ମଣିଷ ହାତରେ ନିହତ ହୋଇଛନ୍ତି । ଏସବୁ କଥାରୁ ଏହା ହିଁ ସିଦ୍ଧ ହୁଏ ଯେ, ଯେତେବେଳ ପର୍ଯ୍ୟନ୍ତ ମୃତ୍ୟୁ ଆସିନାହିଁ, ସେତେବେଳ ପର୍ଯ୍ୟନ୍ତ କେହି କୌଣସି ଉପାୟରେ ବି କାହାକୁ ମାରିଦେଇ ପାରିବ ନାହିଁ ଏବଂ ଯା'ର ମୃତ୍ୟୁ ଆସି ଉପସ୍ଥିତ ତାକୁ କେହି ହେଲେ କୌଣସି ଉପାୟରେ ରକ୍ଷା କରିପାରିବେ ନାହିଁ ।

Digitized by srujanika@gmail.com

ସେହି ଜ୍ଞାନୀ ବାଳକ ମହାରାଜ ସୁଯଜ୍ଞଙ୍କର ରାଣୀମାନଙ୍କୁ ତଥା ସ୍ନେହୀ ପରିଜନମାନଙ୍କୁ ବୁଝେଇ କହିଲେ—"ହେ ରାଣୀମାନେ, ଦେଖ, ରାଜର୍ଷି ସୁଯଜ୍ଞଙ୍କର କାଳ ଉପସ୍ଥିତ ହୋଇ ଯାଇଥିଲା, ତେଣୁ ବିନା ସେ ଶତ୍ରୁ ହାତରେ ନିହତ ହେଲେ, ନ ହେଲେ ସେ ସର୍ବଦା ଯୁଦ୍ଧରେ ବିଜୟଲାଭ ହିଁ କରୁଥିଲେ । ସମୟ ସବୁ କିଛି କରାଇ ନିଏ । ତେଣୁ ତୁମେମାନେ ଦୁଃଖ କରନାହିଁ । ଏହି ରାଜର୍ଷିଙ୍କର ଔର୍ଦ୍ଧ୍ୱଦୈହିକ କ୍ରିୟା ହେବାକୁ ଦିଅ । ଏହାଙ୍କର ମୃତଶରୀର ସାଙ୍ଗରେ ମୋହ କଲେ, ବୃଥା ଶୋକ କଲେ ଲାଭ କ'ଣ ?"

ନାରଦ କହୁଛନ୍ତି—"ମହାରାଜ, ଏହିପରି ହିରଣ୍ୟକଶିପୁ ଆପଣାର ମାତା ତଥା ଅନ୍ୟାନ୍ୟ ପ୍ରିୟ ପରିଜନମାନଙ୍କୁ ବୁଝେଇ ସୁଯଜ୍ଞଙ୍କ କଥା ଶୁଣେଇଲେ ।" ହିରଣ୍ୟକଶିପୁ କହିଲେ—"ସୁଯଜ୍ଞଙ୍କର ପରିଜନମାନଙ୍କୁ ସେହି ଜ୍ଞାନୀ ବାଳକ ଆହୁରି ମଧ୍ୟ ଅନେକ କଥା ଶ୍ଳୋକ ଶାନ୍ତିର ଉଦ୍ଦେଶ୍ୟରେ କହିଲେ । ତାହା ମଧ୍ୟ ଆପଣମାନେ ଏକାଗ୍ର ଚିତ୍ତ ହୋଇ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ବ୍ୟାଘ୍ର ପକରି ଲେ ଗୟୋ ହତୋ ଇକ ମୁନି ସୁତ ବାକୁଁ ।
ଆୟୁ ଶେଷ କଛୁ ହତୀ ପୁନ୍ରବତ ପାଲେୟା ତାକୁଁ ॥
ବ୍ୟାଘ୍ରନି ମହିଁ ଇ ରହେ ସଙ୍ଗ ଉନକେ ବନ ଜାବେ ।
ହାଥ ପୈର ତେଂ ଚଲେ ମାଂସ ତିନକେ ସଙ୍ଗ ଖାବେ ।
ପରଶୁରାମ ନର ଶିଶୁ ନିରଖି, ଆଶ୍ରମକୁଁ ସଙ୍ଗ ଲେ ଗୟେ ।
ପାଲେୟା ପୁନି ସୁତ କେ ସରିସ, ଅକୃତବ୍ରଣ ତେ ଭୟେ ॥

---

Digitized by srujanika@gmail.com

# ଆତ୍ମା ଶରୀରଠାରୁ ଭିନ୍ନ

ଯଥା ନଲୋ ଦାରୁଷ୍ୱ ଭିନ୍ନ ଇଷ୍ୟତେ,
ତଥା ନଲୋ ଦେହଗତଃ ପୃଥକ ସ୍ମୃତଃ ।
ଯଥା ନଭଃ ସର୍ବଗତଂ ନ ସଜ୍ଜତେ
ତଥା ପୁମାନ୍‌ସର୍ବଗୁଣାଶ୍ରୟଃ ପରଃ ॥

( ଶ୍ରୀ ଭା ୭ ସ୍କ ॥ ୨ୟ ଅ ॥ ୪୩ ଶ୍ଲୋକ )

## ଛପ୍‌ପୟ

ଆତ୍ମା ହୈ ନିର୍ଲେପ ରହେ ନିତ ପୃଥକ ଦେହତେଂ ।
ଜୈସେ ଗେହୀ ରହେ ଭିନ୍ନ ହୀ ସଦା ଗେହତେଂ ॥
ଜଲ ମହଂ ବୁଦବୁଦ ହୋହିଁ ନହୀଂ ତେ ଜଲ କହଲାବେଂ ।
କନକ ଏକ ରସ ରହେ ହାର କଙ୍କଣ ମିଟି ଜାବେଁ ॥
ଅନଲ କାଠତେଂ ଅଲଗ ହୈ,ବାୟୁ ଦେହ ତେଁ ପୃଥକ ଜେୟାଂ ।
ହୈ ଅସଙ୍ଗ ନମ ସର୍ବଗତ ଆତ୍ମା, ହୃ. ନିର୍ଲେପ ତ୍ୟୋଂ ॥

ଯେଉଁଭଳି ପଦ୍ମପତ୍ର ସରୋବର ମଧ୍ୟରେ ରହିଥାଏ, ମାତ୍ର ତାହା ସହିତ ଲିପ୍ତ ହୋଇ ରହି ନ ଥାଏ, ସେହିଭଳି ଆତ୍ମା ଶରୀର ମଧ୍ୟରେ ସ୍ଥିତ; ମାତ୍ର ଶରୀରର ସୁଖ-ଦୁଃଖ, କ୍ଷୟ ବୃଦ୍ଧି, ହାନିଲାଭ, ଚିନ୍ତା ଶୋକ ତଥା ଜନ୍ମ ମରଣ ସହିତ ତା'ର କୌଣସି ସମ୍ବନ୍ଧ ନାହିଁ । ଯେଉଁମାନେ ଦେହ ଏବଂ ଆତ୍ମା ମଧ୍ୟରେ ପାର୍ଥକ୍ୟ ଭୁଲି ଉଭୟଙ୍କୁ ଏକ ବୋଲି ମନେ କରିଥାନ୍ତି, ଶରୀରକୁ ହିଁ ଆତ୍ମା ମନେକରି ନିରନ୍ତର ତା'ର ପାଳନ-ପୋଷଣରେ ବ୍ୟଗ୍ର ରହିଥାନ୍ତି, ସେଇମାନେ ହିଁ ଅଜ୍ଞାନୀ । ଯେତେବେଳେ ମନୁଷ୍ୟର ଏଇ ବୋଧ ଆସିବ ଯେ ଆତ୍ମାର ଦେହର ସୁଖ ଦୁଃଖର ସହିତ କୌଣସି ସମ୍ବନ୍ଧ ନାହିଁ, ଆତ୍ମା ତ ନିତ୍ୟ, ଶାଶ୍ୱତ, ଦ୍ୱନ୍ଦ୍ୱଠାରୁ ପୃଥକ୍ ତଥା ଅସଙ୍ଗ । ଏଭଳି ଜ୍ଞାନର ଉଦୟ ଯାହାଠାରେ ହୋଇଥାଏ, ତାକୁ ଲୋକେ ବ୍ରହ୍ମଜ୍ଞାନୀ ବୋଲି କହିଥାନ୍ତି । ବ୍ରହ୍ମଜ୍ଞାନୀର ଦୁଃଖ ଶୋକ ଜାତ ହୁଏନାହିଁ । ଏକତ୍ୱ ଭାବନା ହେତୁ ସେ ସର୍ବଦା ଶୋକ ମୋହ ରହିତ ହୋଇ ରହିଥାଏ ।

Digitized by srujanika@gmail.com

ହିରଣ୍ୟକଶିପୁ ଆପଣାର ମାତାଙ୍କୁ ସମ୍ବୋଧିତ କରି ସମସ୍ତଙ୍କୁ ପ୍ରବୋଧିତ କରି କହିଲ—"ମାଆ, ସେହି ଜ୍ଞାନୀ ବାଳକ ସୁଯଜ୍ଞର ପତ୍ନୀମାନଙ୍କୁ ଜ୍ଞାନ ଉପଦେଶ ଦେଇ କହିଲେ—"ହେ ରାଣୀମାନେ, ଆପଣମାନେ ବିଗ୍ଭର କରନ୍ତୁ, ଆପଣ କାହାପାଇଁ ରୋଦନ କରୁଛନ୍ତି?"

ଜଣେ ରାଣୀ କାନ୍ଦି କାନ୍ଦି କହିଲେ—"ଆମର ପତିଦେବ ପରଲୋକ ଗମନ କଲେ । ତାଙ୍କର ବିୟୋଗରେ ଆମର ଦୁଃଖ ହେବା ସ୍ୱାଭାବିକ ଏବଂ ଦୁଃଖରେ ସମସ୍ତେ ପ୍ରାୟ ରୋଦନ ହିଁ କରିଥାନ୍ତି ।"

ସେଇ ବାଳକରୂପୀ ଯମ ପଚାରିଲେ—"ମୁଁ ତ ସେଇ କଥା ପଚାରୁଛି । ତୁମମାନଙ୍କର ପତି କିଏ ? ଗୋଟିଏ ଦେହ, ଗୋଟିଏ ଜୀବାତ୍ମା । ଯଦି ତୁମେ ଦେହ ନିମନ୍ତେ ରୋଦନ କରୁଅଛ, ତା'ହେଲେ ସେ ଦେହ ତ ତମ ଆଗରେ ପଡ଼ିଛି । ତମେ କହିପାର ଏହା ମୃତ ଦେହ, ତା ଦେହରୁ ଜୀବାତ୍ମା ଚାଲିଯାଇଛି; ମାତ୍ର ଜୀବାତ୍ମା କେବେହେଲେ ମରେ ନାହିଁ । ଯେମନ୍ତ ଗୋଟିଏ ବସ୍ତ୍ର ପରିତ୍ୟାଗ କରି ଅନ୍ୟବସ୍ତ୍ର ଧାରଣ କରିଯାଏ ସେପରି ଜୀବାତ୍ମା ଗୋଟିଏ ଶରୀର ତ୍ୟାଗକରି ଅନ୍ୟ ଶରୀର ଧାରଣ କରେ । ଏ ଶରୀର ପଞ୍ଚଭୂତ ଦ୍ୱାରା ଗଠିତ, ସେ ଆପଣାର କାରଣରୂପ ଲିଙ୍ଗ ଦେହର ଧର୍ମ, ଅଧର୍ମ, ପାପପୁଣ୍ୟ ଆଦି କର୍ମ ଅନୁସାରେ ସମୟ ସମୟରେ ଭିନ୍ନ ଭିନ୍ନ ଯୋନିରେ ଭିନ୍ନ ଭିନ୍ନ ଦେଶରେ ଜନ୍ମଗ୍ରହଣ କରେ ଏବଂ ମରେ । କିନ୍ତୁ ଶରୀର ଜନ୍ମ ମରଣ କିମ୍ବା ସହିତ ଆତ୍ମାର କୌଣସି ସମ୍ବନ୍ଧ ନାହିଁ । ଯଦ୍ୟପି ଜୀବାତ୍ମା ଶରୀର ମଧ୍ୟରେ ସ୍ଥିତ ତଥାପି ଶରୀର ଉତ୍ପନ୍ନ ଓ ନଷ୍ଟ ହେବା ସାଙ୍ଗରେ ତା'ର ଅଣୁମାତ୍ର ସମ୍ବନ୍ଧ ନାହିଁ ।"

ଏହା ଶୁଣି ବୃଦ୍ଧମନ୍ତ୍ରୀ ପଚାରିଲେ – "ବାଳକ, ତୁମେ ବ୍ରହ୍ମଜ୍ଞାନୀ ଭଳି ମନେ ହେଉଛ । କହ, ଯେତେବେଳେ ଆତ୍ମାର ଶରୀରର ସୁଖ-ଦୁଃଖ, ଜନ୍ମ-ମରଣ ଆଦି ସହିତ କୌଣସି ସମ୍ବନ୍ଧ ନାହିଁ, ତେବେ ମନୁଷ୍ୟ ଏଇ ଶରୀରକୁ ଆପଣାର ଭାବ ତାହା ସହିତ ଏତେ ମମତ୍ୱ କାହିଁକି ସ୍ଥାପନ କରେ ?"

ବାଳକ ଦୃଢ଼ ସ୍ୱରରେ କହିଲେ—"ମନ୍ତ୍ରୀ ମହୋଦୟ, ଏହି ମମତ୍ୱର କାରଣ ହେଉଛି ମାୟା ମୋହ । ଦେଖନ୍ତୁ, ନିଜ ଗାଆଁଠାରୁ ଅନେକ ଦୂରରେ ପୋଖରୀଟିଏ ଅଛି, ସେଠାକାର ମାଟିରୁ ଇଟା ତିଆରି ହେଲା । କାହା ପାଖରେ ଲକ୍ଷେ ଟଙ୍କା ଅଛି । କାଲି ପର୍ଯ୍ୟନ୍ତ ସେ ତାକୁ ମୋର ବୋଲି କହୁଥିଲା । କୌଣସି କାରଣରୁ ସେ ପଇସା ମୋ ପାଖକୁ ଆସିଗଲା । ତା'ପରେ ସେ ପଇସା ଉପରେ ମୋର ମମତ୍ୱ ବଢ଼ିଗଲା । ସେ ଟଙ୍କାକୁ ମୁଁ ମୋର ଟଙ୍କା ବୋଲି କହି ବସିଲି । ଯେତେବେଳେ ଇଟା ତିଆରି ହୋଇଗଲା, ମୁଁ ସେଥିରୁ କିଛି ଟଙ୍କା ଦେଇ ସେ ଇଟା କିଣିଆଣିଲି । ଇଟାପାଇଁ ଯେଉଁ ପଇସା ଦେଇଦେଲି ସେଥିରୁ ମୋର ମୋହ ତୁଟିଗଲା, ମାତ୍ର ସେଇ ଟଙ୍କାଟି

Digitized by srujanika@gmail.com

ବଦଳରେ ମୋହ ଆସିଲା ମାଟିରେ ଗଢ଼ା ଇଟାପ୍ରତି । କିଛି ପଇସା ଦେଇ ଲୁହା, କାଠ କିଛି ପଇସା ଦେଇ ଚୂନ ସିମେଣ୍ଟ ନେଇ ଆସିଲି, ଆଉ ଏକ ଭବନ ତିଆରି ହୋଇଗଲା । ସେଥିରେ ଲାଗୁଥିବା ଇଟା, ଲୁହା, କାଠ, ସିମେଣ୍ଟ କାହା ସାଙ୍ଗରେ ଆମର ସମ୍ବନ୍ଧ ନାହିଁ । କିନ୍ତୁ ଯେତେବେଳେ ଘର ତିଆରି ହୋଇଗଲା, ସେତେବେଳେ ଗର୍ବରେ କୁହାହେଲା—"ଏ ମୋର ଘର, ମୋର ଭବନ, ମୁଁ ତା'ର ସ୍ୱାମୀ ।" ମୋତେ କେହି ପଚାରୁ—"ଭାଇ, ଏଥିରେ ତମର କ'ଣ କ'ଣ ଲାଗିଛି ? ଶରୀରର କେଉଁ ଅଙ୍ଗ କାଟି ତମେ ଏହାକୁ ଗଢ଼ିଛ ?" ତା'ହେଲେ ଏହା ହିଁ ଉତ୍ତର ହେବ ଯେ, ମୋର କୌଣସି ବସ୍ତୁ ଲାଗିନାହିଁ । କେବଳ ଆପଣାପଣ । କିଛି ସମୟ ପରେ ନିଃସ୍ୱ ହୋଇଗଲେ, ଘର ବିକା ହୋଇଗଲା । ସେତେବେଳେ ଘର ସାଙ୍ଗରେ ଆମେ ଆଉ ତ ବିକା ହେଲୁ ନାହିଁ ! ଯେଉଁଭଳି ଘର ତିଆରି ହେବା ଆଗରୁ ଥିଲି, ସେମିତି ରହିଛେଁ । ଭବନ ମଧ୍ୟ ଯେମିତିକୁ ସେମିତି ରହିଛି । ମାତ୍ର ସେଥିରୁ ଆମର ମମତ୍ୱ ଚାଲିଗଲା । ଆପଣା ପଣଟି ଚାଲିଗଲା । ଯେଉଁପରି ଗୃହସ୍ୱାମୀ ଗୃହଠାରୁ ପୃଥକ୍, ସେଭଳି ଦେହଠାରୁ ଆତ୍ମା ସର୍ବଦା ପୃଥକ୍ । ଅଜ୍ଞାନବଶତଃ ଜୀବ ଏ ଶରୀରକୁ ଆତ୍ମା ବୋଲି ଧରିନେଇଛି ।

ଜଳରୁ ଲହଡ଼ା ଉତ୍ପନ୍ନ ହୋଇଥାଏ । ବୁଦ୍‌ବୁଦ୍ ଜାତ ହୁଏ । ତେବେ ବି ସେମାନେ ଜଳ ବୋଲାନ୍ତି ନାହିଁ । ଜଳ ସହିତ ସେମାନଙ୍କର କୌଣସି ସମ୍ବନ୍ଧ ନାହିଁ, ଜଳ ତ ଯେଉଁଭଳି ସ୍ୱଚ୍ଛ ଓ ନିର୍ମଳ ରହିଥାଏ । ସେହିଭଳି ଦେହର ସଂଯୋଗ ବିୟୋଗରେ, ଜନ୍ମ ମୃତ୍ୟୁରେ ଆତ୍ମାର କୌଣସି ସମ୍ବନ୍ଧ ନାହିଁ । ଏହାକୁ ମନଦେଇ ବୁଝ । ମାଟିରୁ ଘଟ ତିଆରି ହେଲା, ଆଟିକା ହେଲା, କେତେ କ'ଣ ହେଲା । ଚିନିରେ ସେମିତି ଘୋଡ଼ା ହେଲା, ହାତୀ ହେଲା, ଓଟ ହେଲା, ବାଛୁରୀ ହେଲା, ଲୁଣ ଦେହରୁ ଚୂଡ଼ି ତିଆରି ହେଲା, ନାନାରକମ ଆକୃତି ତିଆରି ହେଲା । ସୁନାରୁ କଙ୍କଣ, କୁଣ୍ଡଳ, କର୍ଣ୍ଣ ଫୁଲ କେତେ କ'ଣ ହେଲା, ସେମିତି ରୂପାରୁ । ତିଆରି ହେଲା ଆଗରୁ ମାଟି, ଚିନି, ଲୁଣ, ସୁନା, ରୂପା ଯେଉଁ ସ୍ୱରୂପରେ ଥିଲେ, ତିଆରି ହେଲା ପରେ ନୂଆ ନାଆଁ ଓ ଆକୃତିକୁ ବାଦଦେଲେ ସେହି ସ୍ୱରୂପ ହିଁ ରହିଲା । ଘଟ, ହାଣ୍ଡି ଆଟିକା ଆଦିରେ ମାଟି ଛଡ଼ା ଆଉ କିଛି ନାହିଁ । ଚିନିର ହାତୀ, ଘୋଡ଼ା ଯାହା ଉଠେଇନେଲେ ବି ସେଥିରେ ଚିନି ଛଡ଼ା ଆଉ କିଛି ନାହିଁ । ହାତୀ, ଘୋଡ଼ା ହେବା ପୂର୍ବରୁ ଯେଉଁ ଚିନିଥିଲା ହେଲାପରେ ବି ସେଇ ଚିନି ହିଁ ରହିଛି । ଭାଙ୍ଗିଗଲେ ବି ସେଇ ଚିନି ହୋଇଯିବ । ଯେଉଁପରି ନାମ ଏବଂ ଆକୃତିର କାରଣରୁ ଚିନି ଆଦି ବସ୍ତୁର କୌଣସି ପରିବର୍ତ୍ତନ ହେଲା ନାହିଁ, ସେହିପରି ନାନା ଦେହ ଧାରଣ କଲେ ମଧ୍ୟ ଆତ୍ମାର କୌଣସି ପରିବର୍ତ୍ତନ ହୁଏ ନାହିଁ । ତା'ର ନିଃସଙ୍ଗତା ଓ ନିତ୍ୟତା ନଷ୍ଟ ହୁଏ ନାହିଁ ।"

ଏହା ଶୁଣି ପୁରୋହିତ ପଚାରିଲେ—'ଭାଇ, ଆତ୍ମା ଶରୀର ମଧ୍ୟରେ ଥାଇ ମଧ୍ୟ ପୃଥକ୍ କିଭଳି ରହିଥାଏ ?"

Digitized by srujanika@gmail.com

ବାଳକ କହିଲେ—"ଦେଖନ୍ତୁ, ଦୁଇଟି କାଠର ଘର୍ଷଣ ଫଳରେ ଅଗ୍ନି ଉତ୍ପନ୍ନ ହୋଇଥାଏ । ଏଥିରୁ ବିଦିତହୁଏ ଯେ କାଠ ଦେହରେ ପୂର୍ବରୁ ଅଗ୍ନି ବିଦ୍ୟମାନ ଥିଲା । ଘର୍ଷଣ ଫଳରେ ପ୍ରକଟିତ ହୋଇଗଲା । ତଥାପି ବି କେହି କାଠର ନାଆଁ ବୋଲି ତ କହେ ନାହିଁ । ଅଗ୍ନି ତ କାଠଠାରୁ ସବୁବେଳେ ପୃଥକ୍ । ବାୟୁ ଶରୀରର ଲୋମଲୋମରେ ବ୍ୟକ୍ତ ହୋଇରହିଛି । ବାୟୁ ବିନା ଶରୀରର କୌଣସି ଅସ୍ତିତ୍ୱ ନାହିଁ । ତଥାପି ମଧ୍ୟ ବାୟୁ ଦେହ ନୁହେଁ । ଦେହଠାରୁ ବାୟୁ ସର୍ବଥା ପୃଥକ୍ । ସେହିପରି ଆକାଶ ସର୍ବଗତ । କୌଣସି ସ୍ଥାନ ଏଭଳି ନାହିଁ, ଯେଉଁଠାରେ ଆକାଶ ନାହିଁ । ବ୍ୟବହାରିକ ଢଙ୍ଗରେ କହୁଥାନ୍ତି ଏ ଆକାଶ ଘଟର, ଏ ଭବନର ଆକାଶ । ଏହା ଦେହର ଛିଦ୍ରର ଆକାଶ । ଅନେକ ପ୍ରକାର ପ୍ରଭେଦ ଥାଇ ମଧ୍ୟ ସ୍ୱୟଂ ଆକାଶରେ କୌଣସି ଭେଦ ନାହିଁ । ସେ ସଦା ଅସଙ୍ଗ ହୋଇ ରହିଥାଏ । ସେହିଭଳି ଆତ୍ମାବିନା ଶରୀର ସତ୍ତା ସ୍ଥିତ ନାହିଁ । ତଥାପି ମଧ୍ୟ ଆତ୍ମାଶରୀର ନୁହେଁ । ଶରୀରଠାରୁ ପୃଥକ୍ ନିର୍ଲେପ ଓ ସ୍ୱତନ୍ତ୍ର । ଦେହ ପାଇଁ ଯଦି ତୁମେମାନେ ରୋଦନ କରୁଥାଅ, ତା'ହେଲେ ଦେହ ତମ ସମ୍ମୁଖରେ ରହିଛି । ଆତ୍ମା ନିମନ୍ତେ ଯଦି ଦୁଃଖ କରୁଥାଅ, ତା'ହେଲେ ଆତ୍ମା ତ ମରେ ନାହିଁ, ତା ଲାଗି ଦୁଃଖ କରିବା ବୃଥା । ଆତ୍ମା କାହାକୁ ଦେଖାଯାଏ ନାହିଁ ।"

ଏହା ଶୁଣି ରାଣୀମାନେ କହିଲେ—"ଆତ୍ମା ଦେଖାଯାଏ ନାହିଁ; କିନ୍ତୁ ଯାହା ଦ୍ୱାରା ଏ ଶରୀର ଜୀବିତ ରହିଥିଲା, ସେଇ ପ୍ରାଣ ତ ଏ ଶରୀରରେ ଦେଖା ଯାଉଥିଲା । ସେହି ପ୍ରାଣ ବିନା ହିଁ ଏ ଶରୀର ନିଷ୍ପ୍ରାଣ ହୋଇପଡ଼ିଛି । ତା'ରି ଲାଗି ଆମର ଶୋକ ।"

ଏହା ଶୁଣି ବାଳକ କହିଲେ—"ପ୍ରାଣ ତ ଶୁଣେ ନାହିଁ, କହେ ନାହିଁ । ଯଦିଓ ଏ ମହାପ୍ରାଣ ସମସ୍ତ ଇନ୍ଦ୍ରିୟମାନଙ୍କ ମଧ୍ୟରେ ପ୍ରଧାନ; ତଥାପି ମଧ୍ୟ ଆତ୍ମା ପ୍ରାଣ ନୁହେଁ । ଏଇ ଶରୀରର ଆଶ୍ରୟ ତ ପ୍ରାଣ । ପ୍ରାଣ ମଧ୍ୟ ଯା'ର ପ୍ରେରଣାରେ ପରିଚାଳିତ, ସେହି ଆତ୍ମା ତ ଦେହ, ମନ, ବୁଦ୍ଧି ତଥା ପ୍ରାଣ—ଏ ସବୁଠାରୁ ପୃଥକ୍ ।"

ଆତ୍ମା ଯଦ୍ୟପି ସର୍ବଗତ, ଦେହାଦିଠାରୁ ଭିନ୍ନ; ତଥାପି ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, କାନ, ମୁଖ, ଆଖି, ଜିହ୍ୱା, ବାକ୍, ହାତ, ଗୋଡ଼, ଲିଙ୍ଗ, ଗୁହ୍ୟଦ୍ୱାର ଏବଂ ମନ ଆଦି ଇନ୍ଦ୍ରିୟମାନଙ୍କରେ ପ୍ରତୀତ ହେଉଥିବା ଉତ୍ତମ ଅଥବା ଅଧମ, ଉଚ୍ଚ ଅଥବା ନୀଚ ଯୋନିମାନଙ୍କୁ ଆପଣାର ତେଜଦ୍ୱାରା, ଆପଣାର ସାକ୍ଷୀପଣରେ, ସମୟ ଆସିଲେ ଗ୍ରହଣ କରେ ଏବଂ କାଳ ଆଗତ ହେଲେ ତ୍ୟାଗ କରିଦିଏ ।"

ଏହା ଶୁଣି ପୁରୋହିତ ପଚାରିଲେ—"ତା'ହେଲେ ଆତ୍ମାକୁ କର୍ମାନୁସାରେ ଉତ୍ତମ, ଅଧମ ଆଦି ଯୋନିରେ କାହିଁକି ଜନ୍ମ ଗ୍ରହଣ କରିବାକୁ ପଡ଼ୁଥାଏ ? କାହିଁକି ସୁଖ-ଦୁଃଖ, ସ୍ୱର୍ଗ-ନର୍କ ଆଦି ଭୋଗ କରିବାକୁ ପଡ଼େ ?"

Digitized by srujanika@gmail.com

ଏହା ଶୁଣି ବାଳକ କହିଲେ—"ଆତ୍ମା ଯେତେବେଳେ ଯାଏ ଲିଙ୍ଗ ଶରୀରରେ ସଂଯୁକ୍ତ ହୋଇଥିବା ଭଳି ଥାଏ, ସେତେବେଳେ ଯାଏ ତାକୁ କର୍ମ ବନ୍ଧନ ଭଳି ପ୍ରତୀତ ହୁଏ । ତେଣୁ ତାକୁ ଶୋକ, ମୋହ, ନାନା କ୍ଳେଶ ପୁନଃ ପୁନଃ ପ୍ରାପ୍ତ ହୋଇଥାଏ । ବାସ୍ତବରେ ଆତ୍ମାରେ ତ ଏମନ୍ତ କିଛି ନ ଥାଏ; ମାୟାର କାରଣରୁ ହିଁ ଏପରି କଳ୍ପିତ ଭାବନା ଆସେ । ଏ ଯେଉଁ ସୁଖ-ଦୁଃଖ ଅଛନ୍ତି, ଏମାନେ ସତ୍ତ୍ୱଗୁଣ, ରଜୋଗୁଣ ଏବଂ ତମୋଗୁଣର ପରିଣାମ । ଏହା ସତ୍ୟ ନୁହେଁ, ମିଥ୍ୟାଭିନିବେଶ ।"

ପୁରୋହିତ ପଚାରିଲେ—"ଭାଇ, ଏ କଥା ତ ପୂରାପୂରି ଓଲଟା କଥା । ଯେଉଁ ବସ୍ତୁ ନାହିଁ, ସେଥିରେ ମିଥ୍ୟାଭିନିବେଶ କିଭଳି ହେବ !"

ବାଳକ କହିଲେ—"ତା'ହେଲେ ଶୁଣନ୍ତୁ । ଏ ପ୍ରସଙ୍ଗରେ ମୁଁ ଏକ ଦୃଷ୍ଟାନ୍ତ ଦେଉଛି । କେହି ଜଣେ ଭଦ୍ରଲୋକ ଏକ ମାଟି ଘଡ଼ିରେ ତେଲ କିଣି ଘରକୁ ଆଣୁଥିଲେ । ଭଦ୍ରଲୋକ ସ୍ୱୟଂ ତେଲ ଧରି କିପରି ଆଣନ୍ତେ ? ଲୋକେ ହସିବେ ! ତାହା ତାଙ୍କର ପଦ ପ୍ରତିଷ୍ଠାର ବିରୁଦ୍ଧ କଥା ।" ତେଣୁ ଜଣେ ନିର୍ଦ୍ଧନ ବ୍ୟକ୍ତିକୁ କହିଲେ—"ତୁ ଏ ତେଲ ଆମ ଘରେ ପହଞ୍ଚାଇ ଦେ, ମୁଁ ତୋତେ ଆଠଣା ଦେବି ।"

ସେ କହିଲା—"ମହାଶୟ, ମୁଁ ତ ବାରଣା ନେବି ।" ଶେଷରେ ଦଶ-ଅଣାରେ କଥାଟି ତୁଟିଲା । ସେ ଲୋକ ତେଲଘଡ଼ି ନେଇ ତାଙ୍କ ଘରକୁ ଗଲା । ଘର ଦୂର ଥିଲା । ତେଣୁ ଗଲା ବାଟରେ ସେ ଭାବିଲା, ଆଜି ମୋତେ ଦଶଅଣା ମିଳିଲେ ମୁଁ କ'ଣ କରିବି ? ସେ ଭାବିଲା ମୁଁ ଆଜି ସେଇ ବଗିଚାକୁ ଯିବି । ସେଠାରେ ଖୁବ କମ୍ ମୂଲ୍ୟରେ ଆମ୍ବ ମିଳେ । ସେଠାକାର ମାଳୀଟି ବି ମୋର ଖୁବ ଚିହ୍ନା । ଦଶଅଣାର ଆମ୍ବ ଆଣିବି । ବଜାରକୁ ଆଣି ବିକିଲେ ଟଙ୍କେ ଚାରଣା ହେବ । ଅନ୍ୟଦିନ ଟଙ୍କେ ଚାରଣାର ଆମ୍ବ ହେବ ଅଢ଼େଇ ଟଙ୍କା । ଆଠଣା ଖର୍ଚ୍ଚ ଖିଆପିଆରେ ଗଲେ ରହିବ ଦୁଇଟଙ୍କା । ତା'ପରଦିନ ଦୁଇ ଟଙ୍କାର ଆଣିଲେ ହେବ ଚାରିଟଙ୍କା । ତା'ପରେ ଚାରିଟଙ୍କାର ଆମ୍ବ ଆଠଟଙ୍କା ହେଲେ ଛ' ଟଙ୍କାରେ ଛେଳିଟିଏ, ଆଉ ଦୁଇ ଟଙ୍କାର ଆମ୍ବ କିଣି ଆଣିବି । ସେ ପୁଣି ହେବ ଚାରିଟଙ୍କା । ଏଣେ ଟଙ୍କା ବଢ଼ି ବଢ଼ି ଚାଲିଥିବ । ତେଣେ ବଢ଼ିବେ ଛେଳି । କ୍ଷୀର ବିକା ଚାଲିଥିବ, ଛେଳି ରଖା ଚାଲିଥିବ । ଯେତେବେଳେ ଅଧିକ ଗୁଡ଼ାଏ ଛେଳି ହେବେ, ସେମାନଙ୍କୁ ବିକିଦେଇ ଗାଈଟିଏ କିଣିବି । ପ୍ରତିବର୍ଷ ଛୁଆ ଦେବ । କ୍ଷୀର ଦେବ । ବାଛୁରୀମାନଙ୍କୁ ବିକି ମଇଁଷୀଟିଏ ନେଇ ଆସିବି । ଦଶ ପନ୍ଦର ସେର କ୍ଷୀର ପ୍ରତିଦିନ ନିଶ୍ଚୟ ହେବ । ବର୍ଷ ଶେଷକୁ ପାଞ୍ଚଶ ଟଙ୍କା ହେବ କ୍ଷୀରରୁ । ତା'ପରେ ବାହା ହେବି । ଘରେ ଛମ୍‌ଛମ୍ କରି ସ୍ତ୍ରୀ ପହଞ୍ଚିବ । କ୍ଷୀର ବିକି ତାପାଇଁ ସୁନା ରୁପାରେ ଅଳଙ୍କାର ଗଢ଼େଇ ଦେବି । ପାଞ୍ଚରଙ୍ଗୀ ଓଢ଼ଣୀ ଆଉ ଆଠଗଜା ଘାଘରା ତିଆରି କରେଇ ଦେବି । ସମସ୍ତେ ମୋତେ ଚୌଧୁରୀ

Digitized by srujanika@gmail.com

କହିବେ, ଆଉ ତାଙ୍କୁ କହିବେ ଚୌଧୁରିଆଣୀ । ତା'ପରେ ମୁଁ ବଡ଼ ଚୌପାଢ଼ୀଟିଏ ତିଆରି କରେଇବି । ପାଞ୍ଚ ସାତୋଟି ପୁଅଝିଅ ହେବେ । ସେମାନେ ବଡ଼ ହେବେ, ସେମାନଙ୍କର ବାହାଘର ହେବ । କେତେଇ ଭଲ ସୁନ୍ଦର ସୁନ୍ଦର ବୋହୂମାନେ ଆସିବେ । ମୋତେ ଦେଖିଲା ମାତ୍ରକେ ଓଢ଼ଣା ଟାଣି ନେଉଥିବେ । ମୁଁ ଘରେ ପହଞ୍ଚିଲେ ଗଳା ଖଙ୍କାରି ଭିତରେ ପଶୁଥିବି, ଯେମିତି ମୋ ଆସିବା ଜାଣି ସେମାନେ ଓଢ଼ଣା ଟାଣିନେବେ । ମୁଁ ଆଉ ସେତେବେଳେ କୌଣସି କାମଧାମ କରିବି ନାହିଁ । ଚଉପାଢ଼ୀରେ ନିଜ ଆସନରେ ବସି ହୁକ୍କା ଟାଣୁଥିବି । ମୋର ପୁଅମାନଙ୍କର ବି ପୁଅଝିଅ ହେବେ । ଯେତେବେଳେ ସେମାନେ ମୋତେ ଆସି କହିବେ—ଜେଜେବାପା ଆସ ଖାଇବ, ବୁଢ଼ୀମା କହୁଛନ୍ତି । ମୁଁ ସେତେବେଳେ ଖୁସିରେ ମୁଣ୍ଡ ହଲେଇ ଦେବି ।

ବାଳକ କହୁଛନ୍ତି—"ପୁରୋହିତ ମହାଶୟ ! ଏକଥାଗୁଡ଼ିକ ଭାବିବା ଭିତରେ ସେ ଏତେ ତନ୍ମୟ ହୋଇଗଲା ଯେ ସେ ଏକଥା ପୂରା ଭୁଲିଗଲା—ତା ମୁଣ୍ଡଉପରେ ତେଲ ଘଡ଼ି ରହିଛି । ଯେମିତି ସେ ମୁଣ୍ଡ ହଲେଇ ଦେଇଛି, ମୁଣ୍ଡ ଉପରୁ ତେଲଘଡ଼ି ଖସି ଫଟ୍‌କିନା ଫାଟିଗଲା । ସବୁ ତେଲ ତଳେ ଅଜାଡ଼ି ହୋଇଗଲା ।"

ଏକଥା ପାଇଁ ଭଦ୍ରଲୋକ ବିରକ୍ତ ହେଲେ । ଅତି ରାଗି କହିଲେ—"ତୁ ଭାରି ମୂର୍ଖ । ମୋର ଚାରିଟଙ୍କାର ତେଲ ନଷ୍ଟ କରିଦେଲୁ ।"

ସେଥିରେ ସେ ଚାକର କାନ୍ଦି କାନ୍ଦି କହିଲା—"ଆଜ୍ଞା, ଆପଣଙ୍କର ତ ମୋଟ ଚାରିଟଙ୍କାର କ୍ଷତି ହେଲା । ମାତ୍ର ମୋର ଭରିଲା ପୂରିଲା ଘର ଉଜୁଡ଼ି ଗଲା ।" ସେ ସ୍ତ୍ରୀ ପୁଅଝିଅ, ନାତି-ନାତୁଣୀ କଥା ମନେ ପକେଇ କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲା ।

ଜ୍ଞାନୀ ବାଳକ କହୁଛନ୍ତି—"ଦେଖନ୍ତୁ, ସେଇ ତେଲ ମୁଣ୍ଡେଇ ଯାଉଥିବା ଲୋକଟିର ବିବାହ ସୁଦ୍ଧା ହୋଇନଥିଲା । ପିଲାପିଲି ତ ଦୂରର କଥା; ମାତ୍ର ମନୋରଥ ଦ୍ୱାରା ପୂରା ଗୃହସ୍ଥ ହୋଇ ଯାଇଥିଲା ଓ ସେଇ ଗୃହସ୍ଥୀ ବିଫଳ ହେଲାରୁ କାନ୍ଦିବାକୁ ଲାଗିଲା । ଏଇ ସତ୍ୟ ମଧ୍ୟରେ ଅସତ୍ୟର ମିଥ୍ୟାଭିନିବେଶ ! ଆମେ ଶୋଇପଡ଼ୁଛୁଁ, ସ୍ୱପ୍ନ ଦେଖୁଛୁ, ରାଜା ହୋଇଯାଉଛୁ, ହାତୀ ଚଢ଼ି ଯାଉଛୁ । ଛତ୍ର ଚାମର ସବୁ ଅଛି । ଆଖି ଖୋଲିଲେ ନା ହାତୀ, ନା ଛତ୍ର ଚାମର ! ଯେଉଁ ଭଙ୍ଗା ଫଟା, ମଇଳା ଘରର ଘୋଡ଼ିହୋଇ ଭଙ୍ଗା କୁଡ଼ିଆଟିରେ ଶୋଇଛୁ, ଯେଉଁ ଘରେ ହାତୀର ପ୍ରବେଶ ତ ଦୂରର କଥା, ଗଧ ବି ପଶିପାରିବ ନାହିଁ । ଯେଉଁପରି ସ୍ୱପ୍ନକାଳୀନ ହାତୀ ନ ଥିଲେ ବି ସ୍ୱପ୍ନରେ ସତ୍ୟ ବୋଲି ମନେ ହୋଇଥିଲା, ସେହିଭଳି ଅବିଦ୍ୟାର କାରଣରୁ ଆତ୍ମା ଦେହଠାରୁ ପୃଥକ୍ ହୋଇଥିଲେ ମଧ୍ୟ, ବିଷୟ ଭୋଗ ମିଥ୍ୟା ହୋଇଥିଲେ ହେଁ ସତ୍ୟ ଭଳି ମନେହୁଏ । ଏଣୁ ତୁମେମାନେ ଯଦି ଆତ୍ମା ନିମନ୍ତେ ଶୋକ କରୁଛ, ତା'ହେଲେ ତାହା ସର୍ବଥା ବ୍ୟର୍ଥ । କାରଣ ଆତ୍ମା ନିତ୍ୟ, ନା ଜନ୍ମ ହୁଏ କିମ୍ବା ନା ମରେ । ଯଦି

Digitized by srujanika@gmail.com

ଦେହପାଇଁ ଶୋକ କରୁଅଛ, ତେବେ ଦେହ କ୍ଷଣଭଙ୍ଗୁର ଓ ଅନିତ୍ୟ, ତାର ବିନାଶ ଅବଶ୍ୟମ୍ଭାବୀ । ତାକୁ କେହି ଏଡ଼ାଇ ଦେବାକୁ ଇଚ୍ଛାକଲେ ମଧ୍ୟ ଏଡ଼ାଇ ଦେଇ ପାରିବ ନାହିଁ । ତୁମେମାନେ ଯେତେ ଶୋକ କଲେ ମଧ୍ୟ ଯେଉଁ ବସ୍ତୁର ଯାହା ସ୍ୱଭାବ, ତାହା କଦାପି ବଦଳିବ ନାହିଁ । ଯେଉଁ ଆତ୍ମା ନିତ୍ୟ, ଅଜର ଓ ଅମର ତାହା ପ୍ରଳୟ କଲେ ମଧ୍ୟ ଅନିତ୍ୟ ଓ ନାଶବାନ ହେବନାହିଁ । ତେଣୁ ଆପଣମାନେ ବୃଥାରେ ଶୋକ କରୁଛନ୍ତି । ଆପଣମାନଙ୍କର ଦୁଃଖ ଦେଖି ମୋର ଦୟା ଜାତ ହେଉଛି । ଏଣୁ ମୁଁ ଏ ପ୍ରସଙ୍ଗରେ ଆପଣମାନଙ୍କୁ ଏକ ରୋଚକ ସୁନ୍ଦର ଓ ଶିକ୍ଷାପ୍ରଦ କାହାଣୀ ଶୁଣାଉଛି । ତାକୁ ଆପଣମାନେ ସାବଧାନ ହୋଇ ଶ୍ରବଣ କରନ୍ତୁ ।

## ଛପ୍ପୟ

ମାୟା ବଶ ଇ କର୍ମବନ୍ଧ ମହଁ ଫଁସେଂ ଜୀବ ହୈ ।<br>
ମାୟା ବନ୍ଧନ କଟେ ଜୀବ ନହିଁ ଫେର ଶୀବ ହୈ ॥<br>
ମନ ତେ ମୋଦକ ଖାୟଁ ମୁଦିତ ଟାବେଂ ହର୍ଷାବେଂ ।<br>
ସପନେ ମହଁ ଧନହୀନ ଚକ୍ରବର୍ତ୍ତୀ ବନ ଜାବେଂ ॥<br>
ସ୍ୱପ୍ନ ମନୋରଥ କେ୍ୟାଂ ସବହ୍ୱଂ, କୈସ ସତ୍ୟାତୀତ ହୈ ।<br>
ତୈସେ ହି ଜଗ କୋ ବିଷୟ, ଭ୍ରମବଶ ହୋତ ପ୍ରତୀତ ହୈ ॥



Digitized by srujanika@gmail.com

# ସ୍ୱପରାଭିନିବେଶ ଅଜ୍ଞାନଜନ୍ୟ ଅଟେ

ତତଃ ଶୋଚତ ମା ଯୂୟଂ ପରଂ ଚାତ୍ମାନମେବ ଚ ।
କ ଆତ୍ମା କଃ ପରୋ ବାତ୍ର ସ୍ୱୀୟଃ ପାରକ୍ୟ ଏବ ବା ॥
ସ୍ୱପରାଭିନିବେଶେନ ବିନାଜ୍ଞାନେନ ଦେହିନାମ ॥

( ଶ୍ରୀ ଭା ୭ମ ସ୍କ ॥ ୨ୟ ଅ ॥ ୬୦ ଶ୍ଳୋକ )

ଛପ୍‌ପୟ୍

ଫଁସୀ କୁଲିଙ୍ଗୀ ଏକ ଜାଲ ମହିଁ ତଜି ନିଜ ସୁତପତି ।
ଲଖି କୁଲଙ୍ଗ ନିଜ ବଧୂ ଫଁସୀ ମନ ଭୟୋ ଦୁଖିତ ଅତି ।
ନୈନନ ନୀର ବହାୟ କହେ କୈସେ ଜୀଉଁ ଅବ ।
ପ୍ରିୟା ବିରହ ଅତି ଦୁସହ ଭୟେ ଅସହାୟ ସୁତ ସବ ॥
ଦେଇ ଦୈବ କୋ ଦୋଷ ପୁନି, କହେ ବିଧାତା କା କରୟୋ ।
ବ୍ୟାଧ ମାରୟୋ ବାନ ତକି, ଲଗତ ବାନ ମରି ଗିରି ପରୟୋ ॥

ଯେ ସିଂହ ପାଖରେ ସ୍ୱୟଂ ଭୟଭୀତ, ସେ ସିଂହଠାରୁ ଅନ୍ୟକୁ କେଉଁପରି ରକ୍ଷା କରିପାରିବ । ଯାହାକୁ ସର୍ପ ଦଂଶନ କରିଛି ସେ କିପରି ଅନ୍ୟକୁ ସର୍ପଦଂଶନରୁ ରକ୍ଷା କରିପାରିବ । ସେହିପରି ଯେଉଁ ପ୍ରାଣୀ ସ୍ୱୟଂ ମରଣଧର୍ମୀ, ଯା'କୁ ସ୍ୱତଃ ଦିନେ ମରିବାକୁ ଅଛି ସେ ଅନ୍ୟକୁ ମୃତ୍ୟୁ ମୁଖରୁ ସବୁଦିନ ପାଇଁ କିପରି ବଞ୍ଚେଇ ପାରିବ । ମରିବା ଲୋକପାଇଁ ଶୋକ କଲେ କୌଣସି ଲାଭ ତ ହୁଏ ନାହିଁ ବରଂ କ୍ଷତି ହୋଇଥାଏ । ଶରୀରରେ ଅଜ୍ଞାନତାର କାରଣରୁ, ମିଥ୍ୟାଭିନିବେଶ ହେତୁ ହିଁ ଶୋକ ତଥା ମୋହ ଜାତ ହୋଇଥାଏ ।

ହିରଣ୍ୟକଶିପୁ ଆପଣାର ଭ୍ରାତୃପତ୍ନୀଙ୍କୁ ସମ୍ବୋଧିତ କରି କହୁଛି—"କଲ୍ୟାଣୀ, ତୁମେ ସେଇ କଥା ଭାବ ଯେ, ତମେ କେବଳ ମାତ୍ର କାନ୍ଦୁଥିଲେ ଲାଭ କ'ଣ ହେବ ? ଦେଖ, ସୁଯଜ୍ଞର ପତ୍ନୀମାନେ ସୁଯଜ୍ଞର ମୃତ ଦେହକୁ ନେଇ ବିଳାପ କରୁଥିଲେ । ସେମାନଙ୍କୁ ସେଇ ଜ୍ଞାନ ବାଳକ ରୂପୀରେ ସାନ୍ତ୍ୱନା ଦେବାଭଳି ବୁଝେଇ ଦେଲା ଯେ, ଏ ମରଣଶୀଳ ଶରୀର କଦାପି ଅମର ହୋଇପାରିବ ନାହିଁ । ଯେଉଁ ଆତ୍ମା ଅମର,

Digitized by srujanika@gmail.com

ତା'ର କଦାପି ବିନାଶ ହେବ ନାହିଁ । ଏଣୁ ଏ ବିଷୟରେ ତୁମର ଶୋକ କରିବା ବୃଥା । ଏଥିରେ କୌଣସି ଲାଭ ତ ହେବ ନାହିଁ ବରଂ କ୍ଷତି ହେବ । ଏ ବିଷୟରେ ମୁଁ ତୁମକୁ ଏକ ସୁନ୍ଦର ଦୃଷ୍ଟାନ୍ତ ଶୁଣାଉଛି । ତୁମେ ଏହା ଦତ୍ତଚିତ୍ତ ହୋଇ ଶୁଣ ।

କୌଣସି ଏକ ଜଙ୍ଗଲରେ ଏକ କୁଳିଙ୍ଗ ପକ୍ଷୀଯୁଗଳ ବାସ କରୁଥିଲେ । କୁଳିଙ୍ଗ ପକ୍ଷୀ ଆପଣାର ପତ୍ନୀକୁ ଅତ୍ୟଧିକ ସ୍ନେହ କରୁଥିଲା, ପକ୍ଷିଣୀ ମଧ୍ୟ ପତିକୁ ପ୍ରାଣରୁ ବଳି ଭଲ ପାଉଥିଲା । ଉଭୟେ ଏକ ଗହନ ବୃକ୍ଷ ଶାଖାରେ ଆପଣାର ବସା ବାନ୍ଧିଥିଲେ । ଦୁହେଁ ଏକା ସାଙ୍ଗରେ ଖାଦ୍ୟ ସଂଗ୍ରହ କରିବାକୁ ଯାଆନ୍ତି, ଏକା ସାଙ୍ଗରେ ଫେରି ଆସନ୍ତି । ଏକା ସାଙ୍ଗରେ ଚଞ୍ଚୁରେ ଚଞ୍ଚୁ ମିଳେଇ ଖାଆନ୍ତି । ଏକା ସାଙ୍ଗରେ କାକଳି କରି, ଆନନ୍ଦ ବିହାର କରି ସୁଖରେ ସମୟ କାଟୁଥିଲେ । ସେମାନଙ୍କ ମଧ୍ୟରେ ଏତେ ଅଧିକ ସ୍ନେହ ଥିଲା ଯେ, କେତେବେଳେ ରାତି ହେଉଥିଲା, କେତେବେଳେ ଦିନ ହେଉଥିଲା, ତାହା ପ୍ରତୀତ ହେଉ ନ ଥିଲା । ସେମାନଙ୍କୁ କୌଣସି କଥା ଜଣାପଡୁ ନ ଥିଲା । ସେମାନେ ପାରସ୍ପରିକ ଅନୁରାଗରେ ଏତେ ଉନ୍ମତ୍ତ ଓ ମଦାନ୍ଧ ହୋଇ ରହିଥିଲେ ଯେ, ସେମାନଙ୍କର ନା ରାତ୍ରିର ଜ୍ଞାନ ଥିଲା ନା ଦିନର । ଏପରି ଭାବରେ ସେମାନଙ୍କର ଦିନ ଆନନ୍ଦରେ କଟୁଥିଲା ।

କିଛିଦିନ ପରେ ପକ୍ଷିଣୀ ଗୁଡ଼ିଗୋଟିଏ ଧଳା ଅଣ୍ଡା ଦେଲା । ତାକୁ ସେ ଅତ୍ୟନ୍ତ ସ୍ନେହରେ ପେଟ ତଳେ ଯାକିଧରି ଉଷୁମ କଲା । କାଳାନ୍ତରରେ ସେ ଅଣ୍ଡାମାନଙ୍କରୁ ଗୁଡ଼ିଗୋଟି ପକ୍ଷବିହୀନ ଶିଶୁ ଉତ୍ପନ୍ନ ହେଲେ । ସେହି ପକ୍ଷହୀନ ମାଂସପିଣ୍ଡ ସଦୃଶ ଅତି କୋମଳ ପକ୍ଷୀ ଶାବକମାନଙ୍କୁ ଦେଖି ପିତାମାତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଯେତେବେଳେ ସେମାନେ ଚେଁ ଚେଁ କରି ପିତାମାତାଙ୍କର ଦେହରେ ଜଡ଼େଇ ଗଲେ, ପକ୍ଷିଣୀ ଆଗେ ଆପଣାକୁ ଭୁଲି ଯାଉଥିଲା । ତା'ପରେ ସେହି ପକ୍ଷୀ ଓ ପକ୍ଷିଣୀଙ୍କର ଏକା ସାଙ୍ଗରେ ଆହାର ସଂଗ୍ରହ କରିଯିବା ବନ୍ଦ ହୋଇଗଲା । ଜଣେ ବସାରେ ରହି ପିଲା-ମାନଙ୍କର ଦେଖାଶୁଣା କଲା ଏବଂ ଅନ୍ୟ ଜଣକ ବାହାରକୁ ଯାଇ ଖାଦ୍ୟ ସଂଗ୍ରହ କରିବାକୁ ଲାଗିଲା । ପ୍ରାୟ ପକ୍ଷିଣୀ ଯାଏ, ଦାନା ନେଇଆସି ଚଞ୍ଚୁରେ ଧରି ପିଲାଙ୍କୁ ଖୁଆଇଦିଏ । ତା'ରି ଭିତରେ ପକ୍ଷୀ ଯାଏ, ଆଉ କିଛି ନେଇଆସେ । ପକ୍ଷୀ-ପକ୍ଷିଣୀ ପରସ୍ପର ମୋହ ମମତାରେ ଆବଦ୍ଧ ହୋଇ ଆପଣାର ଶାବକମାନଙ୍କର ଲାଳନ-ପାଳନରେ ବ୍ୟଗ୍ର ରହିଥିଲେ; ମାତ୍ର କାଳଦେବ ଅବ୍ୟଗ୍ର ଭାବରେ ସେମାନଙ୍କର ପ୍ରତୀକ୍ଷାରେ ରହିଥିଲେ । ଏଭଳି ପ୍ରତୀତ ହେଉଥିଲା, ଯେପରି କାଳଦେବଙ୍କର ଗଣନା ଏଠାରେ ଶେଷ ହୋଇ ଆସୁଥିଲା ।

ସେ ସମୟରେ ଏକ ବ୍ୟାଧ କାନ୍ଧରେ ଜାଲ ପକେଇ ଆସିଲା । ସତେ ଯେପରି ସାକ୍ଷାତ୍ ଯମଦେବ ବ୍ୟାଧରୂପରେ ଆସୁଥିବା ଭଳି ମନେ ହେଉଥିଲା । ତା'ର ଶରୀର ଅଞ୍ଜନ ଭଳି କଳା ଥିଲା । କେଶ କଠିଣ ଓ ତାମ୍ରବର୍ଣ୍ଣ ତଥା କପାଳ ସଂକୀର୍ଣ୍ଣ ଥିଲା ।

Digitized by srujanika@gmail.com

ନାକ ଚେପ୍ଟା ଓ ଆଖିଗୁଡ଼ିକ ଗୋଲ, ତଥା ଲାଲ ଲାଲ ମନେ ହେଉଥିଲା । ତା'ର ମୁଖମଣ୍ଡଳରେ କ୍ରୂରତା ଭାବ ଫୁଟି ଉଠୁଥିଲା । ତା'ର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ କର୍କଶ ଓ ଭୟାନକ ମନେ ହେଉଥିଲା । ସେ ସେଠାକୁ ଆସି ଜାଲ ବଛେଇଲା ଓ ଅନେକ ଖୁଦ ବୁଣିଦେଲା ।

ପକ୍ଷିଣୀ ଦେଖିଲା । ମନେ ମନେ ଭାବିଲା –"ଆଜ ଭଗବାନ ଅଚ୍ଛା ଜନକଙ୍କୁ ଭୋଜନ ପଠେଇ ଦେଇଛନ୍ତି । ସେ ତୁରନ୍ତ ଖୁଦ ଲୋଭରେ ବସାରୁ ଉଡ଼ିଗଲା । ସେ ଖୁଦ ପାଇଁ ଚଞ୍ଚୁ ମାରିବା ମାତ୍ରକେ ଜାଲରେ ଛନ୍ଦି ହୋଇଗଲା । ସେ ବହୁତ ଛଟପଟ ହେଲା । ତା'ର ମନରେ ଭୟ ହେଲା; ମାତ୍ର ସେ ଜାଲରେ ଛନ୍ଦି ହୋଇଗଲା ଯେ ଆଉ ଜାଲ ଫିଟିଲା ନାହିଁ ।"

ଦୂରରୁ ପକ୍ଷୀ ଦେଖିଲା–ଏ ତ ମୋର ପତ୍ନୀ, ଜାଲରେ ଛନ୍ଦି ହୋଇ ଯାଇଛି । ମୁଁ କ'ଣ କରିବି ? ଏ ବ୍ୟାଧ ତ ତାକୁ ମାରିଦେବ । ହାୟ, ମୁଁ ଏକାକୀ ହୋଇଯିବି । ସ୍ତ୍ରୀ ବିନା ଏକାକୀ ରହିବା ତ ମୃତ୍ୟୁଠାରୁ ମଧ୍ୟ ଦୁଃଖଦାୟକ । ସ୍ତ୍ରୀ ଘରର ଲକ୍ଷ୍ମୀ । ଗୃହିଣୀ ପାଇଁ ହିଁ ଗୃହର ଶୋଭା ବଢ଼େ । ସେ ହିଁ ଘରର ଦେଖାଶୁଣା କରିପାରେ । ତା' ବିନା ପିଲାମାନଙ୍କର ଲାଳନ ପାଳନ କରିବ କିଏ ? ଦୁଃଖ ସମୟରେ ମୋତେ ଧୈର୍ଯ୍ୟ ଦେବ କିଏ ? ମୋର ମନୋରଞ୍ଜନ କରିବ କିଏ ? ସେ ମୋତେ କେତେ ଭଲ ପାଏ ନାହିଁ । କେତେ ସ୍ନେହରେ ମହୁଠାରୁ ବି ମିଠା ମିଠା କଥା କହେ ନାହିଁ । ହାୟ, ଆଜ ମୋର କପାଳ ଫାଟିଲା । ମୁଁ ଅଧାଅଧି ଆଶ୍ରୟହୀନ, ଦୀନ ଅନାଥ ହୋଇଗଲି । ମୁଁ ମୋର ପ୍ରିୟତମା ପତ୍ନୀ ବିନା କପରି ବଞ୍ଚି ରହିପାରିବି ? ସେ ମୋତେ ଖୁଆଇ ଖାଉଥିଲା । ମୁଁ ଶୋଇଯିବା ପରେ ସେ ଶୋଉଥିଲା । ମୁଁ ଉଠିବା ପୂର୍ବରୁ ସେ ଉଠି ଯାଉଥିଲା । ମୋର ସବୁ ସଙ୍କେତ ଠିକ୍ ଠିକ୍ ବୁଝୁଥିଲା । ତା ବିନା ମୋ ଜୀବନ ନିତାନ୍ତ ଶୁଷ୍କ ଓ ନୀରସ ହୋଇଯିବ ।

ବାଲକ କହୁଛନ୍ତି–"ହେ ରାଣୀମାନେ, ଏପରି ଭାବରେ ସେ କଳିଙ୍ଗ ପକ୍ଷୀ ଶୋକରେ ଅଧୀର ହେଉଥିବାବେଳେ ସେଇ ବ୍ୟାଧ ଲୁଚିରହି ତାକୁ ଶରବିଦ୍ଧ କଲା । ଶର ଯାଇ ଠିକ୍ ତା'ର ଛାତିରେ ବାଜିଲା ଏବଂ ତତ୍‌କ୍ଷଣାତ୍ ପକ୍ଷୀଟି ମରି ତଳେ ପଡ଼ିଗଲା । ମୂର୍ଖ ରାଜା ! ପୂର୍ବରୁ ଯେ ଆପଣା ପତ୍ନୀର ଭାବିମୃତ୍ୟୁ ନିମନ୍ତେ ଶୋକରେ ଅଧୀର ହେଉଥିଲା, ତାକୁ ହିଁ ମୃତ୍ୟୁର ସମ୍ମୁଖୀନ ହେବାକୁ ପଡ଼ିଲା । ସେ ତା'ର ଜୀବନ ହରେଇଲା । ସେଇଭଳି ତୁମେମାନେ ମଧ୍ୟ ରାଜର୍ଷିଙ୍କ ନିମନ୍ତେ ବ୍ୟର୍ଥ ଶୋକ କରୁଛ । ଦିନେ ତୁମମାନଙ୍କୁ ସେଇ ରାସ୍ତାରେ ଯିବାକୁ ହେବ । ଦିନେ ତୁମମାନଙ୍କୁ ମଧ୍ୟ ମୃତ୍ୟୁର ଜାଲରେ ପଡ଼ିବାକୁ ହେବ । ତୁମେମାନେ ଏପରି ଭାବରେ ଶହେବର୍ଷ ପର୍ଯ୍ୟନ୍ତ ବସିରହି କାନ୍ଦିଲେ ମଧ୍ୟ ତୁମର ସ୍ୱାମୀଙ୍କୁ ଫେରିପାଇବ ନାହିଁ ।"

Digitized by srujanika@gmail.com

ହିରଣ୍ୟକଶିପୁ ମାତାଙ୍କୁ ସମ୍ବୋଧନ କରି କହୁଛି—"ମାତା, ସେଭଳି ଆପଣ ମଧ୍ୟ ଯେତେ ଶୋକ କରନ୍ତୁ ନା କାନ୍ଦିକ, ଆପଣଙ୍କର ପୁଅ ହିରଣ୍ୟାକ୍ଷକୁ ଫେରି ପାଇବେ ନାହିଁ । ତାକୁ ତ କାଳରୂପୀ କୃଷ୍ଣ ଶୂକର ରୂପରେ ମାରି ପରଲୋକରେ ପହଞ୍ଚାଇ ଦେଇଛି ।"

ସେଇ ବାଳକର କଥା ଶୁଣି ଶୁଣି ସୁଯଜ୍ଞଙ୍କର ପରିଜନମାନଙ୍କର ଗାଢ ପାହିଗଲା । ରାତି ପାହିଲା ପରେ ସମସ୍ତଙ୍କର ବୋଧ ଜାତ ହେଲା । ସେଇ ଜ୍ଞାନୀ ବାଳକର କଥା ସମସ୍ତଙ୍କୁ ପ୍ରଭାବିତ କରିଥିଲା । ରାଣୀମାନେ ମୃତ ପତିଙ୍କର ଶରୀରକୁ ଆଲିଙ୍ଗନ କରି ଯାହା ବସିଥିଲେ ଛାଡ଼ିଦେଲେ । ରାଜାଙ୍କର ବନ୍ଧୁ ବାନ୍ଧବମାନେ ଚନ୍ଦନ କାଠରେ ଚିତା ସଜାଡ଼ି ଶାସ୍ତ୍ରୀୟ ବିଧିରେ ଦାହ ସଂସ୍କାର କଲେ । ତା'ପରେ ସମସ୍ତ ଔର୍ଦ୍ଧ୍ୱଦୈହିକ କର୍ମ କଲେ । ସମସ୍ତେ ଦେଖୁ ଦେଖୁ ସେ ବାଳକ ସେଠାରେ ଅନ୍ତର୍ଦ୍ଧାନ ହୋଇଗଲା ।

ଶୌନକ କହୁଛନ୍ତି—"ହେ ସୂତ, ପାଞ୍ଚ ଛ' ବର୍ଷର ବାଳକଟିର ଏତେ ଜ୍ଞାନ ହେବା କ'ଣ ସମ୍ଭବ । ସେ କଥା ଆମକୁ ଆଶ୍ଚର୍ଯ୍ୟ ମନେ ହେଉଛି । ସେ ବାଳକ କିଏ ?"

ସୂତ କହିଲେ—"ମହାଭାଗ, ଆଉ କେହି ନୁହେଁ । ସ୍ୱୟଂ ଯମରାଜ ଦୟାକରି ବାଳକ ବେଶ ଧରି ସୁଯଜ୍ଞର ପତ୍ନୀ ଓ ବନ୍ଧୁ ବାନ୍ଧବମାନଙ୍କୁ ସାନ୍ତ୍ୱନା ଦେବାକୁ ଆସିଥିଲେ ।"

ଏପରି ଭାବରେ ହିରଣ୍ୟକଶିପୁ ଆପଣାର ମାତା, ଭ୍ରାତୃପତ୍ନୀ ତଥା ପୁତ୍ରମାନଙ୍କୁ ଗୂଢ଼ ଜ୍ଞାନର ଉପଦେଶ ଦେଲା । ସେ କହିଲା—"ତୁମେମାନେ ଦ୍ୱେଷଭାବ ପରିତ୍ୟାଗ କର । ନିଜ ଏବଂ ପରପାଇଁ କାହାଲାଗି ଶୋକ କରନାହିଁ । ସଂସାରରେ ତ ସମସ୍ତେ ଆପଣାର ନା ସମସ୍ତେ ପର । ଆତ୍ମାଛଡ଼ା ସବୁ ପର, ତ୍ୟାଜ୍ୟ ଏବଂ ଆତ୍ମାଛଡ଼ା ଆଉ କିଛି ଏ ସଂସାରରେ ନାହିଁ । ତେଣୁ ସମସ୍ତଙ୍କୁ ଆପଣାର ଆତ୍ମାରେ ଦେଖ ଅଥବା ସମସ୍ତଙ୍କ ମଧ୍ୟରେ ଆପଣାକୁ ଦର୍ଶନ କର ।"

ଦେବର୍ଷି ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି—"ରାଜନ୍, ଏପରି ଭାବରେ ଯେତେବେଳେ ହିରଣ୍ୟକଶିପୁ ତା'ର ମାତା ଏବଂ ଅନ୍ୟାନ୍ୟ ଆତ୍ମୀୟମାନଙ୍କୁ ବୁଝେଇଲା, ସମସ୍ତେ ଧୈର୍ଯ୍ୟ ଧରି ରହିଲେ । ହୃଦୟରୁ ଅଜ୍ଞାନଜନ୍ୟ ଶୋକ ଏବଂ ମୋହ ଦୂରୀଭୂତ ହେଲା ।

ଦିତି କହିଲେ—"ପୁଅ, ତୁ ଆତ୍ମତତ୍ତ୍ୱର ଅତ୍ୟନ୍ତ ଗୂଢ଼ କଥା କହୁଚୁ । ବର୍ତ୍ତମାନ ମୋର ଶୋକ ବହୁ ପରିମାଣରେ ଲାଘବ ହୋଇଛି । ମୁଁ ବୋହୂକୁ ମଧ୍ୟ ପ୍ରବୋଧନା ଦେବି; ଯେପରି ସେ ଶୋକତ୍ୟାଗ କରିବ । ତୁ ବର୍ତ୍ତମାନ ତୋ ନିଜର

Digitized by srujanika@gmail.com

କଲ୍ୟାଣ ବିଷୟ ଚିନ୍ତାକର । ଏପରି ନ ହେଉ ଯେ ଦେବତାମାନେ ତୋ ସହିତ ମଧ୍ୟ ଶତ୍ରୁତା ଆଚରଣ କରନ୍ତୁ ।"

ଏହା ଶୁଣି ହିରଣ୍ୟକଶିପୁ କହିଲା—"ମା', ତୁମେ ମୋର କୌଣସି ଚିନ୍ତା କରନାହିଁ । ମୁଁ ତ ମୋର ପୁରୁଷାର୍ଥ ଦ୍ୱାରା ମୃତ୍ୟୁର ମସ୍ତକରେ ମଧ୍ୟ ପାଦଦେଇ ଚାଲିଯିବି ।"

ନାରଦ କହିଲେ—"ରାଜନ୍, ଏପରି କହି ହିରଣ୍ୟକଶିପୁ ଆଗାମୀ କର୍ତ୍ତବ୍ୟ ସମ୍ବନ୍ଧରେ ଗମ୍ଭୀରଭାବରେ ଚିନ୍ତା କରିବାକୁ ଲାଗିଲା ।"

## ଛପ୍‌ପୟ

କିତନୋ ହୂ ଦୁଖ କରୈ ଭୂପ କୁଁ ଅବ ନହିଁ ପାଓ ।
ତାତେଂ ତଜି କେ ଶୋକ ମୋହ ଅପନେ ଘର ଜାଓ ॥
ସୁନି ବାଲକ କୀ ବାତ ଶୋକ ସବନେ ତଜି ଦୀହ୍ନୋଂ ।
ମିଲି ସମ୍ବନ୍ଧୀ ସବହି ଦାହ ନୃପଶବ କୋ କୀହ୍ନୋଂ ॥
ହିରନକଶିପୁ ସବତେଂ କହୈଂ, ବନ୍ଧୁ ଶତ୍ରୁ କୁଁ ମାରି ହମ ।
ବଦଲୋ ବଧ କୋ ଲେଇଂଗେ, ତଜୋ ଶୋକ ସନ୍ତାପ ତୁମ ॥

---

Digitized by srujanika@gmail.com

# ହିରଣ୍ୟକଶିପୁର ତପସ୍ୟା

ହିରଣ୍ୟକଶିପୁ ରାଜନ୍ନଜେୟମଜରାମରମ୍ ।
ଆତ୍ମାନମପ୍ରତିଦ୍ୱନ୍ଦ୍ୱମେକରାଜଂ ବ୍ୟଧିତ୍ସତ ॥
ସ ତେପେ ମନ୍ଦରଦ୍ରୋଣ୍ୟାଂ ତପଃ ପରମଦାରୁଣମ୍ ।
ଊର୍ଦ୍ଧ୍ୱବାହୁର୍ନଭୋଦୃଷ୍ଟିଃ ପାଦାଂଗୁଷ୍ଠାଶ୍ରିତାବନିଃ ॥
( ଶ୍ରୀ ଭା ୭ ସ୍କ ॥ ୩ୟ ଅ ॥ ୧, ୨ ଶ୍ଳୋକ )

## ଛପ୍ପୟ

ହ୍ୟୋଂ ସବକୁଁ ସମୁଝାଇ ଚଲ୍ୟୋ ତପକୁଁ ଅସୁରାଧିପ ।
ଅଜର ଅମର ରନଜୟୀ ବନନ ହିତ କରେ ଘୋର ତପ ॥
ମନ୍ଦର ଗିରି କୀ ଗୁହା ମାଁହି ଏକାକୀ ରହିକେଂ ।
କରେ ତିତିକ୍ଷା ଅସୁର ଶୀତ ଉଷ୍ଣାଦିକ ସହିକେଂ ॥
ମାଂସ ଦୀମକାନି ଭଖି ଲୟୋ, ଅସ୍ଥି ମାତ୍ର ଇ ବଚ ଗଇ ।
ଅସୁର ଉଗ୍ର ତପତେଂ ଜଗତ, ମହଁ ଅଶାନ୍ତି ଅତି ମଚ ଗଇ ॥

ଶୁଭ ଅଶୁଭ କୌଣସି ବି କର୍ମ କର ନା କାହିଁକି ତା'ର ଫଳ ଅବଶ୍ୟ ମିଳିବ । ବସ୍ତୁ ଗୋଟିଏ ମାତ୍ର ଭେଦ ହେତୁ, ଭାବନାର ଭେଦ ହେତୁ ତା'ର ଫଳରେ ବିପର୍ଯ୍ୟୟ ହୋଇଥାଏ । ବର୍ଷାର ଜଳ ଏକ, ନଦୀରେ ପଡ଼ି ମିଠା ହେଲା, ସମୁଦ୍ରରେ ପଡ଼ି ଲୁଣି ହେଲା । କଳ୍ପବୃକ୍ଷ ସମସ୍ତଙ୍କୁ ଗୋଟିଏ ଫଳ ପ୍ରଦାନ କରିଥାଏ, ତା' ତଳେ ଯେ କୌଣସି ବସ୍ତୁର କାମନାକରି ମନୁଷ୍ୟ ଫଳପ୍ରାପ୍ତ ହୋଇଥାଏ; ମାତ୍ର ଭାବନା ଭେଦରେ ଫଳ ପାର୍ଥକ୍ୟ ଘଟିଥାଏ । ଗୋଟିଏ କାହାଣୀ ଅଛି— ଜଣେ ଅବୋଧ ଅଜ୍ଞାନୀ ଅକସ୍ମାତ୍ କଳ୍ପବୃକ୍ଷ ତଳକୁ ଚାଲିଗଲା । ସେ ସେଠାରେ ଭାବିଲା— "ଏଠାରେ ତ ଭାରି ସୁଖ, ଜଳ ଥାଆନ୍ତା ଯଦି ସ୍ନାନ କରନ୍ତି, ଜଳପାନ କରନ୍ତି ।" ତତ୍କ୍ଷଣାତ୍ ସେଠାରେ ଅମୃତୋପମ ଜଳପୂର୍ଣ୍ଣ ସରୋବରର ସୃଷ୍ଟି ହେଲା । ସେ ସ୍ନାନ କଲା ଓ ଜଳପାନ କଲା । ତା'ପରେ ସେ ଭାବିଲା ଏଠାରେ ଏକ ସୁନ୍ଦର ଭବନ ଥିଲେ ଓ ଶଯ୍ୟା ଥିଲେ ଶୟନ କରନ୍ତି । ତତ୍କ୍ଷଣାତ୍ ଭବନ ନିର୍ମିତ ହୋଇଗଲା, ସୁନ୍ଦର

Digitized by srujanika@gmail.com

ଶଯ୍ୟା ବଛେଇ ହୋଇଗଲା । ତା'ପରେ ସେ ଭାବିଲା ଏଠାରେ ସୁନ୍ଦର ଭବ୍ୟ ଖାଦ୍ୟ-ପଦାର୍ଥ ଥିଲେ ପେଟଭରି ଭୋଜନ କରନ୍ତି । କଥାକଥାକେ ସେଠାରେ ଛପନ ଭୋଗରେ ପରିପୂର୍ଣ୍ଣ ଥାଳିଟିଏ ଆସି ରହିଗଲା । ସେ ପେଟପୂରେଇ ଖାଇଲା । ତା'ପରେ ଭାବିଲା, ଏତେ ବିରାଟ ଭବନରେ ଏକାକୀ କ'ଣ ରହିବି ? ଗୋଟିଏ ସ୍ତ୍ରୀ ଥିଲେ ଆନନ୍ଦରେ ରହନ୍ତି । ଦେଖୁଁ ଦେଖୁଁ ସ୍ତ୍ରୀ ମଧ୍ୟ ଆସି ଉପସ୍ଥିତ ହେଲା । ତା'ପରେ ତା'ର ସନ୍ଦେହ ଜାତ ହେଲ—ଭାବିଲା, ଏହା ଯାଦୁ ନୁହଁ ତ ? ଯାହା ଭାବୁଛି ତାହା ହୋଇଯାଉଛି । ଏ କୌଣସି ରାକ୍ଷସୀ ନୁହେଁ ତ ଯେ ମୋତେ ଖାଇଯିବ ?'' ତତ୍‌କ୍ଷଣାତ୍ ସ୍ତ୍ରୀଟି ରାକ୍ଷସୀ ପାଲଟିଗଲା ଓ ତାକୁ ଖାଇଦେଲା । କଳ୍ପବୃକ୍ଷ ସମସ୍ତ ଭାବନାକୁ ପୂର୍ଣ୍ଣକରେ, ତେଣୁ ତା'ର ତଳେ ଦିବ୍ୟରୁ ଦିବ୍ୟତର ବସ୍ତୁର ଯାଚନା କରିବା ହିଁ ଶ୍ରେୟସ୍କର । ସେଠାରେ ମନ୍ଦକଥା ମାଗିଲେ ମନ୍ଦ ହିଁ ପ୍ରାପ୍ତ ହେବ; ସେହିପରି ତପସ୍ୟାକରି ଭଗବାନଙ୍କର ଭକ୍ତି ମାଗିବା ହିଁ ତପର ସର୍ବୋତ୍କୃଷ୍ଟ ଫଳ ଓ ତପସ୍ୟା କରି ଏ ଜଡ଼ ଶରୀରକୁ ବଞ୍ଚେଇ ରଖିବାକୁ, ପରପୀଡ଼ନ ନିମନ୍ତେ ଶକ୍ତି କାମନା କରିବା ତପର ଦୁରୁପଯୋଗ ମାତ୍ର । ଏସବୁ କଥା ମଧ୍ୟ ମିଳିଥାଏ; କାରଣ ତପସ୍ୟା କଦାପି ବ୍ୟର୍ଥ ହୁଏ ନାହିଁ । ମାତ୍ର ସେ ବସ୍ତୁମାନଙ୍କରୁ ଶାନ୍ତି ମିଳେ ନାହିଁ । ଚିତ୍ତ ସର୍ବଦା ଉଦ୍‌ବିଗ୍ନ ରହେ । ସର୍ବଦା ଶତ୍ରୁ ଚିନ୍ତା ଲାଗି ରହିଥାଏ ।

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି—''ରାଜନ୍, ଏହିପରି ଭାବରେ ଆପଣାର ମାତା, ଭ୍ରାତୃବଧୂ ଓ ପୁତ୍ରମାନଙ୍କୁ ବୁଝେଇ ହିରଣ୍ୟକଶିପୁ ସଂସାରରେ ସର୍ବଶ୍ରେଷ୍ଠ ଶୂରବୀର ଓ ବଳବନ୍ତ ହେବା ନିମନ୍ତେ ଉପାୟ ଚିନ୍ତା କଲା । ସେ ସ୍ଥିର କରିବାକୁ ଲାଗିଲା, କେଉଁପରି ମୋର ଏ ଦେହ ସର୍ବଦା ଅଜର, ଅମର ହୋଇ ରହିଥିବ । କେଉଁପରି ମୁଁ ତ୍ରିଲୋକରେ ଏକଛତ୍ର ସମ୍ରାଟ, ଅଜେୟ ସମର ବିଜୟୀ ତଥା ସବୁଠାରୁ ଉତ୍ତମ ସମ୍ମାନନୀୟ ହୋଇପାରିବି । କୌଣସି ଯୋଦ୍ଧା କେଉଁପରି ମୋ ଆଗରେ ଦଣ୍ଡାୟମାନ ହୋଇପାରିବେ ନାହିଁ । କେହି ହେଲେ ମୋତେ ମାରି ପାରିବେ ନାହିଁ ଏବଂ ପରାଜିତ କରିପାରିବେ ନାହିଁ । ଭାବି ଭାବି ସେ ମନ ମଧ୍ୟରେ ସ୍ଥିର କଲା ଯେ ଯାହା କିଛି ହେଉ, ତପସ୍ୟା ବଳରେ ପ୍ରାପ୍ତ କରିହେବ । ତପସ୍ୟାର ପ୍ରଭାବରେ ଦୁର୍ଲଭ ବସ୍ତୁ ମଧ୍ୟ ସୁଲଭ ହୋଇଯାଏ । ଅସମ୍ଭବ ମଧ୍ୟ ସମ୍ଭବ ହୋଇଯାଏ । ତେଣୁ ମନ୍ଦରାଚଳକୁ ଯାଇ ତପସ୍ୟା କରିବା ଉଚିତ ।''

ଏପରି ଭାବି ସେ ମନ୍ଦରାଚଳର ଏକ ବିଶାଳ ଗୁମ୍ଫାକୁ ଗଲା । ସେଠାକୁ ଯାଇ ସେ ଘୋର ତପସ୍ୟା କରିବା ଆରମ୍ଭ କରିଦେଲା । ପାଦର ଗୋଟିଏ ଆଙ୍ଗୁଠିର ଅଗ୍ରଭାଗରେ ଠିଆହୋଇ, ଉପରକୁ ହାତ ଉଠେଇ, ଆକାଶକୁ ଚାହିଁ ରହି ଗଛର ଶୁଖିଲା ଗଣ୍ଡିଭଳି ନିଶ୍ଚେଷ୍ଟ ଭାବରେ ଠିଆହୋଇ ରହିଲା । ସେ ହଲଚଲ ସୁଦ୍ଧା ହେଉ ନ ଥିଲା । ତା'ର ମସ୍ତକରେ ଅଯତ୍ନ କେଶ ବଢି ବିରାଟ ବିରାଟ ଜଟାରେ ପରିଣତ ହୋଇଗଲା, ତପସ୍ୟା ହେତୁ ତା'ର ମୁଖମଣ୍ଡଳ ଉଜ୍ଜ୍ୱଳ ମନେ ହେଉଥିଲା । ମନେ

Digitized by srujanika@gmail.com

ହେଉଥିଲା, ଯେଉଁଭଳି ପ୍ରଳୟକାଳୀନ ସୂର୍ଯ୍ୟ ମୟୂଖମାଳାରେ ସୁଶୋଭିତ ହୋଇ ଚମକୁଥିଲା । ଅସ୍ତାଚଳ ପର୍ବତ ଶିଖର ସଦୃଶ ସେ ସ୍ଥିର ଭାବରେ ଠିଆହୋଇ ରହୁଥିଲା । ସେହିଭଳି ସେ ସହସ୍ର ବର୍ଷ ପର୍ଯ୍ୟନ୍ତ ଠିଆହୋଇ ରହିଲା ।

ହିରଣ୍ୟକଶିପୁକୁ ତପସ୍ୟାରତ ଦେଖି ଦେବତାମାନଙ୍କ ମଧ୍ୟରେ ସନ୍ତୋଷ ଜାତ ହେଲା । ସମସ୍ତ ଦେବତାମାନଙ୍କୁ ସେ ପଦଚ୍ୟୁତ କରି ଦେଇଥିଲା । ସ୍ୱୟଂ ଇନ୍ଦ୍ରାସନରେ ବସି ତ୍ରିଲୋକର ଶାସନ କରୁଥିଲା । ସେ ତପସ୍ୟାରତ ହେବାପରେ ସେମାନେ ପୁନରାୟ ଆପଣା ଆପଣା ପଦରେ ପ୍ରତିଷ୍ଠିତ ହେଲେ । ସମସ୍ତେ ଭାବିଲେ— "ଭଲ ହେଲା, ଏ ଦୁଷ୍ଟ ସେହିଠାରେ ତପସ୍ୟା କରି ମରିଯାଉ ।" ମାତ୍ର ତା'ର ତପସ୍ୟା ସାଧାରଣ ତପସ୍ୟା ନ ଥିଲା । ଫଳ-ମୂଳ, ଅନ୍ନାଦି ତ ଦୂରର କଥା, ସେ ଟୋପାଏ ଜଳ ସୁଧା ଗ୍ରହଣ କରୁ ନ ଥିଲା । ତା'ର ରକ୍ତ ଶୁଖିଗଲା । ମାଂସ ଚର୍ମକୁ ଉଇ ଖାଇଗଲେ, କେବଳ ଅସ୍ଥି କଙ୍କାଳ ଅବଶେଷ ରହିଲା; ମାତ୍ର ସେ ତପସ୍ୟାରୁ ଆପଣାର ଚିତ୍ତ ନିବୃତ୍ତ କଲା ନାହିଁ । ଦେବତାମାନଙ୍କ ବର୍ଷରେ ହଜାର ହଜାର ବର୍ଷ ପାଇଁ ସେ ଏଭଳି କଠୋର ତପସ୍ୟା କରିବାକୁ ଲାଗିଲା ।

ତା'ର ତପସ୍ୟା ପରପୀଡ଼ନ ନିମନ୍ତେ ତମୋଗୁଣୀ ଥିଲା । ଏଣୁ ତା'ର କପାଳରୁ ତମୋମୟ ଧୂମ୍ରଯୁକ୍ତ ଅଗ୍ନିର ଜ୍ୱାଳା ପ୍ରକଟିତ ହେଲା । ସେଇ ଅଗ୍ନି ତ୍ରିଲୋକରେ ବ୍ୟାପ୍ତ ହୋଇ ସମସ୍ତ ପ୍ରାଣୀମାନଙ୍କୁ ସନ୍ତାପିତ କରିବାକୁ ଲାଗିଲା । ସେହି ତମୋମୟ ଅଗ୍ନି ହେତୁ ଦଶଦିଗରେ ଅସହ୍ୟ ଦାହ ବ୍ୟାପ୍ତ ହେଲା । ଦ୍ୱୀପ, ପର୍ବତ, ନଦ, ନଦୀ, ପରିପୂର୍ଣ୍ଣ ପୃଥ୍ୱୀ ସେଭଳି ଆନ୍ଦୋଳିତ ହେବାକୁ ଲାଗିଲା, ଯେପରି ହାତୀ ବସିଲେ ନୌକା ଆନ୍ଦୋଳିତ ହୋଇଥାଏ । କୂପ, ନଦୀ, ନଦ ତଥା ସମୁଦ୍ର ଜଳ ଫୁଟିବାକୁ ଲାଗିଲା । ଗ୍ରହ, ନକ୍ଷତ୍ର ଏବଂ ତାରାମାନେ ଛିଣ୍ଡି ଛିଣ୍ଡି ଭୂମିରେ ପଡ଼ି ବସିଲେ । ସର୍ବତ୍ର ହା-ହାକାର ଖେଳିଗଲା । ପ୍ରାଣୀମାନେ ତା'ର ତମୋମୟ ତେଜର ପ୍ରଭାବକୁ ସହନ କରିପାରିଲେ ନାହିଁ । ମର୍ତ୍ତ୍ୟ ଲୋକର ପ୍ରାଣୀମାନେ ତ ତା'ର କାରଣ ପର୍ଯ୍ୟନ୍ତ ଜାଣିପାରିଲେ ନାହିଁ । ଦେବତାମାନେ ସେହି ତମୋମୟ ଜ୍ୱାଳା-ସନ୍ତପ୍ତ ହୋଇ ମନ୍ତ୍ରଣା କରିବାକୁ ଲାଗିଲେ । ସଦସ୍ୟଙ୍କର ସଭା ବସିଲା । ସେଠାରେ ଏହାର କ'ଣ ପ୍ରତିକାର କରାଯାଇପାରେ, ଏହା ଉପରେ ବିସ୍ତୃତ ଆଲୋଚନା ହେଲା । ଏ ଦୁଷ୍ଟ ତ ଆପଣା ସଙ୍କଳ୍ପରେ ଦୃଢ଼ । ଏହାକୁ ତ ଆମେ ତପରୁ ନିବୃତ୍ତ କରିପାରିବା ନାହିଁ । ତେବେ କ'ଣ କରିବା ? ଏହି ବିଷୟ ଉପରେ ବହୁ ସମୟ ଧରି ବାଦ-ବିସମ୍ବାଦ ଚାଲିଲା । ପରିଶେଷରେ ଇନ୍ଦ୍ର କହିଲେ—"ଦେଖ ଭାଇମାନେ, ଏହାକୁ ତପରୁ ନିବୃତ୍ତ କରିବା ଆମର ଶକ୍ତିର ବହିର୍ଭୂତ କାର୍ଯ୍ୟ । ଚାଲ, ସମସ୍ତେ ପିତାମହ ବ୍ରହ୍ମାଙ୍କ ନିକଟକୁ ଯିବା । ସେ ହିଁ ଏହି ସମସ୍ତ ବ୍ରହ୍ମାଣ୍ଡର ସ୍ୱାମୀ । ଆମେମାନେ ତାଙ୍କର ସର୍ଜନା । ତାଙ୍କ ନିକଟରେ ନିବେଦନ କରିବା । ତା'ପରେ ସେ ଯେଉଁ ଉପାୟ କରିବା କଥା କରିବେ ।"

Digitized by srujanika@gmail.com

ନାରଦ କହିଲେ—"ରାଜନ୍, ଏହିପରି ସ୍ଥିରକରି ଇନ୍ଦ୍ରଙ୍କୁ ଅନୁସରଣ କରି ସମସ୍ତ ଦେବତାଗଣ ପିତାମହ ବ୍ରହ୍ମାଙ୍କର ସଭାରେ ଉପସ୍ଥିତ ହେଲେ । ଦଣ୍ଡ ପ୍ରଣାମ ଏବଂ ଶିଷ୍ଟ ଅଭିନନ୍ଦନ ପରେ ବ୍ରହ୍ମା ତାଙ୍କର ଅଭିବାଦନ ସ୍ୱୀକାର କରି ପଚାରିଲେ—"ହେ ଦେବତାଗଣ, ଆଜି ତୁମମାନଙ୍କର ମୁହଁ ଏପରି ମଳିନ ଦିଶୁଛି କାହିଁକି ? ତୁମେମାନେ କାହିଁକି ଚିନ୍ତିତ ଜଣା ପଡ଼ୁଛ ! ତୁମେମାନେ ମୋ ନିକଟରେ ତୁମରି ଚିନ୍ତାର କାରଣ ପ୍ରକାଶ କର !"

ଏହା ଶୁଣି ହାତ ଯୋଡ଼ି ଦେବତାମାନଙ୍କ ପକ୍ଷରୁ ଦେବେନ୍ଦ୍ର କହିଲେ—"ବ୍ରହ୍ମନ୍, ବର୍ତ୍ତମାନ ଆମର ସ୍ୱର୍ଗରେ ରହିବା ଅସମ୍ଭବ ହେବାକୁ ବସିଲାଣି !"

ସଂଭ୍ରମ ସହକାରେ ବ୍ରହ୍ମା ପଚାରିଲେ—"କାହିଁକି, କ'ଣ ହେଲା ? ପୁଣି କେତେକ ଅସୁର ଉତ୍ପାତ କରିବା ଆରମ୍ଭ କରିଛନ୍ତି କି ?"

ଇନ୍ଦ୍ର କହିଲେ—"ଉତ୍ପାତ କ'ଣ ! ଆମେମାନେ ସମସ୍ତେ ଦୈତ୍ୟରାଜ ହିରଣ୍ୟକଶିପୁର ତପ-ସନ୍ତପ୍ତ ହୋଇଛୁ । ତେଣୁ ହେ ଦେବାଧିଦେବ, ହେ ବ୍ରହ୍ମନ୍, ହେ ସର୍ବସମର୍ଥ ପ୍ରଭୋ, ଯଦି ଆପଣ ଅସମୟରେ ପ୍ରଳୟ କରାଇବାକୁ ଚାହାନ୍ତି ନାହିଁ, ତା'ହେଲେ ତାକୁ ଶାନ୍ତ କରନ୍ତୁ ।"

ବ୍ରହ୍ମା କହିଲେ—"ସେ କିପରି ଶାନ୍ତ ହେବ !"

ଦେବତାମାନେ କହିଲେ—"ସେକଥା ତ ଆପଣ ହିଁ ବୁଝି ପାରିବେ । ସେ ଯାହା ମାଗିବ, ପ୍ରଦାନ କରି ଦିଅନ୍ତୁ । ଆମେ କ'ଣ ଉପାୟ ଆପଣଙ୍କୁ କହି ପାରିବୁ ?"

ବ୍ରହ୍ମା ପଚାରିଲେ—"ଆଚ୍ଛା, ସେ ତା'ହେଲେ କ'ଣ ଚାହୁଁଛି ? କେଉଁ ବସ୍ତୁର ପ୍ରାପ୍ତି ନିମନ୍ତେ ଏଭଳି ଉଗ୍ରତପ କରୁଛି ?"

ଦେବତାମାନେ କହିଲେ—"ପ୍ରଭୁ ! ସେକଥା ଆପଣ ଜାଣିଥିବେ । ଆପଣ ସର୍ବଜ୍ଞ ! ଆପଣଙ୍କ ନିକଟରେ କେଉଁ ବିଷୟ ଗୁପ୍ତ ହୋଇ ରହିଛି ବା ରହିପାରିବ ! ତଥାପି ମଧ୍ୟ ଆପଣ ଆଜ୍ଞା ଦେଲେ, ଆମେ ଆପଣଙ୍କ ନିକଟରେ ସଂକ୍ଷେପରେ ତା'ର ସଙ୍କଳ୍ପ ବିଷୟ ପ୍ରକାଶ କରିବୁ । ସେ ବିଚାର କରିଛି, ଯେଉଁପରି ଲୋକପିତାମହ ବ୍ରହ୍ମା ଆପଣାର ଯୋଗ ପ୍ରଭାବରେ ଏହି ସଂପୂର୍ଣ୍ଣ ଚରାଚର ଜଗତ ପାଳନ କରୁଛନ୍ତି, ସେପରି ମୁଁ ମଧ୍ୟ ପାଳନ କରିବି । ଯେପରି ସେ ବ୍ରହ୍ମାଣ୍ଡରେ ସର୍ବଶ୍ରେଷ୍ଠ ବୋଲି ପରିଗଣିତ, ସେଭଳି ମୁଁ ମଧ୍ୟ ଗଣ୍ୟ ହେବି । ଯେପରି ସେ ସମସ୍ତଙ୍କ ଦ୍ୱାରା ପୂଜିତ, ମୁଁ ମଧ୍ୟ ସେହିଭଳି ପୂଜିତ ହେବି । ମୁଁ ମୋର ପ୍ରବୃଦ୍ଧ ତପ ଏବଂ ଯୋଗ ସମାଧି ଦ୍ୱାରା କ୍ରମଶଃ ସମସ୍ତ ଉତ୍କୃଷ୍ଟ ଲୋକ ଉପରେ ଆଧିପତ୍ୟ ପ୍ରାପ୍ତ କରିବି ।"

Digitized by srujanika@gmail.com

ଏହା ଶୁଣି ବ୍ରହ୍ମା ହସି କହିଲେ—"ହେ ଦେବତାମାନେ, ମୋ ଲୋକପ୍ରାପ୍ତ ହେବା କିଛି ଖେଳରେ କଥା ନୁହେଁ । ସେ ତା'ର ଅଳ୍ପାୟୁଷର ସୀମିତ କାଳ ଭିତରେ ସାମାନ୍ୟ ତପସ୍ୟା ଦ୍ୱାରା ଏତେ ପ୍ରତିଷ୍ଠିତ ପଦପ୍ରାପ୍ତ ହେବାକୁ କପରି ସମର୍ଥ ହେବ ?"

ତାହା ଶୁଣି ଦେବର୍ଷିମାନେ କହିଲେ—"ମହାରାଜ, ତା'ର ଜିଦ୍‌ର ଗୋଟିଏ ଜନ୍ମରେ ନ ହେଲେ ହେଁ ଦୁଇଟି ଜନ୍ମରେ ହେବ, ଦଶ କୋଡ଼ିଏ, ଶତ, ସହସ୍ର ଜନ୍ମରେ କେବେ ହେଲେ ତ ହେବ. ସେଥିକୁ ତା'ର ଚିନ୍ତା ନାହିଁ । ଆତ୍ମା ନିତ୍ୟ, ଅଜର, ଅମର, ତା'ର କେବେ ହେଁ ବିନାଶ ହୁଏ ନାହିଁ । ଏ ଶରୀରଗତ ନାଶବାନ । ତେଣୁ କେତେ ଜନ୍ମରେ ବି ହେଉନା କାହିଁକି, ସେ ସେଠାରୁ ସିଦ୍ଧିପ୍ରାପ୍ତ କରିବା ଯାଏ ହଟିବ ନାହିଁ । ହେ ମହାରାଜ, ଆପଣଙ୍କର ବ୍ରହ୍ମାପଦ ନେବାକୁ ଚାହୁଁଛି । ଆପଣଙ୍କର ସିଂହାସନ ଅଧିକାର କରିବାକୁ ଚାହୁଁଛି । ସେ କହୁଛି ମୋର ନା ଶିବପଦ ଲୋଡ଼ା ନା ବିଷ୍ଣୁପଦ, ମୋର ପ୍ରୟୋଜନ ବ୍ରହ୍ମାପଦ । ଭଗବାନ, ସେ ଆପଣଙ୍କର ପଦ ପଛରେ ପାଗଳ ହୋଇଛି ।"

ବ୍ରହ୍ମା ହସି ହସି କହିଲେ—"ଭଲ କଥା ଭାଇ, ସେଥିରେ କ୍ଷତି କ'ଣ ? ବ୍ରହ୍ମା ମଧ୍ୟ ପରିବର୍ତ୍ତନଶୀଳ । ସେ ବ୍ରହ୍ମପଦରେ ରହିବ, ଧର୍ମର ପାଳନ କରିବ ।"

ତାହା ଶୁଣି ଇନ୍ଦ୍ର କହିଲେ—"ନା ପ୍ରଭୁ, ଆପଣ ସେଇ ଭରସାରେ ରହନ୍ତୁ ନାହିଁ । ତା'ର ବିଚାର ଭିନ୍ନ । ସେ କହୁଛି ଯେ, ମୁଁ ବ୍ରହ୍ମା ହେଲେ ସବୁ ନିୟମ ଓଲଟାଇ ଦେବି । ଅଧର୍ମକୁ ଧର୍ମ କରିଦେବି । ସ୍ୱର୍ଗରେ ଦେବତାମାନଙ୍କ ସ୍ଥାନରେ ଦୈତ୍ୟ ରହିବେ । ପୃଥ୍ୱୀରୁ ଜଳ, ଜଳରୁ ତେଜ, ତେଜରୁ ବାୟୁ ଓ ବାୟୁରୁ ଆକାଶ ଉତ୍ପନ୍ନ କରିବି । ସେହିପରି ଭାବରେ ସେ ସୃଷ୍ଟିର ପାପ-ପୁଣ୍ୟାଦି କର୍ମକୁ ବିପରୀତ କରି ଦେବାକୁ ଚାହେଁ । ଜଗତକୁ ବିଶୃଙ୍ଖଳିତ କରି ପ୍ରାକୃତିକ ନିୟମମାନଙ୍କୁ ମୂଳତଃ ଓଲଟ ପାଲଟ କରି ଦେବାକୁ ଚାହୁଁଛି । ଆମେ ତ ସେଭଳି ଶୁଣିଛୁ ଯେ ସେ ଆପଣଙ୍କୁ ବହିଷ୍କୃତ କରି ଆପଣଙ୍କ ପଦରେ ପ୍ରତିଷ୍ଠିତ ହୋଇ ବିପରୀତ କଥା ସବୁ କରିବ ! ପ୍ରଭୁ, ଆମେମାନେ ସବୁ କିଛି ଶୁଣା କଥା କହୁଛୁ । ଏଥିରେ ସତ୍ୟ କେତେ, ସେ କେତେଦୂର ସଫଳ ହେବ, ତାହା ଆପଣ ହିଁ ଜାଣିପାରିବେ, ଆପଣ ସର୍ବଜ୍ଞ ।"

ଏହା ଶୁଣି ବ୍ରହ୍ମା ଗମ୍ଭୀର ହୋଇ ଦେବତାମାନଙ୍କୁ କହିଲେ—"ଏ ସବୁ ବିଷୟରେ ତୁମମାନଙ୍କର ମତାମତ କ'ଣ ?"

ଏହା ଶୁଣି ଦେବତାମାନେ କହିଲେ—"ପ୍ରଭୁ, ଏ ବିଷୟରେ ଆପଣଙ୍କୁ ମତ ପ୍ରଦାନ କରିବାକୁ ଆମର କି ଯୋଗ୍ୟତା ଅଛି ? ଏହାକୁ ତ କେବଳ ମାତ୍ର ଆପଣ ହିଁ ନିର୍ଣ୍ଣୟ କରିପାରିବେ । ଆମ ମତରେ ସେ ଯାହା ଚାହୁଁଛି, ସେ ବର ପ୍ରଦାନ

Digitized by srujanika@gmail.com

କରିଦେଇ ତାଙ୍କୁ ତପରୁ ନିବୃତ୍ତ କରନ୍ତୁ । କେଜାଣି, ପଛେ ସେ ଆଉ କ'ଣ ଉପଦ୍ରବ କରିବ । ଭଗବାନ ଆପଣଙ୍କ ପଦରେ ଅସୁରମାନେ ବସିବାକୁ ଯୋଗ୍ୟ ନୁହନ୍ତି । ଆପଣ ଥିବାରୁ ସର୍ବଦା ଗୋ-ବ୍ରାହ୍ମଣଙ୍କର ହିତ ସାଧନ ହିଁ ହୋଇଛି । ତା'ର ମୂଳ କାରଣ ବିଶ୍ୱର କଲେ କଲ୍ୟାଣ, ବିଭୂତି, କୁଶଳ ଓ ବିଜୟର କାରଣ ବ୍ରହ୍ମପଦ । ସେହି ପଦରେ କେବଳ ମାତ୍ର ଆପଣ ହିଁ ଶୋଭା ପାଇବେ । ଏହି ପ୍ରତିଷ୍ଠିତ ପଦ ଆପଣଙ୍କ ଦ୍ୱାରା ସୃଷ୍ଟ । ସେଠାରେ ହିରଣ୍ୟକଶିପୁ ରାକ୍ଷସ ବସିଲେ ସବୁ କିଛି ବିନଷ୍ଟ ହୋଇଯିବ ।"

ଦେବତାମାନଙ୍କର ସବୁ କଥା ଶୁଣି ଗମ୍ଭୀର ହୋଇ ବ୍ରହ୍ମା କହିଲେ—"ଠିକ୍ କଥା, ତୁମେମାନେ ଯାଅ । ମୁଁ ତା'ର କିଛି ନା କିଛି ଉପାୟ ଚିନ୍ତା କରୁଛି । ଯେପରି ହେଉ ତାଙ୍କୁ ତପ ନିବୃତ୍ତ କରିବ । ତୁମେମାନେ ଚିନ୍ତା କରନାହିଁ ।"

ଶ୍ରୀ ନାରଦ ଧର୍ମରାଜଙ୍କୁ କହିଲେ—"ରାଜନ୍, ଏପରି ଭାବରେ ଦେବତା-ମାନଙ୍କୁ ଆଶ୍ୱାସନା ଦେଇ ବ୍ରହ୍ମା ସେହି ଅସୁର ନିକଟକୁ ଯିବାକୁ ପ୍ରସ୍ତୁତ ହେଲେ ।"

## ଛପ୍‌ପୟ

ଦୌରେ ଦୌରେ ଦେବ ଗୟେ ଧାତା କେ ଠାଁଗ ସବ ।
ବୋଲେ ବ୍ରହ୍ମନ୍ ବଢ଼ୟୋ ବବଂଡ଼ର ବଶ୍ୱ ମାହିଁ ଅବ୍ ॥
ଅସୁର କରୈ ତପ ଦେବ ବ୍ରହ୍ମପଦ ଗ୍ରହେ ଲେବୋ ।
ବ୍ରହ୍ମା ବନ କେ ଚହେ ଆପ କୁଁ ଧକ୍କା ଦେବୋ ॥
ସୁନି ବିଧି ବୋଲେ ଦେବଗନ, ଅସୁର ନିକଟ ହୌଂ ଜାଉଁଗୌ ।
ଦୈକେଂ ଇଚ୍ଛିତ ବର ତୁରତ, ତପ ତେ ତାହି ହଟାଉଁଗୌ ॥

---

Digitized by srujanika@gmail.com

# ହିରଣ୍ୟକଶିପୁର ଦୁର୍ଲ୍ଲଭ ବରପ୍ରାପ୍ତି

ତାତେମେ ଦୁର୍ଲଭାଃ ପୁଂସାଂ ଯାନ୍ ବୃଣୀଷେ ବରାନ୍ମମ ।
ତଥାପି ବିତରାମ୍ୟଙ୍ଗ ବରାନ୍ୟଦପି ଦୁର୍ଲଭାନ୍ ॥
( ଶ୍ରୀ ଭା ୭ ସ୍କ ॥ ୪ର୍ଥ ଅ ॥ ୨ ଶ୍ଳୋକ )

## ଛପ୍‌ପୟ

ଯୋଁ କହି ବ୍ରହ୍ମା ଗୟେ ତେର ଦୀମକ କୋ ଦେଖେ୍ୟା ।
ତୃନ ବାଁସନ ତେ ଦକେ୍ୟା ଅସ୍ଥିମୟ ସୁରରିପୁ ପେଖେ୍ୟା ॥
ଦିବ୍ୟ କମଣ୍ଡଲୁ ନୀର ଛିରକି ତନୁ ସୁଘର ବନାୟୋ ।
ବୋଲେ ବେଟା ! ମାଁଗୁ ତୋହି ବର ଦେବେ ଆୟୋ ॥
କରି ପୂଜା ବୋଲ୍ୟା ଅସୁର, ମାଁଗୁ ବର ଯେ ଦେହୁଁ ବିଭୁ ।
ରଚେ ତୁମ୍ହାରେ ଜୀବ ତେ, ମୃତ୍ୟୁ ନ ମେରୀ ହୋହି ପ୍ରଭୁ ॥

ତପ କେବେ ହେଲେ ବ୍ୟର୍ଥ ହୁଏ ନାହିଁ । ତପସ୍ୟାର ଫଳ ଅବଶ୍ୟ ପ୍ରାପ୍ତ ହୋଇଥାଏ । କିନ୍ତୁ ଯେଉଁ ତପସ୍ୟା ଦେହକୁ ଆତ୍ମା ବୋଲି ଭାବି ଦେହର ଅଜର ଅମରତ୍ୱ ତଥା ଲୌକିକ ଐଶ୍ୱର୍ଯ୍ୟ ପ୍ରାପ୍ତି ନିମନ୍ତେ କରାଯାଏ, ତାହା ରାଜସ, ତାମସ ତପସ୍ୟା । ଯେଉଁ ତପସ୍ୟା ଭଗବତ୍ ପ୍ରାପ୍ତି ନିମନ୍ତେ କରାଯାଏ, ତାହା ଯଥାର୍ଥ ତପସ୍ୟା । ଅସୁରମାନେ ମଧ୍ୟ ତପସ୍ୟା କରନ୍ତି । ଭକ୍ତମାନେ ମଧ୍ୟ ତପସ୍ୟା କରିଥା'ନ୍ତି । ଉଭୟଙ୍କ ଉପରେ ତପସ୍ୟାର ପ୍ରଭାବ ହେତୁ ଇଷ୍ଟ ପ୍ରସନ୍ନ ହୋଇଥା'ନ୍ତି । ଅସୁର ମାଗନ୍ତି—"ଆମର ଶରୀର ସର୍ବଦା ଅପରିବର୍ତ୍ତିତ ହୋଇ ରହିଥାଉ, ଆମକୁ କେହି ଜିଣି ନ ପାରନ୍ତୁ, ଆମେ ଯା'ର ମସ୍ତକ ଉପରେ ହାତ ରଖିବୁ, ସେ ଭସ୍ମ ହୋଇଯାଉ ଇତ୍ୟାଦି ଇତ୍ୟାଦି, ମାତ୍ର ଭକ୍ତମାନେ ଇଷ୍ଟ ପ୍ରସନ୍ନ ହେଲେ କହନ୍ତି—ଆମର ଧନରେ କ'ଣ ପ୍ରୟୋଜନ, ବୈଭବର ଅଭିଳାଷ ନାହିଁ । ପ୍ରସନ୍ନ ହୋଇ ପ୍ରଖର ପ୍ରତିଭା ପ୍ରଦାନ କରନ୍ତୁ, ସେଥି ନିମନ୍ତେ ବି ଆଗ୍ରହ ନାହିଁ । ଆମକୁ ପରିବାର, ପୁତ୍ର, ପତ୍ନୀ ତଥା ପ୍ରିୟ-ପରିଜନଙ୍କର ପ୍ରାପ୍ତି ହେଉ, ଏ ଅଭିଳାଷ ମଧ୍ୟ ନାହିଁ । ହେ କମଳ ନୟନ, ହେ ହୃଦୟେଶ, ଏହା ହିଁ କାମନା ଯେ, ଆପଣଙ୍କର ପାଦପଦ୍ମରେ ଅତୁଟ ଭକ୍ତି ରହିଥାଉ ।"

Digitized by srujanika@gmail.com

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି—"ରାଜନ୍, ହିରଣ୍ୟକଶିପୁର ତପସ୍ୟା କଥା କହି ଦେବତାମାନେ ଆପଣା ଆପଣାର କ୍ଷେତ୍ରକୁ ଫେରି ଯିବାପରେ ଲୋକ-ପିତାମହ ବ୍ରହ୍ମା ତାଙ୍କର ପୁତ୍ର ମହର୍ଷି ପ୍ରଜାପତିମାନଙ୍କ ଦ୍ୱାରା ପରିବୃତ୍ତ ହୋଇ ହିରଣ୍ୟକଶିପୁ ତପସ୍ୟା କରୁଥିବା ସ୍ଥାନକୁ ଆସିଲେ । ବ୍ରହ୍ମା ହଂସାରୂଢ଼ ହୋଇ ହିରଣ୍ୟକଶିପୁକୁ ଦେଖିବାକୁ ଚାହିଁଲେ; ମାତ୍ର ତାଙ୍କୁ ସେ ଦେଖାଗଲା ନାହିଁ । ଏଣେ ତେଣେ ଅନୁସନ୍ଧାନ କଲେ, ମାତ୍ର କେଉଁଠାରେ ହିରଣ୍ୟକଶିପୁ ଅଛି ଜାଣିପାରିଲେ ନାହିଁ । ସବୁଜ ଘାସ ଉଠିଥିଲା । ବାଉଁଶର ଅରଣ୍ୟ ଥିଲା । ଉଇମାନେ ଏଣେ ତେଣେ ମାଟି ଗଦା ଗଦା କରିଥିଲେ । ବିଶେଷ ଅନ୍ୱେଷଣ କଲାପରେ ତାଙ୍କୁ ଉଇମାଟିର ଏକ ବଡ଼ ଗଦା ଦେଖାଗଲା, ଯେଉଁଠାରେ ବାଉଁଶ ବଣ ଥିଲା, ବଡ଼ ବଡ଼ ଘାସ ଉଠିଥିଲା । ପିମ୍ପୁଡ଼ିମାନେ ଅନେକ ଗାତ କରିଥିଲେ । ନିରେଖି ଚାହିଁ ବ୍ରହ୍ମା ସ୍ଥିର କଲେ ଯେ, ଏଇଠାରେ ହିଁ ହିରଣ୍ୟକଶିପୁ ରହିଛି । ସେ ଦେଖିଲେ ଯେ ପିମ୍ପୁଡ଼ି ଓ ଉଇମାନେ ତା'ର ରକ୍ତ, ମାଂସ, ମେଦ, ଚର୍ମ ଆଦି ଖାଇ ସାରିଥିଲେ ଓ କେବଳ ଅସ୍ଥି ମାତ୍ର ଅବଶେଷ ରହିଥିଲା । ଏହା ଦେଖି ଲୋକପିତାମହ ବ୍ରହ୍ମା ଦୟା ପରବଶ ହୋଇ କହିଲେ—"ହେ ଦିତି ନନ୍ଦନ, ହେ କଶ୍ୟପକୁଳକେତୁ, ଉଠ । ବର୍ତ୍ତମାନ ତୁମର ତପସ୍ୟା ପୂର୍ଣ୍ଣ ହୋଇଛି । ତୁମର ସାଧନାର ଶ୍ରମ ସଫଳ ହୋଇଛି । ତୁମେ ବର୍ତ୍ତମାନ ସଫଳ ହୋଇଛ । ତୁମେ ବର୍ତ୍ତମାନ ସିଦ୍ଧ ହେଲ । ଆଉ ଅଧିକ କଷ୍ଟ ସହନ କରିବାର ଆବଶ୍ୟକତା ନାହିଁ । ମୁଁ ତୁମକୁ ବର ପ୍ରଦାନ କରିବାକୁ ଆସିଛି । ଯେପରି ତୁମେ ତପସ୍ୟା କରିଛ, ସେପରି ନା କେହି କେବେ କରିପାରିବ ନା କରିଛି । ତୁମର ବିଲକ୍ଷଣ ଧୈର୍ଯ୍ୟ । ଦେଖ, ତୁମର ସମ୍ପୂର୍ଣ୍ଣ ଶରୀରକୁ ପିମ୍ପୁଡ଼ି, ଉଇ, ମଶା, ଡାଆଁସ ଖାଇ ଦେଇ ସାରିଛନ୍ତି; ତଥାପି ମଧ୍ୟ ତୁମେ ତପସ୍ୟାରୁ ନିବୃତ୍ତ ହୋଇନାହଁ । ଦେବତାମାନଙ୍କ ବର୍ଷରେ ତୁମେ ଏକଶତ ବର୍ଷ ପର୍ଯ୍ୟନ୍ତ ଅଭୁକ୍ତ ରହି, ଜଳ ପର୍ଯ୍ୟନ୍ତ ସ୍ପର୍ଶ ନ କରି, ଶରୀରର ସମସ୍ତ ଶୁଦ୍ଧି ଭୁଲି ତପସ୍ୟା କରୁଛ । ଏପରି ତପସ୍ୟା କରିବାକୁ କାହାର ବା ସାମର୍ଥ୍ୟ ଅଛି ? ମୁଁ ତୁମର ଦୁଷ୍କର କର୍ମ ହେତୁ, ପ୍ରଶଂସନୀୟ ସାହସ, ତୀବ୍ର ତପୋନିଷ୍ଠା ଏବଂ ସୁଦୃଢ଼ ଏକାଗ୍ରତା ନିମନ୍ତେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି । ତୁମର ଯାହା ଇଚ୍ଛା ବର ମାଗ । ତୁମେ ମୋତେ ତୁମର ତପସ୍ୟା ଦ୍ୱାରା ବଶୀଭୂତ କରିପାରିଛ । ବର୍ତ୍ତମାନ ତୁମେ ମୋତେ ଯେଉଁ ବର ମାଗିବ, ମୁଁ ତାହା ତୁମକୁ ପ୍ରଦାନ କରିବି । ମୋତେ ଦେବ, ଅସୁର, ଯକ୍ଷ, ଗନ୍ଧର୍ବ ତଥା ସମସ୍ତ ପ୍ରାଣୀ ବରଦାତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି କହିଥାନ୍ତି । ମୁଁ ତୁମର ମନୋରଥ ପୂର୍ଣ୍ଣ କରିବି । ତୁମେ ଆଉ ବିଳମ୍ବ କରନାହିଁ ଏବଂ ନିଃସଙ୍କୋଚରେ ଯାହା ଇଚ୍ଛା ସେଇ ବର ମାଗ । ତୁମେ ମରଣଧର୍ମା ପ୍ରାଣୀ, ମୁଁ ନିତ୍ୟ ଅମର । ତେଣୁ ମୋର ଦର୍ଶନ ନିଷ୍ଫଳ ହୋଇପାରିବ ନାହିଁ ।"

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି—"ରାଜନ୍, ବ୍ରହ୍ମା ବହୁମତେ ହିରଣ୍ୟକଶିପୁକୁ ବୁଝେଇଲେ । ମାତ୍ର ସେ କିଛି ବୋଲି ଶୁଣିଲା ନାହିଁ । ସେ ଉଇମାନଙ୍କ

Digitized by srujanika@gmail.com

ଭିତରେ ଜଡ଼ ପ୍ରାପ୍ତ ହୋଇ ରହିଥିଲା । ବ୍ରହ୍ମା ବୁଝିଗଲେ ଯେ, ତାକୁ ତାଙ୍କର ଉପସ୍ଥିତ ହେବା ପର୍ଯ୍ୟନ୍ତ ଜଣାପଡ଼ି ନାହିଁ । ତେଣୁ ତାକୁ ପ୍ରଥମରେ ଚୈତନ୍ୟତା ପ୍ରଦାନ କରିବା ଉଚିତ । ଏହା ଭାବି ସେ ଆପଣାର ଦିବ୍ୟ କମଣ୍ଡଳୁର ଅମୋଘ ଜଳ ତା' ଉପରେ ସିଞ୍ଚନ କଲେ । ସେଇ ଦିବ୍ୟ ଜଳର ସ୍ପର୍ଶ ମାତ୍ରକେ ସେ ସେଇ ଦୂବ ଓ ବାଉଁଶ ବଣ ଭିତରେ ଯେଭଳି ଚୈତନ୍ୟତା ଲାଭ କଲା, ଯେପରି ଅରଣି ମଧ୍ୟରେ ଅଗ୍ନି ପ୍ରକଟିତ ହୋଇଥାଏ । ଅଥବା ମନ୍ଦ ଅଗ୍ନିରେ ଘୃତ ପଡ଼ି ଯେପରି ତା ପ୍ରଜ୍ଜ୍ୱଳିତ ହୋଇଥାଏ । ଅଥବା ଶୁଷ୍କ ବୃକ୍ଷ ଯେପରି ଅମୃତ ପାତରେ ପଲ୍ଲବିତ ହୋଇଉଠେ । ଅଥବା ଯେପରି ମଉଳି ଯାଇଥିବା ପଦ୍ମ ଜଳ ପାଇ ହୋଇ ପ୍ରଫୁଲ୍ଲିତ ହୋଇଉଠେ । ଯେଉଁ କମଣ୍ଡଳୁରୁ ତ୍ରୈଲୋକ୍ୟପାବନୀ, ମୁନି-ମନହାରିଣୀ, ଜଗତବନ୍ଦନୀ ଭଗବତୀ ଭାଗୀରଥୀ ପ୍ରକଟିତ ହୋଇଛନ୍ତି, ସେଇ ଅବିନାଶୀ ଜଳର ସ୍ପର୍ଶ ମାତ୍ରକେ ହିରଣ୍ୟକଶିପୁର ଶରୀର ପ୍ରଥମରୁ ଅଧିକ ଦିବ୍ୟ, ସୁଦୃଢ଼ ଓ ଦର୍ଶନୀୟ ହୋଇଉଠିଲା । ଓଜ ଓ ବଳ ସଂଯୁକ୍ତ ହୋଇ ପରମ ଦର୍ଶନୀୟ ଓ ହୃଷ୍ଟପୁଷ୍ଟ ହୋଇ ବଲ୍ମୀକ ମଧ୍ୟରୁ ସେ ବାହାରି ଦଣ୍ଡାୟମାନ ହେଲା । ତା'ର ଶରୀର ସୁବର୍ଣ୍ଣ ଭଳି ଝଟକି ଉଠୁଥିଲା । ତା'ର ଅଙ୍ଗରେ ଦିବ୍ୟ ଆଭୂଷଣ ଝଟକୁ ଥିଲା । ଯେତେବେଳେ ସେ ଆକାଶରେ ହଂସାରୂଢ଼ ଲୋକ-ପିତାମହ ବ୍ରହ୍ମାଙ୍କୁ ଦେଖିଲା, ସେତେବେଳେ ଆଶ୍ଚର୍ଯ୍ୟ ଚକିତ ହେଲା । ସମ୍ଭ୍ରମ ସହକାରେ, ପ୍ରେମ ପରିପୂର୍ଣ୍ଣ ହୃଦୟରେ ସେ ଭୂମି ଉପରେ ଦଣ୍ଡାୟମାନ ହୋଇ ଲୋକ-ପିତାମହଙ୍କୁ ସାଷ୍ଟାଙ୍ଗ ଦଣ୍ଡ ପ୍ରଣାମ କରିବାକୁ ଲାଗିଲା । ବହୁ ସମୟ ଧରି ସେ ପ୍ରଣାମ କଲା ଅନେକ ସମୟ ପରେ ବ୍ରହ୍ମଜ୍ଞାନ ଉଦୟ ହୁଅନ୍ତେ, ସେ ଉଠିଲା । ତା'ର ସମ୍ପୂର୍ଣ୍ଣ ଶରୀର ରୋମାଞ୍ଚିତ ହୋଇ ଉଠିଥିଲା । ପ୍ରେମୋଲ୍ଲାସରେ ତା'ର କଣ୍ଠ ଗଦ୍‌ଗଦ ହେଉଥିଲା । ଅତ୍ୟନ୍ତ ଉଲ୍ଲାସରେ ସେ ଆନନ୍ଦାଶ୍ରୁ ପୋଛି ଅସ୍ପଷ୍ଟ କଣ୍ଠରେ ଭଗବାନ ବ୍ରହ୍ମାଙ୍କର ସ୍ତୁତିପାଠ କରିବାକୁ ଲାଗିଲା ।''

ସୂତ କହୁଛନ୍ତି—''ହେ ମୁନିଗଣ, ହିରଣ୍ୟକଶିପୁ ଅବ୍ୟକ୍ତ ପ୍ରେମଭାବରେ ବ୍ରହ୍ମାଙ୍କର ଅତି ସୁନ୍ଦର ସ୍ତୁତି ପାଠ କଲା । ସେହି ସ୍ତୁତିରେ ସେ ବ୍ରହ୍ମାଙ୍କୁ ହିଁ ସୃଷ୍ଟି ସ୍ଥିତି ଓ ଲୟର କାରଣ ବୋଲି ବର୍ଣ୍ଣନା କରିଥିଲା । ତାଙ୍କୁ ହିଁ ଅବ୍ୟକ୍ତ, ପୁରାଣ-ପୁରୁଷ, ନିରୂ-ପାଧିକ ଚେତନ, ଅଚେତନ ଶକ୍ତିଯୁକ୍ତ, ଜଗନ୍ନିୟନ୍ତା, ସର୍ବଜ୍ଞ, ସର୍ବଗତ ବୋଲି ସିଦ୍ଧ କରୁଥିଲା । ସେହି ଦିବ୍ୟ ସ୍ତୁତିକୁ ମୁଁ ପୁନଶ୍ଚ ସ୍ତୁତି ପ୍ରସଙ୍ଗରେ ଶୁଣାଇବି । ତା'ର ସ୍ତୁତିରେ ପ୍ରସନ୍ନ ହୋଇ ବ୍ରହ୍ମା ପୁନଶ୍ଚ କହିଲେ—ପୁତ୍ର, ମୁଁ ତୋର ତପସ୍ୟାରେ ସନ୍ତୁଷ୍ଟ ହୋଇଛି, ବର୍ତ୍ତମାନ ତୁ ଦିବ୍ୟ ସ୍ତବନ ଦ୍ୱାରା ମୋତେ ଅଧିକ ସନ୍ତୁଷ୍ଟ କରିଛୁ । ତୁ ମୋତେ ମନୋଭିଳଷିତ ବର ମାଗ ।''

ବ୍ରହ୍ମାଙ୍କର କଥା ଶୁଣି ହିରଣ୍ୟକଶିପୁ କହିଲା—''ବ୍ରହ୍ମନ୍, ଆପଣ ସର୍ବଜ୍ଞ ଓ ସର୍ବ ସମର୍ଥ ଅଟନ୍ତି । ଯଦି ଆପଣ ମୋ ପ୍ରତି ସନ୍ତୁଷ୍ଟ, ତା'ହେଲେ ମୋତେ ସବୁକାଳ ପାଇଁ ଅଜର ଅମର ମରଣହୀନ କରନ୍ତୁ ।''

Digitized by srujanika@gmail.com

ଏହା ଶୁଣି ବ୍ରହ୍ମା କହିଲେ—"ପୁତ୍ର, ଦେବାଲୋକ ପକ୍ଷରେ ଥିବା ବସ୍ତୁ ହିଁ ମାଗିବା ଉଚିତ । କେହି ଜଣେ ଶୀତଳା ଦେବୀଙ୍କର ଆରାଧନା କଲା । ଶୀତଳା ଦେବୀଙ୍କର ବାହନ ଗଧ । କିଛି କାଳ ପରେ ତା'ର ଆରାଧନାରେ ସନ୍ତୁଷ୍ଟ ହୋଇ ଗର୍ଦ୍ଦଭବାହିନୀ ଶୀତଳାଦେବୀ ପ୍ରକଟିତ ହେଲେ ଏବଂ ତାକୁ ବର ମାଗିବାକୁ କହିଲେ ।" ସେ ଜଣକ କହିଲା—"ଦେବୀ, ଯଦି ଆପଣ ମୋ ଉପରେ ସନ୍ତୁଷ୍ଟ, ତା'ହେଲେ ମୋତେ ଏକ ସୁନ୍ଦର ଘୋଡ଼ା ପ୍ରଦାନ କରନ୍ତୁ ।"

ଏହା ଶୁଣି ଦେବୀ ବିରକ୍ତ ହୋଇ କହିଲେ—"ମୁଁ ସ୍ୱୟଂ ଗଧ ଉପରେ ଚଢ଼ୁଛି, ତୋତେ ଘୋଡ଼ାଟିଏ କୁଆଡ଼ୁ ଦେବି ? ଘୋଡ଼ା ଥିଲେ ମୁଁ ନିଜେ ଚଢ଼ନ୍ତି ନାହିଁ । ଆରେ ଭାଇ, ମୁଁ ନିଜେ ମଧ୍ୟ ଅଜର ଅମର ନୁହେଁ, ଆମ ଆୟୁରେ ଚୌଦବର୍ଷ ପୂର୍ତ୍ତି ହେଲେ, ଆମେ ବଦଳି ଯାଉ । ଅନ୍ୟ ବ୍ରହ୍ମା ଆସନ୍ତି । ଆମର ପଦ ମଧ୍ୟ ସ୍ଥାୟୀ ନୁହେଁ । ଏହା ମୋର ଶକ୍ତିର ବହିର୍ଭୂତ କଥା । ଭଗବାନଙ୍କ ମାୟା ଅଚିନ୍ତ୍ୟ, ମୁଁ ସ୍ୱୟଂ ମଧ୍ୟ ତା'ର କୂଳ କିନାରା ପାଇବି ନାହିଁ । ହଁ, ଯେଉଁ କଥା ମୋର ଶକ୍ତିର ସୀମା ମଧ୍ୟରେ ରହିଛି, ତାହା ମୁଁ ଦେଇପାରିବି । ତୁ ଯେତେ ପାରୁ, ସେତେ ନିଜକୁ ସୁରକ୍ଷିତ କରିନେ ଏବଂ ଯେଉଁ ଯେଉଁ କଥାକୁ ତୋର ଭୟ, ସେମାନଙ୍କଠାରୁ ନିର୍ଭୟ ହୋଇଯା ।"

ଏହା ଶୁଣି ହିରଣ୍ୟକଶିପୁ କହିଲା—"ତା'ହେଲେ ପ୍ରଭୁ, ମୁଁ ଯାହା ଯାହା ମାଗୁଛି, ଆପଣ ମୋତେ ତାହା ପ୍ରଦାନ କରନ୍ତୁ ।"

ବ୍ରହ୍ମା କହିଲେ – "ଠିକ୍ କଥା, ମାଗ ।"

ହିରଣ୍ୟକଶିପୁ କହିଲା —"ତେବେ ପ୍ରଭୁ, ମୋତେ ଏସବୁ କଥାରୁ ନିର୍ଭୟ କରନ୍ତୁ ।"

୧ । ମୁଁ ଆପଣଙ୍କ ଦ୍ୱାରା ସର୍ଜିତ କୌଣସି ପ୍ରାଣୀ ହାତରେ ମରିବି ନାହିଁ ।

୨ । କୌଣସି ଘର, ମଠ, ପ୍ରାସାଦ ଭିତରେ ବା ବାହାରେ ମରିବି ନାହିଁ ।

୩ । ମୋର ମୃତ୍ୟୁ ରାତ୍ରୀ କିମ୍ବା ଦିନରେ ହେବ ନାହିଁ ।

୪ । କୌଣସି ଅନ୍ୟ ବ୍ୟକ୍ତିଦ୍ୱାରା ରଚିତ ହୋଇଥିବା ତନ୍ତ୍ରଦ୍ୱାରା ମଧ୍ୟ ମୋର ମୃତ୍ୟୁ ହେବ ନାହିଁ ।

୫ । କୌଣସି ଧାତୁ, କାଷ୍ଠ ଆଦି ଦ୍ୱାରା ନିର୍ମିତ ଅସ୍ତ୍ର ଶସ୍ତ୍ରରେ ମୋର ମୃତ୍ୟୁ ହେବ ନାହିଁ ।

୬ । ପୃଥିବୀପରେ ସ୍ଥିତ ମୋର ଶରୀରର ଅନ୍ତ ହେବ ନାହିଁ ।

୭ । ଅଧର ଆକାଶରେ ଉଡ଼ୁଥିବାବେଳେ ବା ଝୁଲୁଥିବା ଅବସ୍ଥାରେ ମୋର ମୃତ୍ୟୁ ହେବ ନାହିଁ ।

Digitized by srujanika@gmail.com

୮ । ଯେତେ ବି ମନୁଷ୍ୟ ଅଛନ୍ତି, ଯେତେ ବି ପଶୁପକ୍ଷୀ ଅଛନ୍ତି, ଯେତେ ଯେତେ ଜାତିର ଜୀବଜନ୍ତୁ ଅଛନ୍ତି, ସେମାନଙ୍କ ହାତରେ ମୋର ମୃତ୍ୟୁ ହେବ ନାହିଁ ।

୯ । ପୃଥିବୀ ବ୍ୟତୀତ ସ୍ୱର୍ଗାଦି ଅନ୍ୟ ଲୋକରେ ନିବାସ କରୁଥିବା ଦେବତା, ଅସୁର, ଯକ୍ଷ, ନାଗ, ଗୁହ୍ୟକ, କୁଷ୍ମାଣ୍ଡ, ବେତାଳ, ଭୂତ, ପ୍ରେତ, ପିଶାଚ, ଡାକିନୀ, ସାକିନୀ, ଗନ୍ଧର୍ବ, କିଂପୁରୁଷ, କିନ୍ନର ଆଦି କୌଣସି ବି ଦେବ ଉପଦେବ ଜାତିର ଜୀବଦ୍ୱାରା ମୋର ମୃତ୍ୟୁ ହେବ ନାହିଁ ।

୧୦ । ଯୁଦ୍ଧରେ ଅସ୍ତ୍ରଶସ୍ତ୍ର ନେଇ କେହି ମଧ୍ୟ ମୋର ସମ୍ମୁଖୀନ ହୋଇ-ପାରିବ ନାହିଁ ।

୧୧ । ତ୍ରିଭୁବନରେ ମୁହିଁ କେବଳ ମାତ୍ର ଅଧୀଶ୍ୱର ହେବି ।

୧୨ । ଇନ୍ଦ୍ରାଦି ସମସ୍ତ ଲୋକପାଳ ଆପଣଙ୍କୁ ଆଦର କରନ୍ତି । ଆପଣଙ୍କର ଆଜ୍ଞା ପାଳନ କରନ୍ତି; ମୋର ମଧ୍ୟ ସେହିପରି ମହିମା ହେଉ । ମୋର ଆଜ୍ଞା ମଧ୍ୟ ସମସ୍ତେ ବିନା ବିରୋଧରେ ପାଳନ କରନ୍ତୁ । ସର୍ବତ୍ର ମୋର ଅପ୍ରତିହତ ଆଦେଶ ମାନ୍ୟ ହେଉ । ଆପଣଙ୍କୁ ଯେଉଁ ଅଣିମାଦି ସମସ୍ତ ସିଦ୍ଧି ପ୍ରାପ୍ତ ହୋଇଛି, ତାହା ମୋତେ ମଧ୍ୟ ପ୍ରାପ୍ତ ହେଉ । ଯୋଗାଦିର ପ୍ରଭାବରେ ଯୋଗୀଜନଙ୍କୁ କେବେ ବି କ୍ଷୀଣ ହେଉ ନ ଥିବା ଯେଉଁ ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇଥାଏ, ତାହା ମୋତେ ମଧ୍ୟ ପ୍ରାପ୍ତ ହେଉ । ସଂକ୍ଷେପରେ ମୁଁ ଆପଣଙ୍କଠାରୁ ଯେଉଁପରି କୌଣସି ଗୁଣରେ କମ୍ ନ ହୁଏ ।''

ଏତେ ବର ଏକା ସାଙ୍ଗରେ ଶୁଣି ବ୍ରହ୍ମା ବିବ୍ରତ ହେଲେ । ସେ ଭାବିଲେ—''ଏ ତ ମୋଠାରୁ ମଧ୍ୟ ବଡ଼ ହେବାକୁ ଚାହୁଁଛି । ମୋର ସମସ୍ତ ବିଭୂତି ଅଧିକାର କରିବାକୁ ଚାହୁଁଛି ।'' କ'ଣ ବା କରିପାରିବେ, ସେତେବେଳେ ବଚନ ଦେଇ ସାରିଛନ୍ତି । ତେଣୁ କହିଲେ—''ପୁତ୍ର, ମୁଁ ତୋର ଉପରେ ଅତ୍ୟନ୍ତ ସନ୍ତୁଷ୍ଟ । ଯଦ୍ୟପି ତୁ ଯାହା ଯାହା ବର ମାଗୁଛୁ, ସେସବୁ ମରଣଧର୍ମୀ ଜୀବ ନିମନ୍ତେ ପରମ ଦୁର୍ଲ୍ଲଭ, ତଥାପି ତୁ ଯେଉଁ ତପ ଆଚରଣ କରିଛୁ, ତାହା ଅଭୂତପୂର୍ବ ଏବଂ ମୁଁ ତୋ ନିକଟରେ ବଚନବଦ୍ଧ ହୋଇସାରିଛି । ତେଣୁ ଦୁର୍ଲ୍ଲଭ ହୋଇଥିଲେ ହେଁ ମୁଁ ବରପ୍ରଦାନ କରୁଛି, ତେଣିକି ଭଗବାନଙ୍କର ଇଚ୍ଛା ।''

ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି—''ଏପରି ପରମ ଦୁର୍ଲ୍ଲଭ ହେଲେ ମଧ୍ୟ ଏହି ସବୁ ବର ହିରଣ୍ୟକଶିପୁକୁ ପ୍ରଦାନକରି ଭଗବାନ ବ୍ରହ୍ମା ଦୈତ୍ୟରାଜଦ୍ୱାରା ପୂଜିତ ହୋଇ ପ୍ରତ୍ୟାବର୍ତ୍ତନ କଲେ ।''

ହିରଣ୍ୟକଶିପୁ ପ୍ରଥମରୁ ଅଭିମାନୀ ଥିଲା । ଏହାପରେ ଏଭଳି ଦୁର୍ଲ୍ଲଭ ବରପ୍ରାପ୍ତ ହୋଇ ତା'ର ଅଭିମାନର ସୀମା ରହିଲା ନାହିଁ । ତା'ପରେ ସେ ସଂସାରରେ ଅପଣାକୁ ସର୍ବଶ୍ରେଷ୍ଠ, ଶୂରବୀର, ପରାକ୍ରମୀ ଏବଂ ନିଗ୍ରହ ଅନୁଗ୍ରହ କରିବାକୁ ଏକମାତ୍ର ବ୍ୟକ୍ତି ବୋଲି

Digitized by srujanika@gmail.com

ମନେକଲା । ସଂସାରରେ ସେ ସବୁ କଥାକୁ ତୁଚ୍ଛ ମନେକଲା । ତପସ୍ୟା ହେତୁ ତା'ର ଶରୀରର କାନ୍ତି ସୁବର୍ଣ୍ଣ ସଦୃଶ ତେଜୋଦୀପ୍ତ ହୋଇଥିଲା । ତା'ର ଅଙ୍ଗ ପ୍ରତ୍ୟଙ୍ଗରୁ ଦର୍ପର ଜ୍ୟୋତି ଉଦ୍ଭୂତି ଉଠୁଥିଲା । ସେ ସମସ୍ତଙ୍କୁ ଆପଣାର ସମ୍ମୁଖରେ ତୁଚ୍ଛବତ୍ ବିବେଚନା କରୁଥିଲା । ଏହାପରେ ସେ ସମ୍ପୂର୍ଣ୍ଣ ଜଗତକୁ ଆପଣାର ବଶୀଭୂତ କରିବାକୁ ସ୍ଥିର କଲା । ସେ ଭାବିଲା—"ଏହି ବିଷ୍ଣୁ ହିଁ ଦେବତାମାନଙ୍କର ମୂଳ କାରଣ । ଏହାଙ୍କ ବଳପ୍ରାପ୍ତ ହୋଇ ଦେବତାମାନେ ତେଜିଉଠିଛନ୍ତି । ଦେବତାମାନଙ୍କର ପ୍ରରୋଚନାରେ ମୋର ଶ୍ରେଷ୍ଠ ଭାଇକୁ ବରାହରୂପୀ ବିଷ୍ଣୁ ମାରିଛନ୍ତି । ଏଣୁ ମୁଁ ସେଇ ବିଷ୍ଣୁଙ୍କୁ ମାରି ତା'ର ପ୍ରତିଶୋଧ ନେବି ଏବଂ ଦେବତାମାନଙ୍କୁ ଆତ୍ମସ୍ଥାନ କରି ଦାସ କରିବି ।" ଏହା ଭାବି ସେ ଭଗବାନଙ୍କ ସାଙ୍ଗରେ ଦ୍ୱେଷ ଆଚରଣ କରିବାକୁ ଲାଗିଲା । ତାଙ୍କୁ ଆପଣାର ଶତ୍ରୁ ବୋଲି ବିବେଚନା କଲା ।

## ଛପ୍‌ପୟ

ଭିତର ବାହାର ନହୀଂ ମରୂଁ ନିଶି ତଥା ଦିବସ ମହଁ ।
ଅସ୍ତ୍ର ଶସ୍ତ୍ର ସେ ନହୀଂ କହୁଁ ସବ ହୋଁ ମମ ବଶ ମହଁ ॥
ହୋହି ନ ମେରୀ ମୃତ୍ୟୁ ମନୁଜ, ମୃଗ ନାଗ ଅସୁର ତେଂ ।
ନହୀଁ ନଭ ଥଲମହଁ ମରୂଁ ହୋହି ଭୟ ନହୀଁ ସୁରନର ତେଂ ॥
ପ୍ରଭୁ ଜସ ଜଗମହଁ ମାନ୍ୟ ହୈଁ, ତସ ମେରୀ ହୂ ବୃଦ୍ଧି ହୋ ।
ବଲ ମହଁ ତପ ମହଁ ତେଜମହଁ, ଯୋଗିନ ସମ ସବ ସିଦ୍ଧି ହୋ ॥

---

# ହିରଣ୍ୟକଶିପୁର ଅନୁପମ ଐଶ୍ୱର୍ଯ୍ୟ

ସର୍ବସତ୍ତ୍ୱପତୀଞ୍ଜିତ୍ୱା ବଶମାନୀୟ ବିଶ୍ୱଜିତ୍ ॥
ଜହାର ଲୋକପାଳାନାଂ ସ୍ଥାନାନି ସହ ତେଜସା ॥
(ଶ୍ରୀ: ଭା: ୭ସ୍କ: ୪ଅ: ୭ଶ୍ଳୋ:)

—ଛପ୍ପୟ—

ବ୍ରହ୍ମା ବୋଲ୍ୟୋ—ବତ୍ସ !ବହୁତ ବର ଦୁରଲଭ ମାଁଗେ ।
ତଉ ଦୁଁଗୋ ଅବସି କରହ୍ୟୋ ପ୍ରନ ତେତେରେ ଆଗେ ॥
ବର ଦେ ଅନ୍ତର୍ଦ୍ଧାନ ଭୟେ ସୁରଶତ୍ରୁ ଘର ଆୟୋ ।
ବଧି ବର ମଦ ମହଁ ମତ୍ତ ଉପଦ୍ରବ ଆଇ ମଚାୟୋ ॥
ସୁରପୁର, ଯମପୁର, ବରୁନପୁର, ଧନପତିପୁର ନିଜ କରେ ବଶ ॥
ସବକୋ ସ୍ୱାମୀ ବନି ଗୟୋ, ପୀକୋ ସବକୋ କର୍‌ୟୋ ଯଶ ॥

ସଂସାରରେ ଏକେ ତ ପ୍ରେମଦ୍ୱାରା ପ୍ରାଣୀମାନେ ବଶୀଭୂତ ହୋଇଥାନ୍ତି, ଅଥବା ଭୟରେ, ପ୍ରେମରେ ହୃଦୟ ସହିତ ବଶୀଭୂତ ହୋଇଥାନ୍ତି, ମାତ୍ର ଭୟହେତୁ କେବଳମାତ୍ର ବାଣୀ ଓ ଶରୀର ବଶ ହୁଏ । ପ୍ରେମର ଅଧୀନତା ଆଜୀବନ ସ୍ଥାୟୀ ହୋଇ ରହେ ମାତ୍ର ଭୟର ଅଧୀନତା କେବଳମାତ୍ର ସେ ପର୍ଯ୍ୟନ୍ତ ରହେ ଯେତେବେଳ ପର୍ଯ୍ୟନ୍ତ ଶକ୍ତି ଆସିନାହିଁ, ନିର୍ବଳତା ରହିଛି । ସବଳ ହେବାମାତ୍ରକେ ବିରୋଧ କରିବାର ଶକ୍ତି ଆସିଲା ମାତ୍ରକେ ଅଧୀନତା ସମାପ୍ତ ହୋଇଯାଏ ଓ ପରାଧୀନ କରି ରଖିଥିବା ବ୍ୟକ୍ତିର ସର୍ବନାଶ ସାଧନ ନିମନ୍ତେ ପ୍ରଯତ୍ନ ଆରମ୍ଭ ହୋଇଯାଏ । ପାଶବିକ ଶକ୍ତିର ପ୍ରାଧାନ୍ୟ କିଛି ସମୟ ରହେ, ମାତ୍ର ତାଠାରୁ ମଧ୍ୟ ଅଧିକ କେହି ବଳବାନ କୌଣସି ସମୟରେ ଆସି ତାକୁ ପରାଭୂତ କରିଥାନ୍ତି । ତା'ର ମୃତ୍ୟୁରେ ସମସ୍ତେ ଆନନ୍ଦିତ ହୁଅନ୍ତି । ସଂସାରରେ ସର୍ବତ୍ର ତାର ନିନ୍ଦା ପ୍ରଚାରିତ ହୁଏ । ମାତ୍ର ପ୍ରେମୀର ମୃତ୍ୟୁରେ ସମସ୍ତେ ଦୁଃଖିତ ହୁଅନ୍ତି ଏବଂ ତାର ଯଶ ସୌରଭ ସମଗ୍ର ସଂସାରରେ ବ୍ୟାପ୍ତ ହୋଇଯାଏ । ସେମାନେ ଯଶ ହେତୁ ସଂସାରରେ ଅଜର ଅମର

Digitized by srujanika@gmail.com

ହୋଇଥାନ୍ତି । ଏହା ସାଧାରଣ ଲୋକ ସିଦ୍ଧାନ୍ତ । ଭଗବାନଙ୍କ ସହିତ ଦ୍ୱେଷ ସାଧନ କରିଥିବା ବ୍ୟକ୍ତି ମଧ୍ୟ ଅଜର ଅମର ହୋଇଥାଏ । ତାଙ୍କ ସହିତ କେହି କାମଦ୍ୱାରା କେହି କ୍ରୋଧରେ ଦ୍ୱେଷ ଅଥବା ଲୋଭରେ କେଉଁଭଳି ସମ୍ବନ୍ଧ ସ୍ଥାପନ କଲେ ମଧ୍ୟ ସେ ଅମର ହୋଇଯାଏ । ତେଣୁ ମନକୁ କୌଣସି ପ୍ରକାରେ ଶ୍ରୀକୃଷ୍ଣ ସମ୍ବନ୍ଧିତ କରିଦେବା ଉଚିତ ।''

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି—''ଭଗବାନ ବ୍ରହ୍ମାଙ୍କଠାରୁ ଏହିପରି ଦୁର୍ଲଭ ବରପ୍ରାପ୍ତ ହୋଇ ହିରଣ୍ୟକଶିପୁ ସ୍ୱଗୃହ ପ୍ରତ୍ୟାବର୍ତ୍ତନ କଲା । ଆସିବାମାତ୍ରକେ ସେ ଦିଗ୍‌ବିଜୟ କରିବାକୁ ବାହାରିବ ବୋଲି ଇଚ୍ଛା କଲା । ତାହା ଶୁଣିବାମାତ୍ରକେ ହାତୀ, ଘୋଡ଼ା, ରଥ ପଦାତିକ ଏପରି ଚତୁରଙ୍ଗ ବିରାଟ ସେନା ପ୍ରସ୍ତୁତ ହୋଇ ବାହାରିଲେ । ସେ ସମସ୍ତଙ୍କୁ ଭର୍ତ୍ସନା କରି ଧମକେଇ କହିଲା— ''ଯେଉଁମାନଙ୍କର ଆପଣା ବାହୁବଳ ଉପରେ ଭରସା ନ ଥାଏ, ସେମାନେ ସାଙ୍ଗରେ ସେନା ନେଇ ଯୁଦ୍ଧ କରିବାକୁ ଯାଆନ୍ତି । ମୁଁ ଏକାକୀ ସମଗ୍ର ବିଶ୍ୱ ବିଜୟ କରିବାକୁ ସମର୍ଥ ।''

ନାରଦ କହିଲେ—''ରାଜନ ! ଏପରି କହି ସେହି ଶୂରମାନୀ ଦୈତ୍ୟ ଗଦା ଧାରଣ କରି ଦିଗ୍‌ବିଜୟ ଉଦ୍ଦେଶ୍ୟରେ ବାହାରିଲା । ପ୍ରଥମରେ ସେ ସମସ୍ତ ଅସୁରମାନଙ୍କୁ ଆପଣାର ବଳ ପ୍ରଦର୍ଶନ କଲା । ଅସୁରମାନେ ତାକୁ ସମସ୍ୱରରେ ସମ୍ରାଟ ବୋଲି ସ୍ୱୀକାର କଲେ । ଅସୁରମାନଙ୍କୁ ଜିଣି ସେ ସ୍ୱର୍ଗ ଆକ୍ରମଣ କଲା । ଦେବତା-ମାନେ ତାର ନାମ ଶୁଣିବାମାତ୍ରକେ ସ୍ୱର୍ଗ ଶୂନ୍ୟ କରି ପଳାୟନ କଲେ । ସମସ୍ତ ସ୍ୱର୍ଗୀୟ ବସ୍ତୁ ଉପରେ ତାର ଅଧିକାର ସ୍ୱତଃ ଆସିଗଲା । ଯେତେବେଳେ ଦେବତା-ମାନେ ପରାଜିତ ହୋଇ ଆଧିପତ୍ୟ ସ୍ୱୀକାର କରିନେଲେ, ସେତେବେଳେ ଉପ-ଦେବତାମାନଙ୍କର କଥା କଏ ପଚାରେ । ଗନ୍ଧର୍ବ, ନାଗ, ସିଦ୍ଧ, ଚାରଣ, ବିଦ୍ୟାଧର, ପିତର, ଯକ୍ଷ, ରାକ୍ଷସ, ଭୂତ, ପ୍ରେତ, ପିଶାଚ, ବେତାଳ, ଗୁହ୍ୟକ, କୁଷ୍ମାଣ୍ଡ, ମନୁଷ୍ୟ, ଋଷି, ମୁନି, ମନୁ ପ୍ରଜାପତି ତଥା ସମସ୍ତ ଗଣମାନଙ୍କର ଅଧିପତି, ତାର ପ୍ରଭାବ ଦେଖି ହତପ୍ରଭ ହେଲେ । ସମସ୍ତେ ତାର ଅଧୀନତା ସ୍ୱୀକାର କରିନେଲେ । ସେପରି ଭାବରେ ସେ ଦଶଦିଗରେ ତାର ଆଧିପତ୍ୟ ବିସ୍ତାର କଲା ଓ ତ୍ରିଲୋକକୁ ଆପଣାର ବଶୀଭୂତ କଲା । ଯେଉଁମାନଙ୍କର ଯେଉଁ ଯେଉଁ ସୁନ୍ଦର ସୁନ୍ଦର ସ୍ଥାନ ରହିଥିଲା ସେହି ସମସ୍ତ ସ୍ଥାନମାନଙ୍କ ଉପରେ ସେହି ଦିଗ୍‌ବିଜୟୀ ଦୈତ୍ୟ ବଳାତ୍କାରରେ ଅଧିକାର ସ୍ଥାପନ କଲା । ସଂସାରରେ ଯେତେ ରତ୍ନ ଅଛି ବାଛି ବାଛି ନେଇ ସେ ଆପଣା ପାଖରେ ଏକତ୍ରିତ କରି ରଖିଲା । ତାପରେ ସେ ପୃଥିବୀରେ ରହିବା ଛାଡ଼ିଦେଲା ଇନ୍ଦ୍ରଙ୍କର ଅମରାବତୀରେ ଆପଣାର ନୂତନ ରାଜଧାନୀ ନିର୍ମାଣ କଲା ।

Digitized by srujanika@gmail.com

ବ୍ରହ୍ମାଙ୍କର ବରଦାନ ହେତୁ ଦୈତ୍ୟର କୌଣସି ଭୟ ନ ଥିଲା। ସଂସାରରେ କେହି ଶତ୍ରୁ ନ ଥିଲେ ବୋଲି ତାର କୌଣସି ପ୍ରକାର ଚିନ୍ତା ମଧ୍ୟ ନ ଥିଲା। ମନୁଷ୍ୟ ଯେତେବେଳେ ଚିନ୍ତାମୁକ୍ତ ଓ ଭୟଶୂନ୍ୟ ହୋଇଯାଏ ସେତେବେଳେ ତାର ହୃଦୟ ମଧ୍ୟରେ ନାନାପ୍ରକାର କଳା କୌଶଳର ଅଭିବୃଦ୍ଧି, ନାନାପ୍ରକାର ସାଜସଜ୍ଜା, ଇନ୍ଦ୍ରିୟ ସୁଖର ଭାବନା ଉଦୟ ହୋଇଥାଏ। ତେଣୁ ସେହି ଦୈତ୍ୟ ତାପରେ ସ୍ୱର୍ଗରେ ରହି ସ୍ୱର୍ଗ ସୁଖ ଭୋଗ କରିବାକୁ ଲାଗିଲା।

ସ୍ୱର୍ଗର ଶୋଭା ତ ଅତୁଳନୀୟ, ଯେଉଁଠାରେ ଦିବ୍ୟ ନନ୍ଦନବନ ରହିଛି, ଯେଉଁଠାରେ କଳ୍ପବୃକ୍ଷ, ପାରିଜାତର ଅମ୍ଳାନ ବୃକ୍ଷ, ସର୍ବଦା ସମ୍ପୂର୍ଣ୍ଣ ସ୍ୱର୍ଗ ରାଜ୍ୟକୁ ସୁବାସିତ କରି ରଖୁଥିବା ଦିବ୍ୟ ପୁଷ୍ପ ପ୍ରସ୍ଫୁଟିତ ହୋଇ ରହିଥାଏ, ସେହି ଶୋଭା-ମଣ୍ଡିତ ଅମରାବତୀର ଅନୁପମ ଉଦ୍ୟାନମାନଙ୍କରେ, ଯା'ର ନିର୍ମାଣ ସ୍ୱୟଂ ବିଶ୍ୱକର୍ମା କରିଛନ୍ତି, ସେଠାରେ ସେହି ତ୍ରିଲୋକ ଶୋଭାର ଆଶ୍ରୟଭୂତ ନିଖିଳ ବୈଭବ ସମ୍ପନ୍ନ ଇନ୍ଦ୍ର ଭବନରେ ଦେବାଙ୍ଗନାମାନଙ୍କ ସହିତ ସେ ବିହାର କରିବାକୁ ଲାଗିଲା।

ଯୌବନ ମଦରେ ମଦୋନ୍ମତ୍ତ ନବୀନ ବୟସୀ ସ୍ୱର୍ଗୀୟ ସୁରଲଳନାମାନଙ୍କର ସରଳ ମଧୁର ସଙ୍ଗୀତ ଧ୍ୱନିରେ ସେ ନିଦ୍ରା ତ୍ୟାଗ କରେ ଏବଂ ଦେବତା, ଋଷି ମୁନି, ସୂତମାଗଧମାନଙ୍କ ସଦୃଶ ସେତେବେଳେ ତାର ସ୍ତୁତି ଗାୟନ କରୁଥାନ୍ତି। ତା'ର ରହିବାର ଚିତ୍ରମୟ କକ୍ଷ ପ୍ରକୋଷ୍ଠ, ଶୟନ ଗୃହ, ପାନଗୃହ, କ୍ରୀଡ଼ାକକ୍ଷ ଆଦି ସମସ୍ତ ସୁସଜ୍ଜିତ କଳାକୌଶଳ ପରିପୂର୍ଣ୍ଣ ଥିଲା। କନକ ନିର୍ମିତ ଭବନମାନଙ୍କରେ ବିଦ୍ରୁମ ସୋପାନ ଶ୍ରେଣୀ ନିର୍ମିତ ହୋଇଥିଲା। ତାର ପ୍ରାଙ୍ଗଣ ମର୍କତ ମଣିଦ୍ୱାରା ନିର୍ମିତ ହୋଇ-ଥିଲା। ଦୂରରୁ ଦେଖିଲେ ମନେ ହେଉଥିଲା ଯେପରି ସମୁଦ୍ର ତରଙ୍ଗାୟିତ ହେଉଛି। ଭବନମାନଙ୍କର ଭବ୍ୟଭିତ୍ତି ସ୍ଫଟିକ ମଣିରେ ନିର୍ମିତ ହୋଇଥିଲେ, ଯେଉଁମାନଙ୍କୁ ଦେଖିଲେ ଆଖି ଝଲସି ଉଠୁଥିଲା। ତାର ସ୍ତମ୍ଭଗୁଡ଼ିକ ବୈଦୂର୍ଯ୍ୟ ମଣିଦ୍ୱାରା ନିର୍ମିତ ହୋଇଥିଲା। ସେଇ ଭବନଗୁଡ଼ିକ ସତେ ଯେଉଁପରି ମଣି ମୁକ୍ତାର ଆଳୟ ଥିଲେ। ଶୋଭାର ସମୁଦ୍ର ଥିଲେ। ଅତ୍ୟନ୍ତ ଆତ୍ମୀୟ ନିଷ୍ଠାରେ କଳାକୋବିଦ, ସୌନ୍ଦର୍ଯ୍ୟ ବିଶାରଦମାନେ ତାର ସଜ୍ଜୀକରଣ କରିଥିଲେ। ଜ୍ୟୋତ୍ସ୍ନା ଓ ମୋତିର ଝାଲରର ଚାକଚକ୍ୟ ହେତୁ ସେ ସବୁ ଝଟକୁ ଥିଲେ। ସେଥିରେ ସ୍ଥାନେ ସ୍ଥାନେ ପଦ୍ମରାଗମଣିର ଆସନ ପଡ଼ିଥିଲା। ସେ ଭବନଗୁଡ଼ିକ ସବୁ ଋତୁ ପାଇଁ ପରମ ସୁଖଦାୟୀ ଥିଲେ। ସେଠାରେ ସର୍ବଦା ବାସନ୍ତୀ ସୁଷମା ବିରାଜିତ ହୋଇ ରହିଥିଲା। ସେଠାରେ ନା ଗ୍ରୀଷ୍ମ ଥିଲା ନା ଶୀତ ଥିଲା। ବାୟୁ ମନ୍ଦ, ସୁଗନ୍ଧିତ ଓ ମନୋନୁକୂଳ ପ୍ରବାହିତ ହେଉଥିଲା। ସେଠାରେ ଶଯ୍ୟା ସୁଖଦ, ସ୍ୱଚ୍ଛ, ସୁନ୍ଦର ତଥା ସମସ୍ତ ସୌନ୍ଦର୍ଯ୍ୟବନ୍ତ ସାମଗ୍ରୀମାନଙ୍କ ଦ୍ୱାରା ସୁସଜ୍ଜିତ ହୋଇ ରହିଥିଲେ। ତାହା ଉପରେ ଉତ୍କୃଷ୍ଟ ସୁକୋମଳ ଶେଯ

Digitized by srujanika@gmail.com

ପଡ଼ୁଥିଲା । ଦୁଗ୍ଧ ଫେନ ସଦୃଶ, ଶ୍ୱେତ ଶଙ୍ଖ ସଦୃଶ, ବକୁଳ ବ୍ୟଜନ ପରି ଶୁଭ୍ର ବସ୍ତ୍ର ଆଚ୍ଛାଦିତ ହୋଇ ରହିଥିଲେ । ସୁନ୍ଦର ସୁଗନ୍ଧିତ ପୁଷ୍ପର ସୁକୋମଳ କଳିକାର ମାଳା ଓ ଗୁଚ୍ଛ କଳାର ଅନୁପମ ଶୃଙ୍ଖଳରେ ସଜ୍ଜିତ ହୋଇ ରହିଥିଲେ । ସେଥିରୁ ମୋତିର ମାଳା ସ୍ଥାନେ ସ୍ଥାନେ ଝୁଲି ରହିଥିଲେ । ଅତ୍ୟନ୍ତ ସୁଖସ୍ପର୍ଶୀ ସୁକୋମଳ ଆଚ୍ଛାଦନ ବସ୍ତ୍ର ଏବଂ ଶିରିଷ ପୁଷ୍ପର ପାଖୁଡ଼ା ଭଳି ମୃଦୁଳ ଉପଧାନ ରଖାଯାଇଥିଲା । ସେଠାରେ ତେଲ ଅଥବା ଘୃତର ଦୀପ ଜଳୁ ନ ଥିଲେ, ସେଠାରେ ପ୍ରକାଶବନ୍ତ ମଣି-ମାନଙ୍କର ପ୍ରକାଶ ହେତୁ ଦିବ୍ୟ ଭବନଗୁଡ଼ିକ ସର୍ବଦା ପ୍ରକାଶବନ୍ତ ଥିଲେ । କ୍ଷୀଣକଟି, ମୃଦୁ ସ୍ମିତ ହାସ୍ୟ, କମନୀୟ ଦନ୍ତବତୀ ପରିପୂର୍ଣ୍ଣ ଯୌବନା ଏବଂ ମଦିରାର ମଧୁର ଉନ୍ମତ୍ତ ଅସଂଖ୍ୟ ଲଲାମ ଲଳନା ସେମାନଙ୍କର ନୂପୁରଯୁକ୍ତ ପଦର ଲଳିତ ଗତିରେ ସେଇ ଭବନକୁ ସଦା ସଙ୍ଗୀତମୟ କରି ରଖୁଥିଲେ । ଭୁଜବନ୍ଧ, କଙ୍କଣ, ମେଖଳା ଓ ଅପର ଆଭୂଷଣମାନଙ୍କର ଝଙ୍କାରରେ ସେହି ପୁର ଭବନ ମୁଖରଭଳି, ଗାନ କରୁଥିବା ଭଳି ପ୍ରତୀତ ହେଉଥିଲା । ଛମଛମ କରି, ରତ୍ନ ସ୍ଥଳରେ ଆପଣାର ମନୋହର ମୁଖମଣ୍ଡଳ ଦେଖି, ସ୍ମିତ ହସି, ବ୍ରୀଡ଼ାରେ ରୋମାଞ୍ଚିତ ହୋଇ, ଚପଳ ନେତ୍ର ନଚାଇ ଦେବାଙ୍ଗନା ମାନେ ଭବନ ମଧ୍ୟରେ ସ୍ୱଚ୍ଛନ୍ଦ ବିହାର କରୁଥିଲେ । ସେମାନଙ୍କର କୌଣସି ବିଷୟରେ ଚିନ୍ତା ନ ଥିଲା ନା ଆକାଂକ୍ଷା ଥିଲା । ସମସ୍ତ ଆବଶ୍ୟକୀୟ ସାମଗ୍ରୀ ସେମାନଙ୍କୁ ସଙ୍କଳ୍ପମାତ୍ରକେ ପ୍ରାପ୍ତହେଉଥିଲା । ସେମାନେ ପୂର୍ବରୁ ଦେବରାଜ ଇନ୍ଦ୍ରଙ୍କୁ ମୁଗ୍ଧ କରୁଥିଲେ ବର୍ତ୍ତମାନ ଦୈତ୍ୟରାଜ ହିରଣ୍ୟକଶିପୁର ପରିଚର୍ଯ୍ୟା ନିମନ୍ତେ ଆପଣାକୁ ନିୟୋଜିତା କରି ରଖିଥିଲେ ।

ଦୈତ୍ୟରାଜ ହିରଣ୍ୟକଶିପୁ ଯେପରି ସୌନ୍ଦର୍ଯ୍ୟପ୍ରିୟ ଥିଲା, ସେହିପରି କଠୋର ଶାସକ ମଧ୍ୟ ଥିଲା । ତାର ସମ୍ମୁଖରେ ମଥା ଟେକି ରହିବାକୁ କେହି ସାହସ ସୁଦ୍ଧା କରୁ ନଥିଲେ । ସେ ମହାବଳୀ, ମନସ୍ୱୀ, ଓଜସ୍ୱୀ, ତ୍ରୈଲୋକ୍ୟ ବିଜୟୀ ତଥା ସଂସାରରେ ସର୍ବଶ୍ରେଷ୍ଠ ଶୂରବୀର ଥିଲା । ବରପ୍ରାପ୍ତିର ପ୍ରଭାବରେ ତାହା ସମ୍ମୁଖରେ ଅସ୍ତ୍ରଧାରଣ କରି ଶତ୍ରୁ ଉପସ୍ଥିତ ରହିପାରୁ ନଥିଲେ । ଯେଉଁ ଦେବତାମାନଙ୍କର ତେଜ, ଓଜ, ତାର ତେଜ ଆଗରେ ମଳିନ ପଡ଼ି ଯାଇଥିଲା, ସେହି ଦେବତାଗଣ ତା'ର ଯୁଗଳ ଚରଣର ନିରନ୍ତର ସେବା କରୁଥିଲେ । ତାକୁ ଆଖି ଟେକି ଦେଖିବାକୁ ସୁଦ୍ଧା କେହି ସାହସ କରୁ ନ ଥିଲେ । ସେ ସୁନ୍ଦର ଉତ୍କଟ ଗନ୍ଧଯୁକ୍ତ ମଦିରା ନିରନ୍ତର ପାନ କରୁଥିଲା । ସେହି କାରଣରୁ ତାର ଅରୁଣବର୍ଣ୍ଣୀ ବିଶାଳନେତ୍ର ମଦମନ୍ଥ, ଅଳସ ମନେ ହେଉଥିଲେ । ତପ, ତେଜ, ଓଜ, ପାନ, ପରାକ୍ରମରେ ତଥା ଶାରୀରିକ ବଳରେ ତାର ସମକକ୍ଷ ତ୍ରିଭୁବନରେ ତିନିଦେବଙ୍କୁ ଛାଡ଼ି ଆଉ କେହି ନଥିଲେ । ଇନ୍ଦ୍ର, ବରୁଣ, କୁବେର, ଯମ, ବାୟୁ, ଅଗ୍ନି ଆଦି ଲୋକପାଳ ଉପହାର ଧରି ତାର

Digitized by srujanika@gmail.com

ସେବା ନିମନ୍ତେ ସର୍ବଦା ସମୁପସ୍ଥିତ ଥିଲେ । ସେ ଯେତେବେଳେ ଆଜ୍ଞା ଦେଉଥିଲା ଉଠୁଥିଲେ, ଇଙ୍ଗିତ ମାତ୍ରକେ ବସୁଥିଲେ । ଏତେ କଠୋର ହୃଦୟ ହୋଇ ମଧ୍ୟ ସେ ଅସୁର ସଙ୍ଗୀତ ପ୍ରତି ଅତ୍ୟନ୍ତ ଅନୁରାଗୀ ଥିଲା । ବିଶ୍ୱବସୁ, ତୁମ୍ବୁରୁ ଆଦି ଗନ୍ଧର୍ବ ସର୍ବଦା ସଭାରେ ଉପସ୍ଥିତ ରହି ତା'ର ଗୁଣଗାନ କରୁଥିଲେ । ଋଷି, ମୁନି, ସିଦ୍ଧ, ବିଦ୍ୟାଧର ଆଦି ତାର ସ୍ତୁତି ପାଠ କରୁଥିଲେ । ରାଜନ, ଅନ୍ୟର କଥା ଛାଡନ୍ତୁ ମଧ୍ୟ ତାର ଗୁଣଗାନ କରିବାକୁ ହେଲା ।

ଏହା ଶୁଣି ହସି ହସି ଧର୍ମରାଜ କହିଲେ—"ଭଗବାନ, ଆପଣତ ଈଶ୍ୱରଙ୍କର ଅବତାର । ଆପଣ କେଉଁପରି ତାର ଗୁଣଗାନ କରୁଥିଲେ ।"

ଏହାର ଉତ୍ତରରେ ମହର୍ଷି ନାରଦ ତତ୍‌କ୍ଷଣାତ୍ କହିଲେ–"ରାଜନ, ବଳବନ୍ତ ଆଗରେ ଅବତାର ପଣ ମଳିନ ହୋଇଯାଏ । ସେ ସମୟରେ ସେଇ ରଜ ଓ ତମଯୁକ୍ତ ଅବତାରର ସମୟ ଥିଲା । ସବୁ କଥା ଆପଣା ସମୟ ଆସିଲେ ଝଟକାନ୍ତି । ପର୍ଶୁରାମ ଏତେ ବଡ଼ ବଡ଼ ମହାବଳୀ କ୍ଷତ୍ରିୟମାନଙ୍କ ସମକ୍ଷରେ ଚମକିଲେ । ସହସ୍ର ବାହୁ ମଧ୍ୟ ଅବତାରୀ ଥିଲେ ମାତ୍ର ପର୍ଶୁରାମ ଅବତାର ଆଗରେ ସେ ତେଜ ହତ ହେଲା ଏବଂ ପର୍ଶୁରାମଙ୍କ ହାତରେ ସହସ୍ରବାହୁ ନିହତ ହେଲେ । କୌଣସି କ୍ଷତ୍ରିୟ ତାଙ୍କର ସମ୍ମୁଖୀନ ହୋଇ ପାରିଲା ନାହିଁ । ଏହି ପୃଥ୍ୱୀ ଏକୋଇଶବାର ପରିକ୍ରମା କରି ସେ ପୃଥିବୀକୁ ନିକ୍ଷତ୍ରିୟ କରିଦେଲେ । ଯେତେବେଳେ ତାଙ୍କର ସମୟ ସମାପ୍ତ ହେଲା ସେ ଶ୍ରୀରାମଚନ୍ଦ୍ରଙ୍କ ନିକଟରେ ପରାଜିତ ହେଲେ, ଲଜ୍ଜିତ ହେଲେ । ତେଜହୀନ ହୋଇ ତପସ୍ୟା କଲେ । ସେହିପରି ସେହି ଅସୁର ସମକ୍ଷରେ ମୋର ଅବତାର ମଧ୍ୟ ପରାଭୂତ ହେଲା । ମୋତେ ମଧ୍ୟ ସମସ୍ତ ବିଷୟ ସ୍ୱୀକାର୍ଯ୍ୟ ହେଲା ।"

ହସି ହସି ଧର୍ମରାଜ କହିଲେ—"ଆପଣ କିପରି ତା'ର ସଭାରେ ଉପସ୍ଥିତ ହେଲେ ?"

ନାରଦ କହିଲେ—"ରାଜନ, ଆପଣ ଜାଣନ୍ତି ଯେ ମୁଁ ସଙ୍ଗୀତର ବ୍ୟସନୀ । ଗାୟନ ମୋର ଅତ୍ୟନ୍ତ ପ୍ରିୟ । ମୁଁ ସର୍ବଦା ସ୍ୱରବ୍ରହ୍ମ ବିଭୂଷିତ ବୀଣାରେ ଭଗବାନଙ୍କର ମଧୁର ନାମ-କୀର୍ତ୍ତନ କରୁଥାଏଁ । ତୁମ୍ବୁରୁ ଗନ୍ଧର୍ବ ସହିତ ମୋର ପ୍ରଗାଢ଼ ମୈତ୍ରୀ । ଦିନେ ସେହି ଗନ୍ଧର୍ବ ସେହି ଦୁଷ୍ଟକୁ କହିଦେଲା—"ମହାରାଜ, ବୀଣାବାଲା ବାବାଜୀଟିଏ ଅଛି ଭାରି ଭଲ ଗାଏ । ତାପରେ ଆଉ କଣ ? ରାଜାଜ୍ଞା ହେଲା ଧରି ଆଣ ।"

ତୁମ୍ବୁରୁ ମୋର ସ୍ୱଭାବ ଜାଣେ । ସେ ମୋ ପାଖକୁ ଆସି କହିଲା- "ନାରଦ ଭାଇ, ଆଜି କାଲି ସ୍ୱର୍ଗରେ ଅତି ସୁନ୍ଦର ସଙ୍ଗୀତ ଗୋଷ୍ଠୀ ହେଉଛି । ଏ ଯେ

Digitized by srujanika@gmail.com

ଅସୁର ନୁଆ ଇନ୍ଦ୍ର ହୋଇଛନ୍ତି ସେ ଭାରି ସଙ୍ଗୀତ ପ୍ରେମୀ । ଭଲ ଭଲ ଗାୟକ ଗନ୍ଧର୍ବ ଓ ଅପସରାମାନଙ୍କୁ ଡ଼ାକି ରଖିଛନ୍ତି । ଯଦି ଆପଣ ବି ଚାଲନ୍ତୁ ।"

ରାଜନ୍, ସଙ୍ଗୀତ ପ୍ରେମୀକୁ ଯଦି କେଉଁଠାରେ ସୁନ୍ଦର ସଙ୍ଗୀତ ଶ୍ରବଣର ସୁଅବସର ପ୍ରାପ୍ତ ହୁଏ ତାହାଲେ କେବେ ବି ସେ ତାହା ଛାଡ଼ି ପାରେ ନାହିଁ । ମୁଁ ତୁରନ୍ତ ବୀଣା ଧରି ତୁମ୍ବୁରୁ ସାଙ୍ଗରେ ଚାଲିଗଲି । ସ୍ୱର୍ଗରେ ଯାଇ ଦେଖିଲି ସଙ୍ଗୀତର ସାଗର ବହୁଛି । ସେଠି କିଏ ଆମର ସ୍ୱାଗତ କରନ୍ତା । ଗନ୍ଧର୍ବମାନଙ୍କ ମଧ୍ୟରେ ଯାଇ ବସିଗଲି । ସମସ୍ତେ ଗାଇ ଶୁଣାଉ ଥିଲେ, ମୁଁ ମଧ୍ୟ ତୁମ୍ବୁରୁକୁ କହିଲି—"ମୁଁ ଗାଇବି କି ?" ସେ ଇସାରାରେ କହିଲା—"ନା ବର୍ତ୍ତମାନ ନୁହେଁ ।"

ଅତି ସୁନ୍ଦର ସଙ୍ଗୀତ ବୈଠକ ଚାଲିଥିଲା । ମୋର ହୃଦୟ ମଧ୍ୟ ଆନ୍ଦୋଳିତ ହେବାକୁ ଲାଗିଲା । ଗାଇବାକୁ ଉତ୍କଣ୍ଠିତ ହେଲି । ମାତ୍ର ତୁମ୍ବୁରୁ ମୋତେ ବାରମ୍ବାର ମନା କରୁଥାଏ । ସେ ସମୟରେ ହିରଣ୍ୟକଶିପୁ ତୁମ୍ବୁରୁକୁ ଦେଖିଲା । ତୁମ୍ବୁରୁ ଠିଆ ହୋଇ କହିଲା—ପ୍ରଭୁ ! ଏ ହେଉଛନ୍ତି ଦେବର୍ଷି ନାରଦ ! ଅତି ସୁନ୍ଦର ଗାୟନ କରନ୍ତି । ଆଦେଶ ହେଲେ, ଏ ମଧ୍ୟ କିଛି ଶୁଣେଇବେ ।"

ଏହା ଶୁଣି ସେ ଗର୍ବର ସହିତ ସ୍ୱୀକୃତି ସୂଚକ ମୁଣ୍ଡ ହଲେଇଲା । ମୁଁ ବୀଣା ଉଠେଇ ଆଲାପ ଆରମ୍ଭ କଲି । ଯେମିତି ମୁଁ ରାମକୃଷ୍ଣ ହରି ଆଲାପ ଆରମ୍ଭ କଲି ତାର ଭ୍ରୂକୁଟୀ କୁଟୀଳ ହୋଇ ଉଠିଲା ଏବଂ ସେ କ୍ରୋଧରେ ଓଠ କାମୁଡ଼ିବାକୁ ଲାଗିଲା । ତୁମ୍ବୁରୁ ମୁହଁ ବୁଲେଇ ମୁହଁରେ ଲୁଗା ଦେଇ ହସୁଥାଏ । ଅପ୍ସରାମାନେ ଡରିଯାଇଥାନ୍ତି । ଗନ୍ଧର୍ବମାନେ ଉତ୍ସୁକତାବଶତଃ ମୋତେ ଦେଖୁଥାନ୍ତି । ରାଜନ, ଆପଣତ ଜାଣନ୍ତି, ମୁଁ ସମୟବାଦୀ, ସମୟ ଅନୁସାରେ କାର୍ଯ୍ୟ କରେ । ଅସମୟ ବେସୁରା ରାଗ ଆଲାପ କରେ ନାହିଁ । ଯେତେବେଳେ ମୁଁ ଦେଖିଲି ଯେ ଏହା ରାମକୃଷ୍ଣଙ୍କର ଗୁଣଗାନର ବେଳ ନୁହେଁ, ମୁଁ ଆପଣା ରାଗ ବଦଳେଇ ଦେଲି ଏବଂ ଗାଇବା ଆରମ୍ଭ କରିଦେଲି—"ହିରଣ୍ୟକଶିପୁ, ହିରଣ୍ୟକଶିପୁ, ହିରଣ୍ୟକଶିପୁ ହାହା । ଜୟ ହିରଣ୍ୟକଶିପୁ ହାହା ।"

ଆପଣା ନାମର କୀର୍ତ୍ତନ ଶୁଣି ସେ ଅସୁର ଅତି ପ୍ରସନ୍ନ ହେଲା । ସେ ତୁମ୍ବୁରୁକୁ ପଚାରିଲା—"ଏ ବାବାଜୀ ମୋ ନାମର କୀର୍ତ୍ତନ କରୁଛି, ହେ ହରି ସୁନ୍ଦର ମାତ୍ର ପଦର ଶେଷରେ ଏ ହାହା ହାହା କଣ କରୁଛି !"

ତୁମ୍ବୁରୁ କଥା ସମ୍ଭାଳି ନେଲା—"କହିଲ, ପ୍ରଭୁ ସେ ଏଇ ଅପ୍ସରାମାନଙ୍କୁ ସମ୍ବୋଧିତ କରି କହୁଛନ୍ତି ହା ! ଦେଖ କେତେ ସୁନ୍ଦର ନାମ !" ତାହା ଶୁଣି ସେ ଦୁଷ୍ଟ ଦାନବ ଅତି ସନ୍ତୁଷ୍ଟ ହେଲା । ହେ ରାଜନ, ମୁଁ ତ କୀର୍ତ୍ତନ କରିଥିଲି । ହିରଣ୍ୟକଶିପୁ ହାହା, ଶ୍ରୀହରିଙ୍କର କୀର୍ତ୍ତନ । କିନ୍ତୁ ସେହି ଦୁଷ୍ଟକୁ ପ୍ରସନ୍ନ କଲି

Digitized by srujanika@gmail.com

ଛଳନାରେ । ଭଗବତ୍ ନାମର କୀର୍ତ୍ତନ ଯେପରି ବି କରାଯାଉ ତାହା କଲ୍ୟାଣକାରୀ ଅବଶ୍ୟ ।”

ଧର୍ମରାଜଙ୍କୁ ନାରଦ କହିଲେ—“ରାଜନ ସେପରି ଭାବରେ ସେ ଦୁଷ୍ଟ କେବଳ ସ୍ୱର୍ଗ ସୁଖହିଁ ଉପଭୋଗ କରୁ ନଥିଲା, ଯଜ୍ଞରେ ଇନ୍ଦ୍ର, ବରୁଣ, କୁବେର ଆଦି ଦେବତାମାନେ ଓ ଲୋକପାଳମାନେ ଯେଉଁ ହବି ଭାଗ ପାଇଥାନ୍ତି, ତାହା ସେ ସ୍ୱୟଂ ଗ୍ରହଣ କରୁଥିଲା । ବଡ଼ ବଡ଼ ଦକ୍ଷିଣା ସମ୍ପନ୍ନ ଓ ବିଧିବିଧାନ ପୂର୍ବକ ଅନୁଷ୍ଠିତ ଯଜ୍ଞରେ ଯଜନ ଭାଗକୁ ଆପେ ପ୍ରବଳ ପ୍ରଭାବ ହେତୁ ଅପହରଣ କରିବାକୁ ଲାଗିଲା । ଜଡ ଚୈତନ୍ୟ ସମସ୍ତେ ତା’ର ଉପ୍ରରେ ଥରିବାକୁ ଲାଗିଲେ ।

ଏକଦିନ ପୃଥିବୀରେ ବିଚରଣ କରୁଥିବାବେଳେ ସେ ଦେଖିଲା ଯେ ଅନେକ କୃଷକ ହଳ ନେଇ ଭୂମି କର୍ଷଣ କରୁଛନ୍ତି । ସେ ପଚାରିଲା—“ତୁମେ ସମସ୍ତେ ସ୍ୱୟଂ ଏତେ ପରିଶ୍ରମ କାହିଁକି କରୁଛ ଏବଂ ଏହି ବଳଦମାନଙ୍କୁ ମଧ୍ୟ ଏତେ କଷ୍ଟ କାହିଁକି ଦେଉଛ !”

କୃଷକମାନେ କହିଲେ—“ପ୍ରଭୁ ! ଯଦି ଆମେ ଭୂମି କର୍ଷଣ କରିବୁ ନାହିଁ, ତାହେଲେ ସେଥିରେ ବୀଜ ଧାରଣ ହୋଇପାରିବ ନାହିଁ । ବୀଜଧାରଣ ନ ହେଲେ ଆମେ ଖାଇବୁ କଣ ? ଖାଦ୍ୟ ବିନା ମରିବୁ ଏଣୁ ଭୂମି କର୍ଷଣ କରୁଛୁ ।”

ସେ କ୍ରୋଧରେ କହିଲା—“ଯଦି କର୍ଷଣ କରିବ ନାହିଁ ?”

କୃଷକମାନେ କହିଲେ—“ଅନ୍ନଦାତା ! କର୍ଷଣ ନ କଲେ ଭୂମି ଉର୍ବରା ରହିବନାହିଁ, ଊଷର ହେବ । ଅନ୍ନ ଉତ୍ପନ୍ନ କରିବ ନାହିଁ ।”

ରୋଷପୂର୍ଣ୍ଣ କଣ୍ଠରେ ଦୈତ୍ୟରାଜ କହିଲା—“ମୋ ରାଜ୍ୟରେ ପୃଥ୍ୱୀର ଏତେ ସାହସ । ମୁଁ ଆଜ୍ଞା ଦେଉଛି, ଆଜଠାରୁ ହଳ ଲଙ୍ଗଳ ଭାଙ୍ଗିଦେଇ କେହି ପୃଥିବୀରେ ଆଉ ହଳ କରିବେ ନାହିଁ । ଶସ୍ୟ ବୁଣିବେ ନାହିଁ । ଯାହାର ଯେଉଁ ଶସ୍ୟ ଓ ଔଷଧି ଆବଶ୍ୟକ ସେ କେବଳମାତ୍ର ସଂକଳ୍ପ କଲେ ପୃଥିବୀ ତାକୁ ଘରେ ଘରେ ବସିଥାଇ ଦେବ । ପୃଥିବୀ ନ ଦେଲେ ମୁଁ ତାକୁ ଖଣ୍ଡ ଖଣ୍ଡ କରିଦେବି ।”

ସେ ଦୈତ୍ୟକୁ ତ ସମସ୍ତେ ଡରୁଥିଲେ—ସେଇଦିନଠାରୁ ପୃଥିବୀ ବିନା ହଳ କରାହୋଇ ତା ରାଜ୍ୟରେ ଯଥେଷ୍ଟ ଇଚ୍ଛିତ ଅନ୍ନ ଉତ୍ପନ୍ନ କରିବାକୁ ଲାଗିଲା । ସ୍ୱର୍ଗରେ ଯେତେବେଳେ ଯା’ର ଯାହା ଇଚ୍ଛା ହୁଏ ସେତେବେଳେ ସେଇ ବସ୍ତୁ ତାକୁ ପ୍ରାପ୍ତ ହୋଇଥାଏ । ପାତାଳଲୋକରେ ଏପରି ରତ୍ନ ସବୁ ଭରିଗଲା ଯେ ସେଠାରେ ମଣି ଏବଂ ରତ୍ନର ସବୁଠି ଏକ ପ୍ରଦର୍ଶନୀ ଭଳି ହୋଇଗଲା ।

ଯା’ର ଯେତେବେଳେ ରତ୍ନର ଆବଶ୍ୟକ ହୁଏ ସେ ସମୁଦ୍ର ନିକଟକୁ ଯାଏ ନାହିଁ । ଯେମିତି ସମୁଦ୍ର ସ୍ୱୟଂ ଆପଣା ତରଙ୍ଗରେ ଆପଣାର ପତ୍ନୀ ନଦୀମାନଙ୍କଦ୍ୱାରା

Digitized by srujanika@gmail.com

ତା ପାଖକୁ ବିବିଧ ରତ୍ନ ପହଞ୍ଚାଇ ଦଅନ୍ତି । ସମୁଦ୍ର ତାକୁ ନିଜେ ରାସ୍ତା ଦେଇଦିଏ । ବୃକ୍ଷ ତା ପାଇଁ ଅଯାଚିତ ଭାବରେ ସବୁ ଋତୁରେ ସ୍ୱାଦିଷ୍ଟ ପକ୍ୱ ଫଳ ପ୍ରଦାନ କରେ । ପର୍ବତମାନେ ଗୁମ୍ଫାମାନଙ୍କୁ ମଣିମଣ୍ଡିତ କରିଦିଅନ୍ତି, କାଳେ ବିହାର କରିବାକୁ କୌଣସି ଦେବାଙ୍ଗନା ସହିତ ସେ ଦୈତ୍ୟ ଆସିଯିବ । ମୋଟାମୋଟି ଭାବରେ ସମସ୍ତ ଜଡ଼ଚେତନ ତା'ର ତେଜରେ ଭୟଭୀତ ହୋଇ ତା'ର ଅନୁକୂଳ ଆଚରଣ କରିବାକୁ ଲାଗିଲେ । ସଂସାରରେ ସେ ଯାହା ବି ଉଚିତ ଅନୁଚିତ କାର୍ଯ୍ୟ କରୁଥାଏ, ବିରୋଧ କରିବାକୁ ବି କାହାର ହେଲେ ସାହସ ହେଉ ନଥାଏ । ସେ ଏକାକୀ ସମସ୍ତ ଲୋକପାଳମାନଙ୍କର ଗୁଣ ଧାରଣ କରୁଥାଏ । ଇନ୍ଦ୍ର ହୋଇ ନିଜେ ବର୍ଷା କରାଏ । କୁବେର ହୋଇ ସମସ୍ତ ଧନ ଉପରେ ଆଧିପତ୍ୟ ବିସ୍ତାର କରେ । ଯମ ହୋଇ ଦଣ୍ଡ ଦିଏ ଏବଂ ବରୁଣ ହୋଇ ସମସ୍ତ ଜଳଚରମାନଙ୍କ ଉପରେ ଶାସନ କରୁଥାଏ ।

ଯଦ୍ୟପି ତା'ର ସୁଖ ଥିଲା, ତିନିଲୋକରେ ତାକୁ ତାହା ଯଥେଷ୍ଟ ମାତ୍ରାରେ ପ୍ରାପ୍ତ ହୋଇଥିଲା; ସଂସାରର ସମସ୍ତ ଧନ, ଧାନ୍ୟ, ବାହନ, ସ୍ତ୍ରୀ, ଶବ୍ଦ, ରୂପ, ରସ, ଗନ୍ଧ ଏବଂ ସ୍ପର୍ଶଜନ୍ମା ବିଷୟର ସେ ଏକମାତ୍ର ସ୍ୱାମୀ ଥିଲା, ତ୍ରିଭୁବନର ଏକମାତ୍ର ସମ୍ରାଟ ଏବଂ ଲୋକପାଳମାନଙ୍କର ଅଧୀଶ୍ୱର ଥିଲା, ତଥାପି ମଧ୍ୟ ସେ ସର୍ବଦା ଅତୃପ୍ତ ରହୁଥିଲା । ଭୋଗଦ୍ୱାରା ସେ କେବେହେଲେ ବି ତୃପ୍ତ ହେଉ ନ ଥିଲା । ଶାସ୍ତ୍ରକାର-ମାନେ ଯଥାର୍ଥରେ କହିଛନ୍ତି ଯେ ଅଜିତେନ୍ଦ୍ରିୟକୁ ଯେତେ ଭୋଗସାମଗ୍ରୀ ମିଳୁ ନା କାହିଁକି ସେ ସର୍ବଦା ଅଶାନ୍ତ ଓ ଅତୃପ୍ତ ରହିଥିବ ।

ନାରଦ କହିଲେ—"ହେ ଧର୍ମଧ୍ୱଜ ! ସଂସାରର କୌଣସି ପ୍ରାଣୀକୁ ଏତେ ବଳ, ଏତେ ଐଶ୍ୱର୍ଯ୍ୟ ଏତେ ପ୍ରଭାବ, ଏତେ ଭୋଗ ସାମଗ୍ରୀ କୌଣସି ମତେ ପ୍ରାପ୍ତ ହୋଇପାରିବ ନାହିଁ । ସେଇ ପ୍ରଭୁଙ୍କର ପ୍ରିୟ ପାର୍ଷଦ ଥିଲା, ବିପ୍ର ଅଭିଶାପ ହେତୁ ସେ ଅସୁର ଯୋନିରେ ଉତ୍ପନ୍ନ ହୋଇଯାଇଛି । ତେଣୁ କେହି ତା'ର ସମ୍ମୁଖୀନ ହୋଇପାରିବେ ନାହିଁ । ଏହିପରି ଭାବରେ ଐଶ୍ୱର୍ଯ୍ୟ ମଦରେ ମତ୍ତ ହୋଇ ସେ ଅସୁର ଅନେକ ବର୍ଷ ସଂସାର ସୁଖୋପଭୋଗରେ ବିତେଇ ଦେଲା ।

—ଛପ୍‌ପୟ—

**ଶତକ୍ରତୁ ଦଇତ୍ୟ ନିକରି ଇନ୍ଦ୍ର ବନି ସୁଖ ସବ ଭୋଗେ ।**
**ଇନ୍ଦ୍ର ଭବନ ମହ ବସେଁ ସ୍ୱର୍ଗ କୋ ବୈଭବ ଭୋଗେ ॥**
**ମରକତ ମନି କୀ ଭୂମି ବନୀ ସୀଢ଼ୀ ବିଦ୍ରୁମ କୀ ।**
**ନନ୍ଦନ କାନନ କଳ୍ପବୃକ୍ଷ ବର ଗନ୍ଧ କୁସୁମ କୀ ॥**
**ଦୁଗ୍ଧ ଫେନ ସମ ସ୍ୱଚ୍ଛ ମୃଦୁ, ଶୈଯ୍ୟା ବର ବାରାଙ୍ଗନା ।**
**ତଉ ତୃପ୍ତି ନହିଁ ଅସୁର କୀ, ନିତ ନବ ବାଢ଼େଂ କାମନା ॥**

Digitized by srujanika@gmail.com

# ଦୁଃଖିତ ଦେବତାଙ୍କ ପ୍ରତି ଦୀନବନ୍ଧୁଙ୍କର ଦୟା

ତସ୍ୟୋଗ୍ରଦଣ୍ଡସଂବଗ୍ନାଃ ସର୍ବେ ଲୋକାଃ ସପାଲକାଃ ।
ଅନ୍ୟତ୍ରାଲବ୍ଧଶରଣାଃ ଶରଣଂ ଯୟୁରଚ୍ୟୁତମ୍ ।।

(ଶ୍ରୀ: ଭା: ୭ସ୍କ: ୪ଅ: ୨୧ଶ୍ଳୋ:)

—ଛପ୍ପୟ—

ସୁର ନର ବାକେ ଉଗ୍ର ଦଣ୍ଡ ତେଁ ଦୁଃଖିତ ଭୟେ ଜବ ।
ଅନ୍ୟ ଶରନ ନହିଁ ଲଖୀ ଗୟେ ହରିକୀ ଶରନହିଁ ସବ ।।
କ୍ଷୀର ସିନ୍ଧୁ ଢିଂଗଯାଇ କରେଁ ମିଲି କେ ସୁର ତପ ଅତି ।
ଜହାଁ ଲଗାବେଂ ଲେଟ ଶେଷ ଶୈୟା ପେ ଶ୍ରୀପତି ।।
ଅନ୍ନ ଖାଁୟ ନହିଁ ପିୟେ ଜଲ, ତଜି ନିଦ୍ରା ନିଶିଦିନ ଜଗେ ।
ବାୟୁପାନ କରି ବିଷ୍ଣୁ କୋ, ଆରାଧନ କରିବେ ଲଗେ ।।

ଭଗବାନଙ୍କର ଗୋଟିଏ ରୂପ ହେଉଛି କାଳ । କାଳସ୍ୱରୂପ କୃଷ୍ଣ ଯେତେବେଳେ ଯେପରି ଇଚ୍ଛା କରନ୍ତି ସେତେବେଳେ ସେପରି କାଳ ଉପସ୍ଥିତ କରନ୍ତି । କେତେବେଳେ ସାତ୍ତ୍ୱିକ କାଳ, କେବେ ରାଜସକାଳ, କେବେ ତାମସ କାଳ ରୂପରେ ସେ ସଂସାରରେ କ୍ରୀଡା କରନ୍ତି । ତାଙ୍କ ପାଇଁ କେହି ପର କେହି ଆପଣାର ନୁହେଁ । ଧର୍ମ ଅଧର୍ମ ସବୁ ତାଙ୍କର ଅଙ୍ଗରେ ରହିଛି । ସମସ୍ତ କିଛି ତାଙ୍କର ଇଚ୍ଛାରେ ହୋଇଥାଏ । ଯେତେବେଳେ ଧର୍ମ ବଳହୀନ ହୋଇଯାଏ, ସେତେବେଳେ ଅଧର୍ମର ବୃଦ୍ଧି ହୋଇଥାଏ ଏବଂ ବଡ ବଡ଼ ଦୁଷ୍କୃତ ପ୍ରାଣୀ ଏ ପୃଥିବୀରେ ଜନ୍ମଗ୍ରହଣ କରିଥାନ୍ତି । ଏହି ସବୁ ଦୁଷ୍ଟ ପୁରୁଷମାନେ ସାଧୁ ପୁରୁଷମାନଙ୍କୁ ପୀଡ଼ିତ କରନ୍ତି । ଏହି ଦୁଷ୍ଟମାନଙ୍କର ବିନାଶ ନିମନ୍ତେ ଏବଂ ସାଧୁପୁରୁଷମାନଙ୍କର ପରିତ୍ରାଣ ପାଇଁ ତଥା

Digitized by srujanika@gmail.com

ଧର୍ମର ପୁନଃସ୍ଥାପନା ଉଦ୍ଦେଶ୍ୟରେ ଶ୍ରୀହରି ଧରାରେ ଅବତରିତ ହୋଇଥାନ୍ତି । ସେତେବେଳେ ସେ ଅଧର୍ମକୁ ଦମନ କରି ଧର୍ମର ବିକାଶ କରିଥାନ୍ତି । ଅଧର୍ମର ସମୂଳ ନାଶ କରନ୍ତି ଏପରି ନୁହେଁ, ଯଦି ଅଧର୍ମର ମୂଳୋତ୍ପାଟନ କରିଦେବେ ତାହେଲେ ତ ଏ ସଂସାରଚକ୍ର ମଧ୍ୟ ଚାଲିବ ନାହିଁ । ତାହେଲେ ତ ଧରାରେ କେବଳମାତ୍ର କିଛିକ ସତ୍ୟଯୁଗ ହିଁ ରହିଥିବ । ତ୍ରେତୟା, ଦ୍ୱାପର କଳି କେହି ଆସିବେ ନାହିଁ । ଅଧର୍ମ ଆପଣା ସ୍ଥାନରେ ଏବଂ ଧର୍ମ ତା ସ୍ଥାନରେ ରହନ୍ତି । ଯେତେବେଳେ ଅଧର୍ମ ତାଙ୍କରି ଇଚ୍ଛାରେ ମର୍ଯ୍ୟାଦା ଅତିକ୍ରମଣ କରିଯାଏ, ସେତେବେଳେ ସେ ହିଁ ସ୍ୱୟଂ ତାକୁ ମର୍ଯ୍ୟାଦା ମଧ୍ୟକୁ ନେଇ ଆସନ୍ତି । ଯେତେବେଳ ପର୍ଯ୍ୟନ୍ତ ଦେବତାମାନେ ଆପଣା ସୀମା ମଧ୍ୟରେ ରହିଥାନ୍ତି ସେତେବେଳ ପର୍ଯ୍ୟନ୍ତ ସେ ସେମାନଙ୍କର ରକ୍ଷା କରନ୍ତି । ଯେତେବେଳେ ଅସୁରମାନଙ୍କର ବୃଦ୍ଧିର ସମୟ ଆସେ ସେତେବେଳେ ବଳଶାଳୀ ଅସୁରମାନେ ସ୍ୱର୍ଗରୁ ଦେବତାମାନଙ୍କୁ ବିତାଡ଼ିତ କରନ୍ତି ଓ ବିଚାରା ଦେବଗଣ ଏଣେତେଣେ ବୁଲନ୍ତି । ଭଗବାନ କ୍ଷୀରସାଗରରେ ଯୋଡ଼ହାତ ହୋଇ ଶେଷ ଶଯ୍ୟାରେ ଶୋଇ ରହିଥାନ୍ତି । ଲକ୍ଷ୍ମୀ ଶ୍ରୀଅଙ୍କରେ ପ୍ରଭୁଙ୍କର ପାଦପଦ୍ମ ଧାରଣ କରି ମର୍ଦ୍ଦନ କରୁଥାନ୍ତି । ଯୋଗନିଦ୍ରାର ଆଶ୍ରୟ ନେଇ ରମାରମଣ ଶ୍ରୀକାନ୍ତ ଶୟନ କରିଥାନ୍ତି । ଯେତେ ଡ଼ାକିଲେ, ଆର୍ତ୍ତ ଚିତ୍କାର କଲେ ମଧ୍ୟ ଶୁଣନ୍ତି ନାହିଁ, କହି ଦିଅନ୍ତି—'କାଳର ପ୍ରତୀକ୍ଷା କର ।' ଏଥିରୁ ସିଦ୍ଧ ହେଉଛି ଯେ କାଳହିଁ ବଳୀ ଅବଳୀର ସୃଷ୍ଟିକାରୀ ଏବଂ କାଳ ଆଉ କେହି ନୁହେଁ; ସେହି ଶ୍ରୀକୃଷ୍ଣ ହିଁ କାଳ ସ୍ୱରୂପ ।

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି—'ରାଜନ ! ହିରଣ୍ୟକଶିପୁ ତ ଭୂମି, ସ୍ୱର୍ଗ ଏବଂ ପାତାଳ ତିନୋଟି ଲୋକର ଏକଛତ୍ର ଶାସକ ହୋଇଥିଲା; ସ୍ୱଭାବତଃ ସେ ଦେବତାମାନଙ୍କର ଦ୍ୱେଷୀ । ତାର ଦୃଢ଼ ଧାରଣା ରହିଥିଲା ଯେ ଦେବତାମାନଙ୍କର କହିବା ଅନୁସାରେ ହିଁ ବିଷ୍ଣୁ ତା'ର ଭାଇର ସଂହାର କରିଛନ୍ତି । ଏହି ଦେବତାମାନେ ଓ ବିଷ୍ଣୁହିଁ ଅସୁରକୁଳର କଣ୍ଟକ ଦୂଷଣ । ଏମାନେ ହିଁ ଅସୁରକୁଳର ଅଭିବୃଦ୍ଧି ଦେଖିପାରନ୍ତି ନାହିଁ । ତେଣୁ ଯେକୌଣସି ହେଉନା କାହିଁକି ସେମାନଙ୍କୁ ନାଶ କରିବା ଉଚିତ । ଏହା ଭାବି ସେ ସାଧାରଣ ପ୍ରଜାମାନଙ୍କର ପାଳନ ଇଚ୍ଛିତ ପଦାର୍ଥ ଦେଇ ସ୍ନେହ ପୂର୍ବକ କରୁଥିଲା, ମାତ୍ର ଦେବତାମାନଙ୍କୁ ଅନେକ କଷ୍ଟ ଦେଉଥିଲା । ସେମାନଙ୍କ ସହିତ ବିଷମ ବ୍ୟବହାର କରୁଥିଲା । ଇନ୍ଦ୍ର, ବରୁଣ, କୁବେର ଆଦି ଲୋକପାଳମାନଙ୍କ ସହିତ ସେ କଠୋର ବ୍ୟବହାର କରୁଥିଲା । ସେମାନଙ୍କଦ୍ୱାରା ଝାଡ଼ୁ ପର୍ଯ୍ୟନ୍ତ କରାଉଥିଲା । ସର୍ବଦା ସେମାନଙ୍କୁ ଅପମାନିତ କରୁଥିଲା । ତିନିଲୋକ ଛାଡ଼ି ସେମାନେ ଗଲେ ମଧ୍ୟ କୁଆଡ଼େ ଯିବେ ?

Digitized by srujanika@gmail.com

ହିରଣ୍ୟକଶିପୁଠାରୁ ଆଉ କେହି ବଳବନ୍ତ ଥିଲେ ଅବା ଯାଇଥାନ୍ତେ ଓ ଗୁହାରି କରି ଆପଣାର ବିପତ୍ତି କଥା କହନ୍ତେ । ମାତ୍ର ସେଇ ହିରଣ୍ୟକଶିପୁହିଁ ସବୁରି ଅଧୀଶ୍ବର ହୋଇଥିଲା । ଦେବତାମାନେ ଥରେ ଲୁଚିଛପି ବ୍ରହ୍ମାଙ୍କ ପାଖକୁ ଗଲେ ଏବଂ ଦୀନ ଭାବରେ କହିଲେ—"ଭଗବାନ ! ଏହି ହିରଣ୍ୟକଶିପୁକୁ କିପରି ହେଲେ ସଂହାର କରନ୍ତୁ । ଏ ଆମକୁ ଅତ୍ୟଧିକ କଷ୍ଟ ଦେଲାଣି ।"

ଏହା ଶୁଣି ଆପଣାର ଶୁକ୍ଳ ଶ୍ମଶ୍ରୁରେ କରସଞ୍ଚାଳନପୂର୍ବକ ବ୍ରହ୍ମା କହିଲେ—"ହେ ଦେବଗଣ, ମୁଁ ସବୁ ଜାଣିଛି । ମାତ୍ର ମୁଁ ସ୍ବୟଂ ବିଷମ ଧର୍ମ ସଙ୍କଟରେ ପଡ଼ିଛି । ଆପଣା ହାତରେ ବିଷବୃକ୍ଷ ରୋପଣ କରିଥିଲେ ମଧ୍ୟ ବୁଦ୍ଧିମାନ ପୁରୁଷ ତାହା ସ୍ବୟଂ ଛେଦନ କରନ୍ତି ନାହିଁ । ମୁଁ ତାକୁ ଅତ୍ୟନ୍ତ ଦୁର୍ଲଭ ବର ପ୍ରଦାନ କରିଛି । ଏବେ ମୁଁ କିପରି ତାର ସଂହାର କରି ପାରିବି ? ତାପରେ ମାରିବା କାର୍ଯ୍ୟଟି ମୋର ନୁହେଁ, ମୁଁ ଜନ୍ମ ଦେବା, ବରଦାନ କରିବା ହିଁ ଜାଣିଛି । ସଂହାର କରିବା କାର୍ଯ୍ୟଟି ରୁଦ୍ରଙ୍କର । ତୁମେମାନେ ତାଙ୍କ ନିକଟକୁ ଯାଅ ।"

ହତାଶ ହୋଇ ଦେବତାମାନେ ରୁଦ୍ରଙ୍କ ନିକଟକୁ ଗଲେ । ଆଦ୍ୟାନ୍ତ ସମସ୍ତ ବିଷୟ ବର୍ଣ୍ଣନା କଲେ । ଶୁଣି କରି ସେ କହିଲେ—"ଦେଖ, ଭାଇ ! ମୋର କାହା ପ୍ରତି କୌଣସି ରାଗ ଦ୍ବେଷ ନାହିଁ । ଏହା ତ ନୁହେଁ ଯେ ବସି ବସି ଅକାରଣ ମାରିବି । ଯେତେବେଳେ ଯାହାର କାଳ ଆସି ଉପସ୍ଥିତ ହେବ, ମୁଁ ସେତେବେଳେ ତାକୁ ସଂହାର କରିଥାଏ । ତାପରେ ମୁଁ ତ ବ୍ରହ୍ମାଙ୍କର ସୃଷ୍ଟିର ବାହାରେ ରହିନାହିଁ । ମୁଁ ତାଙ୍କର ପୁତ୍ର ପରି । ଯେତେବେଳେ ମୋର ପିତା ତାକୁ ବର ପ୍ରଦାନ କରିଛନ୍ତି ଯେ ତୁ ମୋର ସୃଷ୍ଟି କରିଥିବା କାହାରି ହାତରେ ମରିବୁ ନାହିଁ, ତାହାହେଲେ ମୁଁ ତାକୁ କେଉଁପରି ଅକାଳରେ ସଂହାର କରିପାରିବି । ତାକୁ କେଉଁପରି ପଦଚ୍ୟୁତ କରିପାରିବି ?"

ତ୍ରିଭୟ ଦେବତାମାନଙ୍କଠାରୁ ଏପରି କଥା ଶୁଣି ଦେବତାମାନେ ନିରାଶ ହେଲେ । କେହିହେଲେ ସେମାନଙ୍କୁ ଆଶ୍ରୟ ଦେଲେନାହିଁ । କେହିହେଲେ ଦୟାକରି ସେମାନଙ୍କର ଦୁଃଖ ଦୂର କରିବାକୁ ଆଶା ପ୍ରଦାନ କଲେନାହିଁ । ଯେତେବେଳେ ସେମାନେ ସବୁ ବାଟରୁ ନିରାଶ ହେଲେ, ସେମାନଙ୍କୁ ଅନ୍ୟତ୍ର କେଉଁଠି ହେଲେ ଆଶ୍ରୟ ମିଳିଲା ନାହିଁ, ସେତେବେଳେ ସେମାନେ ଅଶରଣ ଶରଣ ବତ୍ସଳ ଭଗବାନ ବାସୁଦେବଙ୍କର ଶରଣାପନ୍ନ ହେଲେ ।

ସେ ସମୟରେ ଭଗବାନ କ୍ଷୀର ସାଗରରେ ଶେଷ ଶଯ୍ୟାରେ ଶୟନ କରୁଥିଲେ । ବିପତ୍ତି ଅତିଷ୍ଠ ହୋଇ ଦେବତାମାନେ ଇକ୍ଷୁ ସମୁଦ୍ର, ସୁରା ସମୁଦ୍ର,

Digitized by srujanika@gmail.com

ଘୃତ ସମୁଦ୍ର ଲଙ୍ଘନ କରି କ୍ଷୀର ସମୁଦ୍ର ତଟରେ ଉପସ୍ଥିତ ହେଲେ । ସେମାନେ ଚତୁର୍ଦ୍ଦିଗ ଦେଖିଲେ ମାତ୍ର କୌଣସିଠାରେ ମଧ୍ୟ ଭଗବାନଙ୍କୁ ଦେଖିପାରିଲେ ନାହିଁ । ନା ଶେଷ ଶଯ୍ୟା ଦିଶିଲା, ନା ତା ଉପରେ ଶୟନ କରିଥିବା ଶେଷଶାୟୀ ଶ୍ରୀହରିଙ୍କର ଦର୍ଶନ ହେଲା । ଯେଉଁମାନଙ୍କ ମନରେ ରାଗ ଦ୍ୱେଷ ଭରି ରହିଛି ସେମାନଙ୍କୁ କେଉଁପରି ଭାବରେ ଈଶ୍ୱରଙ୍କର ଦର୍ଶନ ହୋଇପାରିବ ? ଭଗବାନଙ୍କର ଦର୍ଶନ ତ ଅତ୍ୟନ୍ତ ଦୁର୍ଲଭ । ଅନନ୍ୟ ଭାବରେ ତାଙ୍କର ଶରଣାପନ୍ନ ହେଲେ, କୃପାକରି ସେ ନିଜେ ଆପଣାର କରିନେବେ, ତାଙ୍କର ଦର୍ଶନ ପାଇବା ସମ୍ଭବ । ଦେବତାମାନେ ସେଠାରେ ଯେତେବେଳେ ଶ୍ରୀହରିଙ୍କର ଦର୍ଶନଲାଭ କଲେନାହିଁ, ସେମାନେ ସେତେବେଳେ ସେହି କ୍ଷୀର ସମୁଦ୍ର ତଟରେ ଆସନ ପାତି ତପସ୍ୟା କରିବା ଆରମ୍ଭ କରିଦେଲେ । ତାହା କ୍ଷୀରାର୍ଣ୍ଣବ ଥିବାରୁ ସେଠାରେ ସେମାନେ ଯଥେଷ୍ଟ ଦୁଗ୍ଧପାନ କରି, ଚରୁ କରି ଅଗ୍ନି ମାଧ୍ୟମରେ ଗ୍ରହଣ କରିବାରୁ ଈଶ୍ୱର ଦର୍ଶନ ହେଲାନାହିଁ । ତେଣୁ ସେମାନେ ପାନ ଭୋଜନ ସବୁ କିଛି ପରିତ୍ୟାଗ କରି କେବଳ ବାୟୁ ମାତ୍ର ଭକ୍ଷଣ କରି ଘୋରତମ ତପସ୍ୟା କଲେ ।

ଭଗବାନ ତ ଶୋଇ ରହିଥିଲେ । ହିରଣ୍ୟକଶିପୁ ପ୍ରତି ସେ ଜାଣିଶୁଣି ଆଖି ବୁଜି ଦେଇଥିଲେ । ଯେତେବେଳେ ଦେବତାମାନେ ଭଗବାନଙ୍କ ଦ୍ୱାରରେ ଧାରଣା ଦେଲେ, ତାଙ୍କର ଘରେ ଅନଶନ ଆରମ୍ଭ କରିଦେଲେ, ଭଗବାନ ଆଉ କରନ୍ତେ କଣ ? ସେ ଦୟା ସାଗର, ଆପଣାର ଦୟା ସ୍ୱଭାବରେ ସେ ବନ୍ଧା । ମାତ୍ର ହିରଣ୍ୟକଶିପୁର କାଳ ମଧ୍ୟ ସମାପ୍ତ ହୋଇ ନଥିଲା । ତାର ପାପ ମଧ୍ୟ ପରିପକ୍ୱାବସ୍ଥାରେ ପହଞ୍ଚି ନଥିଲା । ଅସମୟରେ ସେ କେଉଁପରି ତାହାକୁ ସଂହାର କରନ୍ତେ । ଦେବତାମାନଙ୍କର ମନରେ ମଧ୍ୟ ସେଇ ସାନ୍ତ୍ୱନା ରହିଥିଲା ଯେ ତାଙ୍କର ନିଦ ଭଙ୍ଗ ହୋଇନାହିଁ । ଯୋଗନିଦ୍ରା ତାଙ୍କର ଆଶ୍ରୟରେ ରହିଥିଲା । ତେଣୁ ଶଯ୍ୟାଉପରେ ସେଇ ଶାୟିତ ଅବସ୍ଥାରେ ଆଖି ବନ୍ଦ ରଖି ସେ ଆଶ୍ୱାସନା ବାଣୀ ଶୁଣେଇବା ଆରମ୍ଭ କରି ଦେଲେ । ସେମାନଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦେଲେ ନାହିଁ, ଯେହେତୁ ସେମାନେ ତାଙ୍କର କୃତ କର୍ମର ପୂର୍ଣ୍ଣ ପ୍ରତିଫଳ ସେତେବେଳ ପର୍ଯ୍ୟନ୍ତ ପ୍ରାପ୍ତ କରି ନଥିଲେ । ନା ପର୍ଯ୍ୟନ୍ତ ସେମାନେ ଦର୍ଶନ ପ୍ରାପ୍ତିର ଅଧିକାରୀ ହୋଇନଥିଲେ । ମୁଁ ବର୍ତ୍ତମାନ ସେମାନଙ୍କୁ ଯଦି ଦର୍ଶନ ଦେଇଦିଏ ସମ୍ମୁଖକୁ ଆସିବାପରେ ସଙ୍କୋଚ କରିବ ତାହେଲେ ଅସାମର୍ଥିକ କାର୍ଯ୍ୟ ହୋଇଯିବ ଯାହା ମୁଁ କେତେବେଳେ କରି ନାହିଁ । ଦେବଗଣ ବାରମ୍ବାର କହୁଥିଲେ -"ଆମକୁ ଶ୍ରୀହରି ତ ଦୃଶ୍ୟ ହେଉ ନାହାନ୍ତି, ଆମେମାନେ ସେଇ ଦିଗରେ ପ୍ରଣାମ କରୁଛୁଁ ଯେଉଁପଟେ ଚରାଚର ଜଗତର ଈଶ୍ୱର, ସର୍ବାତ୍ମା ଶ୍ରୀହରି

Digitized by srujanika@gmail.com

ନିବାସ କରନ୍ତି, ଯାହାଙ୍କୁ ପ୍ରାପ୍ତ ହୋଇ ନିର୍ମଳ ଶାନ୍ତ ସନ୍ୟାସୀମାନେ ପୁନଃ ଫେରି ଆସନ୍ତି ନାହିଁ ।"

ଭଗବାନଙ୍କର ତ ପ୍ରତିଜ୍ଞା ରହିଛି, ଯେ ମୋତେ ଯେଉଁ ଭାବରେ ପ୍ରାପ୍ତ ହୋଇଥାଏ ତାର ସ୍ମରଣ ମୁଁ ସେଭଳି କରେଁ । ଦେବତାମାନଙ୍କୁ ଦିନେ ମେଘ ସଦୃଶ ଗମ୍ଭୀର ଶୂନ୍ୟବାଣୀ ଅକସ୍ମାତ୍ ଶୁଣାଗଲା । ସାଧୁମାନଙ୍କୁ ଅଭୟ ପ୍ରଦାନକାରୀ ସେହି ଗମ୍ଭୀର ଘୋଷରେ ଦଶ ଦିଗ ଗୁଞ୍ଜାୟମାନ ହୋଇ ଉଠିଲା । ସେ ଶୂନ୍ୟବାଣୀ କହୁଥିଲା ଯେ ହେ ଦେବଗଣ, ତୁମମାନଙ୍କର କଲ୍ୟାଣ ହେବ । ତୁମେମାନେ ଡରନାହିଁ, ନିର୍ଭୟ ହୁଅ । ନିଶ୍ଚିନ୍ତ ହୁଅ ।

କରଯୋଡ଼ି ଇନ୍ଦ୍ର ସେଇ ଦିଗରେ ପ୍ରଣାମ କରି କହିଲେ—"ପ୍ରଭୁ, ଭୟର କାରଣ ଉପସ୍ଥିତ ହେଲେ ଭୟ ଆସେ । ଆମେ ତ ଏହି ଅଧମ ଅସୁରର ଉତ୍ପାତ ହେତୁ ଅତ୍ୟଧିକ ଆକୁଳ ହେଉଛୁ । ଅଧୀର ହୋଇ ଆମେ ଆପଣ ଅଶରଣଶରଣଙ୍କର ଶରଣାପନ୍ନ ହୋଇଛୁ ।"

ଶୂନ୍ୟବାଣୀ ହେଲା—"କିଛି କଥା ନାହିଁ । ଭୟ ପ୍ରାଣୀମାନଙ୍କୁ ସେ ପର୍ଯ୍ୟନ୍ତ ହୋଇଥାଏ, ଯେତେବେଳ ପର୍ଯ୍ୟନ୍ତ ସେମାନେ ମୋର ଶରଣାପନ୍ନ ହୋଇ ନଥାନ୍ତି । ଯେଉଁମାନେ ମୋର ଶରଣାପନ୍ନ ହେଲେ, ଯେଉଁମାନଙ୍କୁ ମୋର ଦର୍ଶନ ଲାଭ ହେଲା, ସେମାନଙ୍କର ଦୁଃଖ ତତ୍‌କ୍ଷଣାତ୍ ଦୂର ହେଲା । ମୋର ଦର୍ଶନ ପ୍ରାଣୀମାନଙ୍କ ପାଇଁ ପ୍ରତ୍ୟେକ ଦିଗରୁ ମଙ୍ଗଳର ସାଧନ ଅଟେ ।"

ଇନ୍ଦ୍ର କହିଲେ—"ପ୍ରଭୁ, ସେ ଦୁଷ୍ଟ ଆମ ହାତରେ ପାଣି ଭରାଉଛି, ଝାଡ଼ୁ କରାଉଛି । ଆମର ଯଜ୍ଞଭାଗ ମଧ୍ୟ ଭକ୍ଷଣ କରୁଛି । ବହୁବିଧ ଯାତନା ଦେଉଛି ଓ ଆମ ସମସ୍ତଙ୍କର ଅ······ ।"

କଥା ମଝିରେ ହିଁ ଶୂନ୍ୟବାଣୀ ହେଲା—"ମୋତେ କହିବାର କୌଣସି ଆବଶ୍ୟକତା ନାହିଁ । ମୋତେ ସେଇ ଅଧମ ଦୈତ୍ୟର ସମସ୍ତ ଦୁଷ୍ଟତା ଜଣା । ମୁଁ ତା'ର ଗର୍ବ ଖଣ୍ଡନ କରିବି ।"

ଦୀନ ସ୍ୱରରେ ଅଧୀର ହୋଇ ଦେବତାମାନଙ୍କ ପକ୍ଷରୁ ଇନ୍ଦ୍ର କହିଲେ—"କେବେ କରିବେ ପ୍ରଭୁ ! ବର୍ତ୍ତମାନ ଆଉ ଏ ଦୁଃଖ ସହିହେଉନାହିଁ । ସହନଶୀଳତାର ମଧ୍ୟ ଗୋଟିଏ ସୀମା ଅଛି ।"

ଶୂନ୍ୟବାଣୀ ହେଲା—"ବର୍ତ୍ତମାନ ପର୍ଯ୍ୟନ୍ତ ତାର ବିନାଶ ସମୟ ଆସି ନାହିଁ । ତେଣୁ ମୁଁ ବର୍ତ୍ତମାନ କିଛି କରିପାରିବି ନାହିଁ । ଯେଉଁପରି ଏତେ ଦିନ

Digitized by srujanika@gmail.com

ସହନ କରିଛ ଆଉ କିଛି କାଳ ସହନ କରିଯାଅ । ସମୟ ଆସିଲେ ମୁଁ ତାର ବିନାଶ କରିବ ।”

ଦେବତାମାନେ କହିଲେ—“ପ୍ରଭୁ, ସେ ସମୟ କେବେ ଆସିବ ? କିପରି ଜାଣିବୁ ଯେ ତାଂର ବିନାଶ କାଳ ଉପସ୍ଥିତ ହେଲା ?”

ଶୂନ୍ୟବାଣୀ ହେଲା—“ଦେଖ, ଯେତେବେଳେ କୌଣସି ପ୍ରାଣୀ ଅକାରଣ ଦେବତାମାନଙ୍କ ସହିତ ଦ୍ୱେଷ ଆଚରଣ କରେ, ଦେବତାମାନଙ୍କର ପୂଜା ଅର୍ଚ୍ଚନା ବନ୍ଦ କରିଦିଏ, ଦେବ ନିନ୍ଦା କରେ, ଗୋକୁଳକୁ ଦୁଃଖ ଦିଏ, ପୀଡ଼ା ଦିଏ, ବ୍ରାହ୍ମଣମାନଙ୍କୁ ହୃଦୟ ସହିତ ଶତ୍ରୁ ବୋଲି ଭାବେ, ସେମାନଙ୍କର ପ୍ରଭାବ ହ୍ରାସ କରିବାକୁ ସତତ ଚେଷ୍ଟା କରେ, ସେମାନଙ୍କ ସହିତ ଅନ୍ତର ସହିତ ଦ୍ୱେଷ ଆଚରଣ କରେ, ସାଧୁମାନଙ୍କ ପ୍ରତି ଅଶ୍ରଦ୍ଧା ଦିଏ, ଅବାଚ୍ୟ କହେ, ଧର୍ମକୁ ଅବନତିର କାରଣ ମନେ କରେ, ଧର୍ମ ଚ୍ୟୁତ ହୁଏ, ତଥା ମୋ ସହିତ ଦ୍ୱେଷ ଆଚରଣ କରେ ସେତେବେଳେ ବୁଝିବା ଉଚିତ ଯେ ସେ ଅତି ଶୀଘ୍ର ନାଶ ଯିବ ।

ଇନ୍ଦ୍ର କହିଲେ—“ଏ ସବୁ ତ ସେ କରୁଛି ।”

ଭଗବାନ କହିଲେ—“ସେ ତ କରୁଛି, ମାତ୍ର ଏ ପର୍ଯ୍ୟନ୍ତ ପୂର୍ଣ୍ଣ ରୂପରେ କରୁ ନାହିଁ । ବର୍ତ୍ତମାନ ପର୍ଯ୍ୟନ୍ତ କିଛି ବାକି ଅଛି ! ଅଳ୍ପ ପାପରେ ଶୀଘ୍ର ବିନାଶ ହୁଏ ନାହିଁ । ସେ କଲା ଭଳି ତୁମେମାନେ ମଧ୍ୟ ଐଶ୍ୱର୍ଯ୍ୟ ମଦରେ ଏଇ ସବୁ କାମ କରୁଥିଲ । ସତ କହିବାକୁ ଗଲେ ତୁମେମାନେ ତୁମର କୃତକର୍ମ ହେତୁ ପଦ ଚ୍ୟୁତ ହୋଇଛ । ଅସୁର ମାନେ ମଧ୍ୟ ଉପଦେବ । ତୁମେମାନେ ମଧ୍ୟ ସେମାନଙ୍କ ସହିତ ବିଦ୍ୱେଷ କର । ସେମାନଙ୍କୁ ଅପମାନିତ କରିବାକୁ ତୁମେ ନାନା ପ୍ରକାର ଚେଷ୍ଟା କର । କେବେ କେମିତି ପାଖଣ୍ଡ ମତର ଆଶ୍ରୟ ନେଇ ତୁମେମାନେ ମଧ୍ୟ ଦେବ ବିରୁଦ୍ଧ ଆଚରଣ କରିଥାଅ । ପୃଥୁଙ୍କର ଯଜ୍ଞରେ ପାଷଣ୍ଡମତର ପ୍ରଚ୍ଚର ତୁମେମାନେ କରିଥିଲ । ଦେବବିରୁଦ୍ଧ ନାସ୍ତିକମାନଙ୍କଭଳି ତୁମେମାନେହିଁ ରୂପ ଧାରଣ କରିଥିଲ । ଶ୍ରୀକୃଷ୍ଣାବତାରରେ ତୁମେମାନେ ଐଶ୍ୱର୍ଯ୍ୟମଦରେ ମତ୍ତ ହୋଇ ମୋର ଗାଈମାନଙ୍କର ବିନାଶ ନିମନ୍ତେ ସାବର୍ତ୍ତିକ ମେଘକୁ ତୁମେ ପଠାଇଥିଲ । ଗାଈକୁଳର ବିନାଶ ପାଇଁ ତୁମେ ସଙ୍କଳ୍ପ କରିଥିଲ । ବିଶ୍ୱରୂପ ବ୍ରାହ୍ମଣର ଅସାବଧାନତା ଯୋଗୁଁ ତୁମେ ହିଁ ତାଙ୍କର ମସ୍ତକ ଛେଦନ କରିଥିଲ । ସାଧୁ ମାନଙ୍କର ତପସ୍ୟା ଭଙ୍ଗ କରିବା ନିମନ୍ତେ ତୁମେମାନେ ସର୍ବଦା ସ୍ୱର୍ଗରୁ ସୁନ୍ଦର ସୁନ୍ଦର ଅପ୍ସରାମାନଙ୍କୁ ଏବଂ ବସନ୍ତ, କାମଦେବ ଆଦିଙ୍କୁ ପ୍ରେରଣ କରିଥାଅ । ଆପଣା ସ୍ୱାର୍ଥପାଇଁ ତୁମେମାନେ ଧର୍ମର ମଧ୍ୟ ଅବହେଳା କର । ମୋତେ ଶିକ୍ଷା ଦେବାପାଇଁ ବ୍ରଜରେ ତୁମର ଯଜ୍ଞ ବନ୍ଦ କରାଯାଇଥିଲା ।

Digitized by srujanika@gmail.com

ଏଥିରେ ତୁମେ ମୋତେ ଭଲ ମନ୍ଦ କହି ମୋର ଦ୍ୱେଷ କରିବାରେ ଲାଗିଥିଲ। ତୁମେମାନେ ସମସ୍ତେ ପାପ ମଧ୍ୟ କରିଛ, ମାତ୍ର ପାର୍ଥକ୍ୟ ଏତିକି ଯେ ତୁମେମାନେ ବାଧ୍ୟ ହୋଇ କରିଛ ଏବଂ ଜାଣିଶୁଣି ନୁହଁ । ଯେଉଁଥିପାଇଁ ତୁମେ ପଶ୍ଚାତ୍ତାପ କରୁଛ ଏବଂ ପାପ ପାଇଁ ପ୍ରାୟଶ୍ଚିତ ମଧ୍ୟ କରୁଛ । ଏଣୁ ତୁମର ବିନାଶ ହୋଇନାହିଁ । ସାମାନ୍ୟ ବିପତ୍ତି ଆସି ତାର ଭୋଗ ହୋଇ ସମାପ୍ତ ହୋଇଯାଇଛି । ଯେତେବେଳେ ଏହି ହିରଣ୍ୟକଶିପୁର ପାପ ପରାକାଷ୍ଠାରେ ପହଞ୍ଚିବ, ସେତେବେଳେ ମୁଁ ତାକୁ ତତ୍କ୍ଷଣାତ୍ ସଂହାର କରିବି । ଏଥିରେ କୌଣସି ସନ୍ଦେହ ନାହିଁ ।"

ଏହା ଶୁଣି ଦେବତାମାନେ କହିଲେ—"ପ୍ରଭୁ, ପାପ ପରାକାଷ୍ଠାରେ ପହଞ୍ଚିଲା ଏହା କିପରି ଜାଣିବୁ ? ତା'ର କିଛି ସ୍ଥୂଳ ପରିଚୟ କହି ଦିଅନ୍ତୁ ।"

ଶୂନ୍ୟବାଣୀ ହେଲା—"ଦେଖ, ପାପର ପରାକାଷ୍ଠାରେ ପହଞ୍ଚିବାର ଲକ୍ଷଣ ହେଲା, ମନୁଷ୍ୟ ଭଗବତ୍ ଭକ୍ତଙ୍କ ସହିତ ଦ୍ୱେଷ ଆଚରଣ କରିବ, କାରଣ ଅସାଧାରଣ ପାପୀ ଭଗବାନଙ୍କର ଭକ୍ତଙ୍କ ସହିତ ଦ୍ୱେଷ ଆଚରଣ କରିପାରିବ ନାହିଁ । ଯେ ମହା-ପାପୀ ହୋଇଥିବ, ଯା'ର ପାପ ସୀମାଲଙ୍ଘନ କରି ସାରିଥିବ, ସେ ହିଁ ଭକ୍ତମାନଙ୍କର ଅନିଷ୍ଟ ଚିନ୍ତା କରିପାରିବ । ସେ ହିଁ ସେମାନଙ୍କୁ ଯାତନା ଦେଇ ପାରିବ । ମୁଁ ବଡ଼ ବଡ଼ ପାପ ନିମନ୍ତେ କ୍ଷମା ଦେଇପାରେ । ମୋ ପ୍ରତି କେହି ଅପରାଧ କଲେ ମଧ୍ୟ ମୁଁ ଛାଡ଼ି ଦେଇପାରେ । ମାତ୍ର ଭକ୍ତାପରାଧୀକୁ ମୁଁ କୌଣସି ପ୍ରକାରେ କ୍ଷମା ଦେଇପାରିବି ନାହିଁ । ତା'ର ଅବହେଳନା କରିପାରିବି ନାହିଁ । ଯେତେବେଳେ ସେ ଭକ୍ତଙ୍କ ପ୍ରତି ଦ୍ୱେଷ ଆଚରଣ କରିବା ଆରମ୍ଭ କରିଦେବ, ସେତେବେଳେ ମନେକରିବା ଉଚିତ ଯେ ତା'ର ପାପର ଘଟ ପରିପୂର୍ଣ୍ଣ ହୋଇଯାଇଛି ।

ଇନ୍ଦ୍ର କହିଲେ—"ଭଗବନ୍ ! ଆମେମାନେ ତ ଆପଣଙ୍କର ଭକ୍ତ । ସେ ଆମ ସହିତ ତ ଦ୍ୱେଷ ଆଚରଣ କରୁଛି ।"

ଆକାଶବାଣୀ ହେଲା—"ଭାଇ ! ତମେମାନେ ସମସ୍ତେ ଭକ୍ତ ମାତ୍ର ଭକ୍ତାଗ୍ରଗଣ୍ୟ ନୁହଁ । ଯେତେବେଳେ ସେ ଭକ୍ତାଗ୍ରଗଣ୍ୟଙ୍କ ସହିତ ଦ୍ୱେଷ ଆଚରଣ କରିବ, ତାଙ୍କୁ ବହୁବିଧ ଯନ୍ତ୍ରଣା ଦେବ, ମୁଁ ସେତେବେଳେ ତାର ସଂହାର କରିବି ।"

ଇନ୍ଦ୍ର ପଚାରିଲେ—"ପ୍ରଭୁ, ସେ ଭକ୍ତାଗ୍ରଗଣ୍ୟ କେଉଁ ସମୟରେ ଆବିର୍ଭୂତ ହେବେ । ହୋଇପାରେ ତାଙ୍କର ତାହା ସହିତ ସାକ୍ଷାତ ମଧ୍ୟ ହେବ ନାହିଁ, କାରଣ ଭକ୍ତମାନେ ସାଧାରଣତେ ଦୁଷ୍ଟ ବ୍ୟକ୍ତିଙ୍କୁ ଆପଣାଠାରୁ ଦୂରେଇ ରଖନ୍ତି, ସେମାନଙ୍କର ସମୀପକୁ ଯାଆନ୍ତି ନାହିଁ ।"

ଆକାଶବାଣୀ ହେଲା—"ସେ ଭକ୍ତାଗ୍ରଗଣ୍ୟ ବାହାରୁ ଆସିବେ ନାହିଁ । ତାହାର ଘରେ ତାଙ୍କର ଆବିର୍ଭାବ ହେବ । ତା'ର ଚତୁର୍ଥ ପୁତ୍ର ହେବ ପ୍ରହ୍ଲାଦ ।

Digitized by srujanika@gmail.com

ଯେତେବେଳେ ସେ ତା'ର ଆପଣା ପୁତ୍ର ଭଗବତ୍ ଭକ୍ତ ପ୍ରହ୍ଲାଦ ସହିତ ଦ୍ୱେଷାଚରଣ କରିବ, ମୁଁ ସେତେବେଳେ ତାର ସଂହାର କରିବି ।"

ଦେବତାମାନେ କହିଲେ—"ପ୍ରଭୁ, ଆପଣ କେଉଁପରି ସଂହାର କରିବେ ? ତାଙ୍କୁ ତ ବ୍ରହ୍ମା ଅପୂର୍ବ ବର ପ୍ରଦାନ କରିଛନ୍ତି !"

ଶୂନ୍ୟବାଣୀ ହେଲା—"ତୁମେ ସେଥିରୁ ଚିନ୍ତା କରନାହିଁ । ବ୍ରହ୍ମା ମୋର ସୃଷ୍ଟି, ମୁଁ ତାଙ୍କର ସୃଷ୍ଟିର ପୃଥକ୍ । ଏଣୁ ବ୍ରହ୍ମାଙ୍କର ବରଦ୍ୱାରା ତେଜସ୍ୱୀ ହୋଇଥିଲେହେଁ ସେହି ବରର ରକ୍ଷା କରିବା ସଙ୍ଗେ ସଙ୍ଗେ ତା'ର ନିଧନର ବ୍ୟବସ୍ଥା ମୁଁ କରିବି ।"

ଦେବର୍ଷି ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହୁଛନ୍ତି—"ରାଜନ, ଏତିକ କହି ସେ ଶୂନ୍ୟବାଣୀ ଶାନ୍ତ ହେଲା । ତାପରେ ଆଉ ଶୁଣାଗଲା ନାହିଁ । ସେହି ଦେବବାଣୀ ଶୁଣି ଦେବତାମାନଙ୍କର ସବୁ ଦୁଃଖ ଦୂର ହୋଇଗଲା । ତାଙ୍କର ଉଦ୍‌ବେଗ ଶାନ୍ତ ହେଲା । ତାଙ୍କର ବିଶ୍ୱାସ ହେଲା ଯେ ଭବଭୟହାରୀ ଭଗବାନ ଆମ ଭକ୍ତମାନଙ୍କ ପ୍ରତି ନିଶ୍ଚୟ କୃପାକରିବେ । ଆମର ଶୋକସନ୍ତାପ ଦୂରକରିବେ । ବର୍ତ୍ତମାନ ଦୁଃଖର ଯେତେ ସମୟ ଅବଶେଷ ରହିଛି ତାକୁ ସହନ କରିବା ଉଚିତ । ବର୍ତ୍ତମାନ ତ ଦୁଃଖର ସୀମା କ୍ଷୀଣ ହୋଇଛି । ଏଣିକ ଆମର ଭକ୍ତାଗ୍ରଗଣ୍ୟ ପ୍ରହ୍ଲାଦଙ୍କର ପ୍ରତୀକ୍ଷା କରିବା ଉଚିତ । ଏହି ସଂସାର ଆଶା ଉପରେ ଅବଲମ୍ବିତ । ଭକ୍ତପ୍ରବର ପ୍ରହ୍ଲାଦଙ୍କର ଜନ୍ମମାତ୍ରକେ ଆମର ସମସ୍ତ ଦୁଃଖ ଦୂରୀଭୂତ ହେବ । ହିରଣ୍ୟକଶିପୁର ପତ୍ନୀ ଗର୍ଭବତୀ । ନାରଦଙ୍କ ନିକଟରୁ ଏହି ସମାଚାର ପ୍ରାପ୍ତ ହୋଇଛି ଯେ ତା'ର ଗର୍ଭରେ ଭକ୍ତାଗ୍ରଗଣ୍ୟ ପ୍ରହ୍ଲାଦ ଅଛନ୍ତି । ଏସବୁ ଭାବି ସେମାନେ ନିଶ୍ଚିନ୍ତ ହେଲେ । ସେମାନେ ଧରିନେଲେ ଯେ ହିରଣ୍ୟକଶିପୁର ଅନ୍ତ କାଳ ସମୁପସ୍ଥିତ ହେଲା । ସେ କେବଳ ଅନ୍ତିମ ନିଃଶ୍ୱାସ ନେଉଛି । ଏପରି ଭାବି ସେମାନେ ସ୍ୱ ସ୍ୱ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ ।

## ଛପ୍‌ପୟ

କଛୁକ କାଲ ମହଁ ତହଁ। ଭଈ ସହସା ନଭ ବାନୀ ।
ଦେବ ଦୁଖିତ ମତ ହୋହୁ, ବାତ ମୈଁନେ ସବ ଜାନୀ ॥
ବେଦ, ଦେବ, ଗୌ, ବିପ୍ର ସାଧୁ ସନ ଦ୍ୱେଷକରେ ଜବ ।
ମୋ ତେଁ ବାଁଧେ ବୈର ଅସୁର ସଂହାର କରୁଁ ତବ ॥
ଶାନ୍ତ, ଦାନ୍ତ, ନିର୍ବୈର ସୁତ, ଭକ୍ତ ବୀର ପ୍ରହଲାଦ ମମ ।
ମାରୁଁ ତବ ହୈଁ ତୁରତ ହୀ ଦେଈ ଯାତନା ଜବ ଅଧମ ॥

●

Digitized by srujanika@gmail.com

# ଭକ୍ତାଗ୍ରଗଣ୍ୟ ପ୍ରହଲାଦ

ତସ୍ୟ ଦୈତ୍ୟପତେଃ ପୁତ୍ରାଶ୍ଚତ୍ୱାରଃ ପରମାଦ୍‌ଭୁତାଃ ।
ପ୍ରହ୍ଲାଦୋଽଭୂନ୍ମହାଂସ୍ତେଷାଂ ଗୁଣୈର୍ମହଦୁପାସକଃ ॥

(ଶ୍ରୀ: ଭା: ୭ସ୍କ: ୪ଅ: ୩୦ ଶ୍ଳୋ:)

## ଛପ୍‌ପୟ

ନଭବାନୀ ସନ ଦେବ ଲୌଟି ନିଜ ନିଜ ଘର ଆଯେ ।
ହିରନକଶିପୁ ନେ ଦେବ ଭକ୍ତ ଇତ ଅଧିକ ସତାୟେ ॥
ଚୌଥେ ତାକୋ ପୁତ୍ର ଅବସ୍ଥା ମହଁ ଛୋଟୋ ଅତ ।
କିନ୍ତୁ ଭକ୍ତି ମହଁ ଶ୍ରେଷ୍ଠ ଆସୁରୀ ନହୀଂ କାକୀ ମତ ॥
ବିଦ୍ୟା, କୁଲ ଧନ ରୂପ କୋ, ଜାକେ ନହିଁ ଅଭିମାନ ଚିତ ।
ସୁହୃଦ୍, ସଦାଚାରୀ ସରଲ, ସବ ସଦ୍‌ଗୁନ ଜାମେଁ ନିହିତ ॥

ଯେଉଁଠାରେ ଭଗବତ ଭକ୍ତି ଥାଏ, ସମସ୍ତ ସଦ୍‌ଗୁଣ ସେଠାରେ ସ୍ୱତଃ ଆସି ନିବାସ କରନ୍ତି । ଭକ୍ତି ସମସ୍ତ ଗୁଣର ଖଣି ଅଟେ । ସଦ୍‌ଗୁଣମାନେ ଭକ୍ତର ଆଶ୍ରୟରେ ରହନ୍ତି । ଅଭକ୍ତମାନଙ୍କର ଗୁଣ କାହିଁ ? ସେମାନେ ତ ମନ ପଛରେ ଦୌଡ଼ିବା ଲୋକ । ମନର ସ୍ୱାଭାବିକ ରୁଚି ଥାଏ ବିଷୟ ଭୋଗରେ । ବିଷୟ ଦୁଃଖର ମୂଳ ହେତୁ, ଏଣୁ ଅଭକ୍ତର ଅଜିତେନ୍ଦ୍ରିୟତା ସମୀପରେ ସଦ୍‌ଗୁଣ କିପରି ରହିବେ । ସେ ତ ସର୍ବଦା ଅଶାନ୍ତ, ଚିନ୍ତିତ ଓ ଦୁଃଖୀ ହୋଇ ରହିଥାଏ । ଭକ୍ତ ସଦା ପ୍ରସନ୍ନଚିତ୍ତ । ସେ ସଦ୍‌ଗୁଣ ନିମନ୍ତେ କୌଣସି ପ୍ରଚେଷ୍ଟା କରେନାହିଁ । ସେ ସର୍ବଦା ଭଗବତ ଭକ୍ତିରେ ଆତ୍ମଲୀନ ହୋଇ ରହିଥାଏ । ସଦ୍‌ଗୁଣମାନେ ସ୍ୱୟଂ ଆସି ତାର ହୃଦୟରେ ନିବାସ କରନ୍ତି ।

Digitized by srujanika@gmail.com

ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ—"ରାଜନ୍ ! ହିରଣ୍ୟକଶିପୁର ସଂହ୍ଲାଦ, ଅନୁହ୍ଲାଦ, ହ୍ଲାଦ ଓ ପ୍ରହ୍ଲାଦ ଏଭଳି ଚାରିପୁତ୍ର ଥିଲେ । ଏମାନଙ୍କ ମଧ୍ୟରେ ପ୍ରହ୍ଲାଦ ସର୍ବକନିଷ୍ଠ ହୋଇଥିଲେ ହେଁ ସେ ଗୁଣରେ ସର୍ବଶ୍ରେଷ୍ଠ ଥିଲେ । ବାଲ୍ୟକାଳରୁ ସେ ସରଳ, ସୁଶୀଳ ଏବଂ ଅତ୍ୟନ୍ତ ନମ୍ର ଥିଲେ । ସେ ବାଲ୍ୟାବସ୍ଥାରୁ କମ୍ ବୟସ୍କ ବ୍ରାହ୍ମଣଙ୍କୁ ଭେଟିଲେ ମଧ୍ୟ ଶ୍ରଦ୍ଧା ସହିତ ପ୍ରଣାମ କରୁଥିଲେ । ସଦାଚାରର ସେ ସାକାର ସଜୀବ ମୂର୍ତ୍ତି ଥିଲେ । ଖେଳଖେଳରେ ବି ସେ ଯଦି କାହାକୁ କୌଣସି କାର୍ଯ୍ୟ ନିମନ୍ତେ କିଛି କହି ଦେଉଥିଲେ, ତାହେଲେ ସମସ୍ତ ଶକ୍ତିର ବିନିଯୋଗରେ ପ୍ରାଣପଣେ ସେହି ପ୍ରତିଜ୍ଞା ପାଳନ କରୁଥିଲେ । କେତେବେଳେ ସେ ଭୁଲରେ କିମ୍ବା ପରିହାସରେ ସୁଦ୍ଧା ମିଛ କହୁ ନ ଥିଲେ । ସେ ଆପଣାର ସମସ୍ତ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ରଖିଥିଲେ । ଇନ୍ଦ୍ରିୟମାନେ ତାଙ୍କର ଅଧୀନରେ ଥିଲେ । ସେ ଇନ୍ଦ୍ରିୟମାନଙ୍କର ଅଧୀନରେ ନ ଥିଲେ । ସେ ସମସ୍ତ ପ୍ରାଣୀମାନଙ୍କରେ ଆତ୍ମଭାବ ରଖୁଥିଲେ । ଆମକୁ କେହି କୁବାକ୍ୟ କହିଲେ ଆମକୁ ଖରାପ ଲାଗେ, କଷ୍ଟ ହୁଏ, ତେଣୁ ସେ କେତେବେଳେ ବି କାହାର ପ୍ରତି କୁବାକ୍ୟ ପ୍ରୟୋଗ କରୁ ନ ଥିଲେ । କେହି ଆମକୁ ସମ୍ମାନିତ କଲେ ଆମର ତା'ର ଶୀଳ ସ୍ୱଭାବ ହେତୁ ପ୍ରସନ୍ନତା ଆସିଥାଏ । ସେହିପରି ସେ ମଧ୍ୟ ସମସ୍ତଙ୍କୁ ଆଦର କରୁଥିଲେ । ସେ ସମସ୍ତଙ୍କର ପ୍ରିୟ ଥିଲେ । ସେ କାହାରି ପ୍ରତି ଦ୍ୱେଷଭାବ ରଖି ନ ଥିଲେ ଏବଂ ଦୁଷ୍ଟଙ୍କୁ ଛାଡ଼ି ଅନ୍ୟ କାହାରି ପ୍ରତି ତାଙ୍କର ଦ୍ୱେଷଭାବ ନ ଥିଲା । ସେ ସମସ୍ତଙ୍କର ପ୍ରିୟପାତ୍ର ଥିଲେ । ସେ ଯାହାର ସମ୍ପର୍କରେ ଆସୁଥିଲେ ସେମାନେ ସମସ୍ତେ ତାଙ୍କୁ ସୁହୃଦ୍ ମନେ କରୁଥିଲେ । ସାଧୁ ସନ୍ଥ ତଥା ଶ୍ରେଷ୍ଠ ପୁରୁଷ ତଥା ଭଗବନ୍ତ ପୁରୁଷଙ୍କୁ ସେ ଦୂରରୁ ସାଷ୍ଟାଙ୍ଗ ପ୍ରଣିପାତ କରୁଥିଲେ । ସେ ଥିଲେ ସର୍ବଦା ବିନତ; ଯେଉଁମାନେ ତାଙ୍କଠାରୁ ଛୋଟ, ଦୀନ ଦୁଃଖୀ ତଥା ଅନାଥ, ତାଙ୍କୁ ସେ ପିତାସଦୃଶ ସ୍ନେହ ଦେଉଥିଲେ ଏବଂ ଯଥାଶକ୍ତି ସେମାନଙ୍କର ଆବଶ୍ୟକତା ପୂରଣ କରୁଥିଲେ । ସେମାନଙ୍କର ଦୁଃଖ ଦୂର କରିବାକୁ ଯଥାଶକ୍ତି ଚେଷ୍ଟା କରୁଥିଲେ । ଯେଉଁମାନେ ସେମାନଙ୍କର ସମକକ୍ଷ, ସେମାନଙ୍କୁ ସେ ସହୋଦର ଭାଇ ଭଳି ଭଲ ପାଉଥିଲେ । ସେ କେତେବେଳେ ବି ରାଜପୁତ୍ର ବୋଲି ଗର୍ବ କରୁ ନଥିଲେ । ଭାବୁ ନ ଥିଲେ ଯେ ସେ ଐଶ୍ୱର୍ଯ୍ୟଶୀଳ ସମ୍ପନ୍ନ, ହୋଇ ଛୋଟ ପିଲାଙ୍କ ସାଙ୍ଗରେ ମିଳାମିଶା କିପରି କରିବେ । ସମକକ୍ଷ ଲୋକେ ଜାଣି ସୁଦ୍ଧା ପାରୁ ନ ଥିଲେ ଯେ ସେ ରାଜକୁମାର ଏବଂ ସେମାନେ ତାଙ୍କର ପ୍ରଜା । ସେ ତାଙ୍କ ସାଙ୍ଗରେ ସମ୍ପୂର୍ଣ୍ଣ ମିଳିମିଶି ଚଳୁଥିଲେ ଓ ସେମାନେ ମଧ୍ୟ ତାଙ୍କୁ ସହୋଦର ଭାଇଭଳି ଜ୍ଞାନ କରୁଥିଲେ । ଯେଉଁମାନେ ବିଦ୍ୟାରେ, ତପରେ, ତେଜରେ, ଗୁଣରେ ତାଙ୍କଠାରୁ ବଡ ତାଙ୍କୁ ଈଶ୍ୱର ବୁଦ୍ଧିରେ ପୂଜନ କରନ୍ତି । ତାଙ୍କର ସମସ୍ତ ଆଜ୍ଞା ପାଳନ କରନ୍ତି ଏବଂ ତାଙ୍କ ମଧ୍ୟରେ ସେହି ଆଦର ବୁଦ୍ଧି ରଖିଥାନ୍ତି ।

Digitized by srujanika@gmail.com

ସେ ଜନ୍ମରୁ ବିଦ୍ୱାନ ଥିଲେ । ଅଧ୍ୟୟନ ବିନା ସେ ସମସ୍ତ ବିଦ୍ୟାରେ ପାରଙ୍ଗମ ଥିଲେ । ମାତ୍ର ବିଦ୍ୟାର ଗର୍ବ ତାଙ୍କୁ ସ୍ପର୍ଶ କରିନଥିଲା । ସେ ରାଜପୁତ୍ର ହେଲେହେଁ ଧନ ପ୍ରଶ୍ନ ଉଠୁନାହିଁ । ତା ପୁଣି ସାଧାରଣ ରାଜା ନୁହଁ । ସେ ସେହି ହିରଣ୍ୟକଶିପୁର ସ୍ନେହଶୀଳ ପୁତ୍ର, ଯେ ଆପଣାର ବାହୁବଳରେ ତ୍ରିଭୁବନ ବିଜୟ କରିଥିଲା । ଯା'ର ନାମ ଶୁଣି ଇନ୍ଦ୍ରାଦି ଲୋକପାଳ ଭୟରେ ଥରୁଥିଲେ । ସଂସାରର ସମସ୍ତ ବହୁମୂଲ୍ୟ ରତ୍ନ ଯାର ଭବନରେ ଏକତ୍ରିତ ହୋଇଥିଲା । ଏତେ ବିରାଟ ସମୃଦ୍ଧିଶାଳୀ ଚକ୍ରବର୍ତ୍ତୀ ସମ୍ରାଟର ପୁତ୍ର ହୋଇଥିଲେ ହେଁ ତାଙ୍କୁ ଧନର ଗର୍ବ ସ୍ପର୍ଶ ସୁଦ୍ଧା କରି ନ ଥିଲା । ଦେଖିବାକୁ ସେ କାମଦେବ ଭଳି ସୁନ୍ଦର ଥିଲେ । ତାଙ୍କର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ସୁନ୍ଦର, ସୁଗଠିତ, ବଳିଷ୍ଠ ଓ ପୌରୁଷଯୁକ୍ତ । ତାଙ୍କୁ ଯେ କେହି ବି ଥରେ ମାତ୍ର ଦେଖୁଥିଲା, ମୁଗ୍ଧ ହୋଇ ଯାଉଥିଲା । ଏତେ ସୁନ୍ଦର ହୋଇ ମଧ୍ୟ ତାଙ୍କର ରୂପର ଗର୍ବ ନ ଥିଲା । ସେ ଆପଣାକୁ ସାଧାରଣ ମନୁଷ୍ୟ ଭଳି ମନେ କରୁଥିଲେ । ସେ ମହର୍ଷି କଶ୍ୟପଙ୍କ ବଂଶରେ ଜନ୍ମଗ୍ରହଣ କରିଥିଲେ । ତଥାପି ମଧ୍ୟ ତାଙ୍କ ନିକଟରେ କୁଳୀନ ହେବାର ଗର୍ବ ନ ଥିଲା । ସାଧାରଣ ଦୈତ୍ୟ ବାଳକମାନଙ୍କ ସହିତ ଖେଳନ୍ତି ଏବଂ ସେମାନଙ୍କ ସାଙ୍ଗରେ ମିଳିମିଶି ଯାଆନ୍ତି । କୌଣସି କଥା ପାଇଁ ତାଙ୍କର ଗର୍ବ ଅଭିମାନ ନ ଥିଲା ।

ପ୍ରହ୍ଲାଦ ଅତ୍ୟନ୍ତ ଧୈର୍ଯ୍ୟଶାଳୀ ଥିଲେ । କୌଣସି ଦୁର୍ଘଟଣା ବା ବିପତ୍ତି ହେତୁ ସେ ବ୍ୟସ୍ତ ବିବ୍ରତ ହେଉ ନଥିଲେ । ତାଙ୍କର ଶବ୍ଦ, ରୂପ, ରସ, ଗନ୍ଧ ଏବଂ ସ୍ପର୍ଶଜନିତ ସାଂସାରିକ କୌଣସି ସୁଖ ପ୍ରତି ସ୍ପୃହା ନଥିଲା କିମ୍ବା ସେ ସ୍ୱର୍ଗୀୟ ସୁଖ, ବିମାନ, ନନ୍ଦନ କାନନରେ ବିହାର, ଅପ୍‌ସରା ଅଥବା ପାନ କରିବାକୁ ଅମୃତାଦି ପଦାର୍ଥର ଇଚ୍ଛା କରୁନଥିଲେ । ଏ ସମସ୍ତ ସୁଖ ପ୍ରତି ସେ ସର୍ବଦା ଉଦାସୀନ ରହୁଥିଲେ । ତାଙ୍କୁ ସିଦ୍ଧ ବୋଲି କୁହାଯାଇ ପାରିବ । ତାଙ୍କର ସମସ୍ତ ଇନ୍ଦ୍ରିୟ, ପ୍ରାଣ ମନ ଏବଂ ଶରୀର ସବୁ ସଂଯତ ଥିଲେ । ସେ କାମନାହୀନ, ନିଷ୍କାମ ଏବଂ ସଂସାରି ପଦାର୍ଥ ନିମନ୍ତେ ନିର୍ଲିପ୍ତ ଥିଲେ । ଅଧିକ ନ କହି ଏତିକି କହିଲେ ଯଥେଷ୍ଟ ହେବ ଯେ ସେ ଅସୁର ଘରେ ଜନ୍ମ ହୋଇ ମଧ୍ୟ ଆସୁରି ଭାବରହିତ ଥିଲେ ।

ନାରଦଙ୍କ ମୁଖରୁ ପ୍ରହ୍ଲାଦଙ୍କର ଏତେ ପ୍ରଶଂସା ଶୁଣି ଧର୍ମରାଜ ଯୁଧିଷ୍ଠିର ପଚାରିଲେ—"ଭଗବନ୍ ! ଅତି ଆଶ୍ଚର୍ଯ୍ୟ କଥା ଯେ ଅସୁର କୁଳରେ ଉତ୍ପନ୍ନ ହୋଇ ମଧ୍ୟ ବାଳକଟିର ଜନ୍ମରୁ ଏତେ ଗୁଣ ସମ୍ଭବ ହେଲା, ଏ ସମସ୍ତ ସଦ୍‌ଗୁଣ କେଉଁ ସାଧନ ବଳରେ ସେ କିପରି ପ୍ରାପ୍ତ ହେଲେ ?"

ଏହା ଶୁଣି ନାରଦ କହିଲେ—"ରାଜନ୍ ! ମୁଁ ପ୍ରଥମରୁ ଏ କଥା କହି ଦେଇଛି । ଏ ସବୁ ଗୁଣ କୌଣସି ସାଧନାଦ୍ୱାରା ପ୍ରାପ୍ତ ହୁଏନାହିଁ । ତାଙ୍କରି କୃପାରେ

Digitized by srujanika@gmail.com

ହିଁ କେନ୍ଦ୍ର କେନ୍ଦ୍ର ତାଙ୍କୁ ପ୍ରାପ୍ତ ହୋଇଥାନ୍ତି । ଦେଖନ୍ତୁ ପ୍ରହଲ୍ଲାଦଙ୍କର ଆବିର୍ଭାବ କେତେ କେତେ ବର୍ଷ ତଳର କଥା । ଲକ୍ଷ କୋଟି ବର୍ଷ ବିତିଯିବା ପରେ ମଧ୍ୟ ତାଙ୍କର ଗୁଣ, ତାଙ୍କର ବିମଳ କୀର୍ତ୍ତି ପୃଥିବୀରେ ସେହିପରି ଅକ୍ଷତ ରହିଛି । ତାହା ସେହିପରି ରହିଥିବ । ଭଗବାନ ଏବଂ ଭଗବାନଙ୍କର ଭକ୍ତଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଯେଉଁପରି ଭଗବାନ ଗୁଣ ନିତ୍ୟ ସେହିପରି ଭକ୍ତଙ୍କ ଗୁଣ ନିତ୍ୟ । ପ୍ରହଲ୍ଲାଦଙ୍କର ମହାନ୍ ଗୁଣ ସ୍ମରଣ କରି ପଣ୍ଡିତମାନେ ତାଙ୍କର ଅନୁକରଣ କରି ଭକ୍ତିମାର୍ଗରେ ଅଗ୍ରସର ହୋଇଥାନ୍ତି । ରାଜନ୍ ! ପ୍ରହଲ୍ଲାଦଙ୍କର ଗୁଣ ସମ୍ବନ୍ଧରେ ମୁଁ ବର୍ତ୍ତମାନ ଆପଣଙ୍କୁ କଣ ବୋଲି କହିବି ? ଶେଷଦେବଙ୍କ ଭଳି ମୋର ମଧ୍ୟ ସହସ୍ର ଜିହ୍ୱା ଥିଲେ ମୁଁ ପ୍ରହଲ୍ଲାଦଙ୍କର ଗୁଣ ବର୍ଣ୍ଣନା କରି ପାରନ୍ତି ନାହିଁ । ମାତ୍ର ମୋର ତ ଗୋଟିଏ ବୋଲି ଜିହ୍ୱା । ମହାରାଜ ! ତାଙ୍କର ଗୁଣର ମହତ୍ତ୍ୱ ଏଇଠାରେ ରହିଛି ଯେ ଦେବତାମାନେ ତାଙ୍କର ବିରୋଧ ପକ୍ଷ, ମାତ୍ର ଯେତେବେଳେ ଦେବ ସମାଜରେ ମଧ୍ୟ ଭଗବତ୍ ଭକ୍ତିର ଦୃଷ୍ଟାନ୍ତ ଦିଆଯାଏ, ସେତେବେଳେ ତାଙ୍କର କଥା କୁହାଯାଏ, ତାଙ୍କର ଗୁଣର ଅନୁକରଣ କରାଯାଏ । ଏ ବିଷୟରେ ପ୍ରହଲ୍ଲାଦଙ୍କର ମତ କଣ, ସେ ଏଭଳି ଅବସରରେ କେଉଁଭଳି ଆଚରଣ କରିଥିଲେ, ଏହି ସବୁ କଥା ଦେବ ସଭାରେ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରାଯାଏ ଏବଂ ପ୍ରହଲ୍ଲାଦଙ୍କର କଥା ଆଦର୍ଶ ଭାବରେ ଗ୍ରହଣ କରାଯାଏ । ଯାହାଙ୍କର ଶତ୍ରୁ ପର୍ଯ୍ୟନ୍ତ ଏତେ ଆଦର କରନ୍ତି, ସେ କ୍ଷେତ୍ରରେ ଆପଣଙ୍କ ପରି ନିର୍ବୈର ଅଜାତଶତ୍ରୁ ଲୋକ ତାଙ୍କର ଆଦର କରିବାରେ, ତାଙ୍କର ଆଚରଣକୁ ପ୍ରମାଣସ୍ୱରୂପ ଗ୍ରହଣ କରିନେବାରେ ଆଶ୍ଚର୍ଯ୍ୟ କଣ ?

ପ୍ରହଲ୍ଲାଦଙ୍କର ପ୍ରଭାବ ଅନନ୍ତ, ତାଙ୍କର ଗୁଣ ଅନନ୍ତ । ଅନନ୍ତ କାଳ ପର୍ଯ୍ୟନ୍ତ ତାଙ୍କର ବର୍ଣ୍ଣନା କଲେ ମଧ୍ୟ ତାର ପୂର୍ଣ୍ଣ ବର୍ଣ୍ଣନ ହୋଇ ପାରିବ ନାହିଁ । ସଂକ୍ଷେପରେ ଏତିକି କହିବା ଯଥେଷ୍ଟ ହେବ ଯେ ତାଙ୍କର ଭଗବାନ ବାସୁଦେବଙ୍କ ନିକଟରେ ସହଜ ସ୍ୱାଭାବିକ ପ୍ରୀତି ଥିଲା । ଏ ଗୁଣ ସକଳ ତାହା ହିଁ ନିର୍ଦ୍ଦେଶିତ କରିଛନ୍ତି । ଏହି ଗୁଣମାନଙ୍କ ଦ୍ୱାରା ତାଙ୍କର ମହାତ୍ମ୍ୟ ହିଁ ସୂଚିତ ହୁଏ ।

ନାରଦ କହୁଛନ୍ତି—'ରାଜନ୍ ପ୍ରହ୍ଲାଦ ଭକ୍ତମାନଙ୍କର ପ୍ରତୀକ । ଭକ୍ତି ଶାସ୍ତ୍ରରେ ଭକ୍ତଙ୍କର ଯେଉଁ ଯେଉଁ ଗୁଣ, ଯେଉଁ ଯେଉଁ ଆଚରଣ, ଯେଉଁଭଳି ଯେମାନଙ୍କର ଦିନଚର୍ଯ୍ୟାର ବର୍ଣ୍ଣନା ରହିଛି, ସେସବୁ ଏକମାତ୍ର ପ୍ରହ୍ଲାଦଙ୍କ ଦେହରେ ହିଁ ପ୍ରକଟିତ ହୋଇଛି । ତାଙ୍କର ଆଗ୍ରହ ବ୍ୟବହାରରୁ ଭକ୍ତଙ୍କର ଆଗ୍ରହ ବ୍ୟବହାର କଣା ପଡ଼ିବ । ତେଣୁ ଅତି ସଂକ୍ଷେପରେ, ସଙ୍କେତ ଭାବରେ ତାଙ୍କର ଦିନଚର୍ଯ୍ୟା ଓ ମାନସିକ ସ୍ଥିତି ସମ୍ବନ୍ଧରେ କହିବି । କାରଣ ଭକ୍ତିମାର୍ଗର ପଥିକଙ୍କୁ ଏଥିରୁ ଅନେକ କଥା ମିଳିବ । ଯେମାନେ ଏକଥା ବୁଝି ଆପଣା ଜୀବନରେ ଏଭଳି ସ୍ଥିତି ଉତ୍ପନ୍ନ

Digitized by srujanika@gmail.com

କରିବାକୁ ଆକୁଳ ହୋଇ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିପାରିବେ । ପ୍ରଭୁ ତ ବାଞ୍ଛା କଳ୍ପତରୁ । ଯେ ଯେଉଁ ବସ୍ତୁର କାମନା ହୃଦୟରୁ ସହିତ ତାଙ୍କଠାରୁ ଚାହିଁବ, ତାକୁ ସେ ତାହା ପ୍ରଦାନ କରିଥାନ୍ତି । ଆପଣ ତେଣୁ ସଂକ୍ଷେପରେ ତାଙ୍କର ବାଲ୍ୟକାଳର କଥା ଶ୍ରବଣ କରନ୍ତୁ ।"

## —ଛପ୍ପୟ୍—

ସୁଖ ଦୁଃଖ ମହଁ ସମ ସଦା ସନ୍ତ ସ୍ୱାଭାବିକ ଜାମେଂ ।
ମିଥ୍ୟା ମାୟିକ ଭୋଗ ହୋଂହିଁ ଅନୁରକ୍ତ ନ ତାମେଂ ॥
ତନ ମନ ଇନ୍ଦ୍ରିୟ ପାନ ରଖେଂ ନିତ ଅପନେ ବଶ ମହଁ ।
ସ୍ୱାଭାବିକ ଇ ପ୍ରୀତି ଶ୍ୟାମସୁନ୍ଦର କେ ଯଶ ମହଁ ॥
ସତତ ହୃଦୟେ ମହଁ ଜର ରହୀ, ଜ୍ୟୋତି ପ୍ରେମ କେ ଜୋଗ କୀ ।
ଭକ୍ତିଭାବଭାବିତ ହୃଦୟ, ନହୀଁ କାମନା ଭୋଗ କୀ ॥



# ଭଗବତ ଭକ୍ତଙ୍କର ଦଶା

ନ୍ୟସ୍ତକ୍ରୀଡ଼ନକୋ ବାଲୋ ଜଡ଼ବତ୍ତନ୍ମନସ୍ତୟା ।
କୃଷ୍ଣଗ୍ରହଗୃହୀତାତ୍ମା ନ ବେଦ ଜଗଦୀଦୃଶମ୍ ॥
ଆସୀନଃ ପର୍ଯ୍ୟଟନ୍ନଶ୍ନନ୍ ଶୟାନଃ ପ୍ରପିବନ୍ ବ୍ରୁବନ୍ ।
ନାନୁସନ୍ଧତ୍ତ ଏତାନ ଗୋବିନ୍ଦପରିରମ୍ଭିତଃ ॥
(ଶ୍ରୀ: ଭା: ୭ସ୍କ: ୪ଅ: ୩୭, ୩୮ଶ୍ଳୋ:)

—ଛପ୍ପୟ—

ଶତ୍ରୁ ମିତ୍ର କୋ ଭାବ କବହୁଁ ମନ ମହଁ ନହୀଂ ଆନେଂ ।
ଜିନକୀ ଶୁଦ୍ଧାଭକ୍ତି ନିରଖି ସୁର ଲୋହୋ ମାନେଂ ॥
ସୋବତ ଜାଗତ ଚଲତ ଉଠତ ଖାବତ ଅରୁ ପୀବତ ।
ରହେଂ ଅନମନେ ବନେ ସବନ ସିରୀ ସେ ଦୀଖତ ॥
ଗାବେଂ ନାଚେଂ ପ୍ରେମମତେଂ, ହୃଦୟ ସଦା ଶ୍ରୀହରି ବସେଂ ।
କୃଷ୍ଣ ଭୂତ ସିର ପୈ ଚଢ଼୍ୟୋ, କବହୁଁ ରୋବେଂ ପୁନି ହଂସେ ॥

ଯେତେବେଳେ ଜୀବ ପ୍ରକୃତିସ୍ଥ ହୋଇଥାଏ, ଆପଣାର ଜୀବ-ସ୍ୱଭାବରେ ସ୍ଥିତ ହୋଇ ରହିଥାଏ ସେତେବେଳେ ତାକୁ ଶବ୍ଦ, ସ୍ପର୍ଶ ରୂପ, ରସ ଏବଂ ଗନ୍ଧର ଜ୍ଞାନ ରହେ । ସେ ଯଥାବତ କ୍ରିୟା କରେ । ଶିଷ୍ଟତା ସହିତ ବ୍ୟବହାର କରେ । ଲୋକ-ମର୍ଯ୍ୟାଦା ପାଳନ କରେ । ମାତ୍ର ଯେତେବେଳେ ତା' ଉପରେ କୌଣସି ଭୂତ ପ୍ରେତ ପିଶାଚ ବା ଅନ୍ୟ ଗ୍ରହର ଆକ୍ରମଣ ହୁଏ ସେତେବେଳେ ସେ ଆପଣା ସ୍ୱଭାବ ଛାଡ଼ି ଦେଇ ଅବ୍ୟବସ୍ଥିତ ବ୍ୟବହାର କରିବସେ । ତାକୁ ଆଚ୍ଛନ୍ନ କରିଥିବା ଗ୍ରହ ଯାହା କରାଏ ତାହା କରେ । ପ୍ରକୃତିସ୍ଥ ଅବସ୍ଥାରେ ସେ ଯାହା ଆଚରଣ କରୁଥିଲା ସେ ତାଠାରୁ ଭିନ୍ନ ଆଚରଣ କରି ବସେ ।

Digitized by srujanika@gmail.com

ଶ୍ରୀ ନାରଦ ରାଜା ଯୁଧିଷ୍ଠିରଙ୍କୁ କହୁଛନ୍ତି—"ରାଜନ, ମହାଭାଗବତ ପ୍ରହ୍ଲାଦଙ୍କର ସ୍ୱଭାବ ଜନ୍ମରୁ ଅଲୌକିକ ଥିଲା। ଶୈଶବ କାଳରେ ପ୍ରାୟ ସମସ୍ତଙ୍କର କ୍ରୀଡ଼ା ଅତ୍ୟନ୍ତ ପ୍ରିୟ ବସ୍ତୁ; ମାତ୍ର ପ୍ରହ୍ଲାଦ ଯେତେବେଳେ ବାଳକ ଥିଲେ, ସେତେବେଳଠାରୁ ଗମ୍ଭୀର ଥିଲେ। ସେ ବାଳକ ସୁଲଭ ସ୍ୱାଭାବିକ ଓ ସାଧାରଣ କୌଣସି ଖେଳ ଖେଳୁ ନଥିଲେ। ଖେଳରେ ବି ସେ ଈଶ୍ୱରଙ୍କର ମୂର୍ତ୍ତି ତିଆରି କରି ପୂଜା ଅର୍ଚ୍ଚନା କରୁଥିଲେ, ନୈବେଦ୍ୟ ଅର୍ପଣ କରୁଥିଲେ, ପ୍ରସାଦ ବାଣ୍ଟୁଥିଲେ ଏବଂ ଭଜନ କୀର୍ତ୍ତନ କରୁଥିଲେ। ଏକାନ୍ତରେ ଭଗବାନଙ୍କର ଧ୍ୟାନ କରୁଥିଲେ। ଭଗବତ୍ ଧ୍ୟାନରେ ଏଭଳି ତନ୍ମୟ ହୋଇଯାଉଥିଲେ ଯେ ସମ୍ପୂର୍ଣ୍ଣ ଜଗତକୁ ଭୁଲି ଯାଉଥିଲେ। ଏ ଜଗତର ଏହି ବସ୍ତୁ ପ୍ରିୟ, ଏହା ସ୍ୱାର୍ଥୀ, ଏହା ଭୋଗ୍ୟ, ଏହା ଅପ୍ରିୟ, ଏସବୁର ଜ୍ଞାନ ହିଁ ରହୁ ନଥିଲା। ସେ ତ ସମ୍ପୂର୍ଣ୍ଣ ଜଗତକୁ ହରିମୟ ଦେଖୁଥିଲେ। ସମସ୍ତଙ୍କ ମଧ୍ୟରେ ଶ୍ରୀହରି ବିଦ୍ୟମାନ ଥିବା ଜ୍ଞାନ କରି ସେ ସବୁରି ବନ୍ଦନା କରୁଥିଲେ। ସେ ସବୁକିଛି ସ୍ୱଭାବ ଅନୁସାରେ ବିନା ସଂକଳ୍ପରେ ସାଧନ କରୁଥିଲେ; କିନ୍ତୁ ସେଥିପ୍ରତି ତାଙ୍କର ଧ୍ୟାନ ନ ଥିଲା। ଯେପରି ଲୋକ ସ୍ୱଭାବତଃ ନିଃଶ୍ୱାସ ପ୍ରଶ୍ୱାସ ନିଏ, ପଲକପାତ କରେ, କୁଣ୍ଢେଇ ହେଲେ କୁଣ୍ଢେଇ ଦିଏ, ସେହିଭଳି ଶରୀରଦ୍ୱାରା ତାଙ୍କର ସମସ୍ତ କ୍ରିୟା ହେଉଥିଲା। ଚିତ୍ତ ସର୍ବଦା ମନମୋହନଙ୍କର ମାଧୁରୀରେ ପ୍ରମତ୍ତ ରହୁଥିଲା। କେତେବେଳେ ଗ୍ରଲୁଥିଲେ ତ ଗ୍ରଲୁ ଥିଲେ। ପାଗଳ ଭଳି, ବିରକ୍ତ ପୁରୁଷ ଭଳି ସଂକଳ୍ପହୀନ ହୋଇ କୌଣସି ସ୍ଥାନରେ ଗନ୍ତବ୍ୟ ଲକ୍ଷ୍ୟ ନଥିଲା। କୌଣସି କ୍ଷେତ୍ରରେ ପହଞ୍ଚିବାର ଇଚ୍ଛା ନଥିଲା। ପାଦ ଆପେ ଆପେ ଆଗକୁ ବଢ଼ି ଯାଉଥିଲେ, ଯେଉଁଠି ରହିଗଲେ କେତେବେଳ ପର୍ଯ୍ୟନ୍ତ ରହିଲେ ତା'ର କୌଣସି ସ୍ଥିରତା ନାହିଁ। ବସିଲେ ତ ବସିଲେ, ଶୋଇଗଲେ ତ ଶୋଇପଡ଼ିଲେ। ମାତା ପ୍ରସାଦ ଦେଲେ ଗ୍ରହଣ କଲେ ସେଥିରେ ବି ଭଲମନ୍ଦ, ସ୍ୱାଦ, ଅସ୍ୱାଦ, ସରସ, ନୀରସ ଏସବୁ କଥାର ବିଗ୍ରର ବିବେକ ନାହିଁ। ଜଳ ମିଳିଲା ପିଇଁ ନେଲେ। ଗାଇବା ଆରମ୍ଭ କଲେ ଭଗବାନଙ୍କର ମଙ୍ଗଳମୟ ମଧୁର ନାମ ଓ ଗୁଣ କୀର୍ତ୍ତନ କରୁଥିଲେ। ମୌନ ହେଲେ ପ୍ରହର ପ୍ରହର ଧରି ସମସ୍ତ ଇନ୍ଦ୍ରିୟମାନଙ୍କୁ ସ୍ଥିର ରଖି ମୌନ-ଧାରଣ କରୁଥିଲେ।

କେବେକେବେ ଚିତ୍ତରେ ଗ୍ଲାନି ଉଦୟ ହେଲେ, 'ହା ଭଗବାନ! ବୈକୁଣ୍ଠନାଥ, କେଉଁଠି ଆଣି ମୋତେ ଏଇ ଭବାର୍ଣ୍ଣବରେ ଛାଡ଼ି ଦେଇଛ। ଚିତ୍ତରେ ଏ ଚିନ୍ତା ଉଦୟ ହେବା ମାତ୍ରକେ ହୃଦୟ ବିଦୀର୍ଣ୍ଣ ହୋଇ ଯାଉଥିଲା। ପ୍ରିୟ ତମର ବିରହ ଅନୁଭୂତ ହେବମାତ୍ରକେ ହୃଦୟ ଭରିଯାଉଥିଲା। ନେତ୍ରରୁ ଅଶ୍ରୁ ପ୍ରବାହ ଆରମ୍ଭ ହେଲେ ତାହା ବନ୍ଦ ହେଉ ନଥିଲା। ତାଙ୍କର ନେତ୍ରଦ୍ୱୟରୁ ନିରନ୍ତର ସ୍ନେହଧାରା ପ୍ଲାବିତ ହୋଇ ତାଙ୍କର ନବନୀରଦ ସଦୃଶ ଶ୍ରୀଅଙ୍ଗ ଆର୍ଦ୍ର କରୁଥିଲା।

Digitized by srujanika@gmail.com

ହା ଶ୍ୟାମସୁନ୍ଦର, ମୋତେ ସଂସାରସାଗରରେ ଛାଡ଼ିଦେଇ ସ୍ୱୟଂ ଲୁଚି ଯାଇଛନ୍ତି । ଏହି ଅନୁଭୂତି ହେବା ମାତ୍ରକେ ଅଶ୍ରୁଧାରା ପ୍ରବାହିତ ହେବାକୁ ଲାଗୁଥିଲା । ସେ ପ୍ରହର ପ୍ରହର ଧରି ସେପରି କାନ୍ଦୁଥିଲେ, ଦୀର୍ଘଶ୍ୱାସ ନେଉଥିଲେ । ତାର ବିପରୀତ କେତେବେଳେ ହୃଦୟରେ ଭଗବତ ସ୍ମୃତି ଜାଗ୍ରତ ହେଲା ହୃଦୟ ସହିତ ହୃଦୟ ସର୍ବସ୍ୱ ଜୀବନଧନ, ଶ୍ରେଷ୍ଠତମ ପ୍ରାଣନାଥଙ୍କର ସଂସ୍ପର୍ଶ ହେଲା ଏବଂ ତାଙ୍କୁ ଭାବଜଗତରେ ଆଲିଙ୍ଗନ କରିନେଇ ସେଇ ସଂସ୍ପର୍ଶ ଜନ୍ୟ ସୁଖର ଅନୁଭବ କରି ଖିଲ୍ ଖିଲ୍ କରି ପାଗଳଭଳି ହସି ଉଠୁଥିଲେ । ହସିବା ଆରମ୍ଭ କଲେ ହସୁଥିଲେ । ଅନ୍ୟ କେହି ଦେଖିବା ଲୋକ ତାଙ୍କୁ ଏକାନ୍ତରେ ଅକାରଣ ଏଭଳି ହସିବା ଦେଖି ପାଗଳ ମନେ କରୁଥିଲା ଓ ଭାବୁଥିଲା—'ନିଶ୍ଚୟ ଏହାର କୌଣସି ମସ୍ତିଷ୍କ ରୋଗ ଅଛି । କେତେବେଳେ କେମିତି ମନମଧ୍ୟରେ ଏଇ ବିଚାର ଉଠୁଥିଲା ଯେ ହାୟ ଏ ମୋର ଚର୍ମ ଜିହ୍ୱା ବ୍ୟର୍ଥ ମୁଖରୂପୀ ଗହ୍ୱର ମଧ୍ୟରେ ପଡ଼ି ରହିଛି; ଏହାର ମୁଖ୍ୟ କର୍ତ୍ତବ୍ୟ ତ ଭଗବତ ଗୁଣଗାନ । ଏହା ନକରି ଏ ଅନ୍ୟର ନିନ୍ଦାସ୍ତୁତି ତଥା ପରୀପବାଦରେ ବୁଡ଼ି ରହିଛି । ଏହାର ସାର୍ଥକତା ତ ଶ୍ରୀକୃଷ୍ଣ ଗୁଣଗାନ କରିବା । ଅହର୍ନିଶି ଏ ଭଗବାନ ନାମ ଉଚ୍ଚାରଣ କରିବା ଉଚିତ ! ଏହାହିଁ ତାର ସଫଳତା । ମୁଁ ଏହାକୁ ସଫଳ କରିବି । ଏହା ଭାବି ସେ, ସମସ୍ତ ଲଜ୍ଜା ତ୍ୟାଗ କରି ଭଗବତ ଗୁଣଗାନରେ ଲୀନ ହୋଇଯା'ନ୍ତି । ପ୍ରହର ପ୍ରହର ଭଗବତ କୀର୍ତ୍ତନ କରିବାରେ ନିମଜ୍ଜିତ ରହନ୍ତି । ମଝିରେ ମଝିରେ ହୁଙ୍କାର ମାରି, ବିହ୍ୱଳ ହୋଇଯା'ନ୍ତି କାନ୍ଦିପକାନ୍ତି । ସେଇ ଆବେଗରେ ଲୋକ ଲଜ୍ଜା ତ୍ୟାଗ କରି ନାଚି ଉଠନ୍ତି । ନାଚି ନାଚି ତାଙ୍କର ଭଗବତ ଭାବର ଆବେଶ ଆସିଯାଏ ଏବଂ ସେ ଭଗବାନଙ୍କର ଲୀଳାର ଅନୁକରଣ କରି ବସନ୍ତି । କେବେକେବେ ଗୋବର୍ଦ୍ଧନ ଧାରଣ କରିବା ଅଭିନୟ କରନ୍ତି ତ, କେବେ ବେଳେ ଗାଈ ଚରାଇବା ଲୀଳା ଦେଖାନ୍ତି । ଆଉ କେବେ ଧନୁର୍ବାଣ ଧରି ରାଘବ ଅଭିନୟ କରନ୍ତି ତ କେତେବେଳେ ବନ ଗମନର ଲୀଳା ମଧ୍ୟ ପ୍ରକଟ କରିଥାନ୍ତି ।

କେତେବେଳେ ଭଗବତ ଧ୍ୟାନରେ ଏପରି ତଲ୍ଲୀନ ହୋଇପଡ଼ୁଥିଲେ ଯେ, ସେ ଅନୁଭବ କରୁଥିଲେ ଯେପରି ଶ୍ରୀହରି ତାଙ୍କୁ ଆପଣା ଶ୍ରୀଭୁଜରେ ଟୋକିଧରି ଗ୍ରହଣରେ ଭିଡ଼ି ନେଉଛନ୍ତି । ଭଗବାନଙ୍କର ସ୍ପର୍ଶଲାଭ କରି ତାଙ୍କର ସମଗ୍ର ଶରୀର ରୋମାଞ୍ଚିତ ହୋଇ ଉଠୁଥିଲା । ସମ୍ପୂର୍ଣ୍ଣ ଶରୀର ପୁଲକିତ ହୋଇ ଉଠୁଥିଲା । ବାଣୀ ରୁଦ୍ଧ ହୋଇ ଯାଉଥିଲା, ଆଉ ପ୍ରିୟତମର ଆଲିଙ୍ଗନ ସୁଖରେ ଶରୀର ଶିଥିଳ କରି ନେତ୍ର ବନ୍ଦ କରି ଅବିଚଳ ଭାବରେ ଆନନ୍ଦାଶ୍ରୁ ବୁହାଉଥିଲେ । ସେ ସମୟରେ ଏଭଳି ମନେ ହେଉଥିଲା ଯେପରି ଦୁଇଟି ମୁଦ୍ରିତ କମଳରୁ ଶିଶିର କଣା ଝର ଝର ହୋଇ ଝରି ପଡ଼ୁଛି ।

Digitized by srujanika@gmail.com

ତାଙ୍କର ଏ ଦଶା ଅତି ଉଚ୍ଚରେ ଥିଲା । ଏପରି ଦଶା କାମୀ ଏବଂ ବିଷୟୀମାନେ ପାଇ ପାରିବେ ନାହିଁ । ଏହା ଅସମ୍ଭବ । ଏହାତ ନିଷ୍କିଞ୍ଚନ ଭଗବତ୍-ଭକ୍ତଙ୍କର ନିରନ୍ତର ସାନ୍ନିଧିତା ହେତୁ, ହୃଦୟ ମଧ୍ୟରେ ଅନୁଷ୍ଠିତ ହୋଇଥିବା ଭଗବତ୍ ପରିଚର୍ଯ୍ୟା ଦ୍ୱାରା. ତାଙ୍କର ଅହେତୁକୀ କୃପା ଫଳରେ ପ୍ରାପ୍ତ ହୋଇଥାଏ । ଯାହାକୁ ଏଭଳି ପ୍ରେମଭକ୍ତି ପ୍ରାପ୍ତ ହୁଏ ସେ ନିଜେ ତ ତରିଯାଏ । ଆପଣାର ସମୀପବର୍ତ୍ତୀ ଅନ୍ୟାନ୍ୟ ସମସ୍ତଙ୍କର ମଧ୍ୟ ତାରଣ କରିଥାଏ । ସେ ତରଣତାରଣ ହୋଇଯାଏ । ପ୍ରହ୍ଲାଦ ଆପଣାର ଉତ୍ତରତ ଭଗବତ୍ ଭକ୍ତିଦ୍ୱାରା ଅନ୍ୟ କୁସଙ୍ଗଗ୍ରସ୍ତ ପୁରୁଷମାନଙ୍କୁ ବାରମ୍ବାର ଶାନ୍ତି ପ୍ରଦାନ କରୁଥିଲେ । ସେମାନଙ୍କ ଚିତ୍ତରେ ମଧ୍ୟ ଆନନ୍ଦସ୍ରୋତ ପ୍ରବାହିତ କରିବାକୁ ଲାଗିଲେ । ସେମାନଙ୍କୁ ମଧ୍ୟ ସ୍ନେହ ଆହ୍ଲାଦିତ କରିବାକୁ ଲାଗିଲେ ।

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହିଲେ—"ରାଜନ, ଏପରି ଭଗବତ ଭକ୍ତି ଅନୁରାଗୀ ସାଧୁ-ସ୍ୱଭାବ ସମ୍ପନ୍ନ ପୁତ୍ର ପ୍ରହ୍ଲାଦ ସହିତ ମଧ୍ୟ ତାର ହରିଦ୍ରୋହୀ ପିତା ହିରଣ୍ୟକଶିପୁ ବିରୋଧ କରିବାକୁ ଲାଗିଲା । ଏହି ବିରୋଧର ଅନ୍ତିମ ପରିଣତି ଏଭଳି ହେଲା ଯେ ଭଗବାନଙ୍କୁ ନୃସିଂହ ଅବତାର ଧାରଣ କରି ହିରଣ୍ୟକଶିପୁକୁ ବଧ କରିବାକୁ ପଡ଼ିଲା ।"

ଏକଥା ଶୁଣି ଆଶ୍ଚର୍ଯ୍ୟ ସହକାରେ ଧର୍ମରାଜ ପଚାରିଲେ—"ବ୍ରହ୍ମନ, ପିତା ଆପଣାର ପୁତ୍ରର ବିରୋଧୀ କପରି ହେଲା, ଏହାତ ଅତ୍ୟନ୍ତ ଆଶ୍ଚର୍ଯ୍ୟ କଥା ।"

ଏହା ଶୁଣି ନାରଦ କହିଲେ—"ଏଥିରେ ଆଶ୍ଚର୍ଯ୍ୟ କଣ ? ପତି ପତ୍ନୀ ମଧ୍ୟରେ ବିରୋଧ, ଭାଇ-ଭାଇରେ ବିରୋଧ, ପିତା ପୁତ୍ର ମଧ୍ୟରେ ବିରୋଧ, ଆତ୍ମୀୟ ସ୍ୱଜନ ମଧ୍ୟରେ ବିରୋଧ—ଏସବୁତ ହୋଇଥାଏ ।"

ଏହାଶୁଣି ଧର୍ମରାଜ କହିଲେ—"ନା' ପ୍ରଭୁ, ମୋର ଅଭିପ୍ରାୟ ଏହା ଯେ ପୁତ୍ର ଯେପରି ହେଲେ ମଧ୍ୟ ପୁତ୍ର ତ ! ଅଯୋଗ୍ୟ ମୂର୍ଖ ପୁତ୍ର ପ୍ରତି ପିତାମାତାଙ୍କର ଅନୁରାଗ ମୋହ ଅଧିକ ହୋଇଥାଏ । ଶିକ୍ଷା ନିମନ୍ତେ ଧମକ ଚମକ ଦେବା ଭିନ୍ନ କଥା । ମାତ୍ର ତାହା ସହିତ ଦ୍ୱେଷକରି ତାକୁ ମାରିବା ଷଡଯନ୍ତ୍ର କରିବା ଆଶ୍ଚର୍ଯ୍ୟ କଥା । ପ୍ରହ୍ଲାଦ ମହାତ୍ମା ଥିଲେ । ତାଙ୍କର ସମ୍ବନ୍ଧରେ ଅଧିକ କଣ କହିବ ? ସେ ତ୍ରିଲୋକରେ ବନ୍ଦନୀୟ , ଚଉଦ ଭୁବନରେ ସମାନ ରୂପରେ ସମ୍ମାନର ଅଧିକାରୀ , ଭଗବତ୍ ସ୍ୱରୂପ ସନ୍ତ ପୁରୁଷ ଯାହାଙ୍କର ଗୁଣ ବର୍ଣ୍ଣନା କରିବାକୁ କ୍ଳାନ୍ତ ହୁଅନ୍ତି ନାହିଁ, ତାଙ୍କର ମହତ୍ତ୍ୱ ବିଷୟରେ କିଛି କହିବା ସୂର୍ଯ୍ୟଙ୍କୁ ପ୍ରଦୀପ ପ୍ରଦର୍ଶନ ଭଳି ହେବ । ଏଭଳି ସରଳ ସଦାଚାରୀ ଧର୍ମାତ୍ମା ପୁତ୍ର ସହିତ ପିତା ହୋଇ କିଭଳି ଦ୍ୱେଷ ଆଚରଣ କଲେ ! ଏହି ବିଷୟ ଶୁଣିବା ନିମନ୍ତେ ମୋର ବିଶେଷ କୌତୁହଳ ଜାତ

Digitized by srujanika@gmail.com

ହେଉଛି । ଯଦି ଆପଣ ଉଚିତ ମନେ କରୁଥାନ୍ତି ତାହାଲେ ତାହା ବିସ୍ତାରିତ କରି କହନ୍ତୁ ।

ଏହାଶୁଣି ନାରଦ କହିଲେ—"ରାଜନ, ଦ୍ୱେଷର କାରଣ ହେଲା ଆପଣା ଇଚ୍ଛାର ପ୍ରତିକୂଳ ଆଚରଣ । ଯେତେ ନିକଟତମ ସମ୍ବନ୍ଧୀ ହେଉନା କାହିଁକି, ଯଦି ସେ ଆମର ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରେ, ଆମେ ବାରଣ କରିଥିବା କାର୍ଯ୍ୟ କରିବା ପାଇଁ ଜିଦ ଧରି କରି ବସେ, ତାହେଲେ ବିରୋଧଭାବ ଆସେ । ତାର ଯଦି କିଛି ଅନିଷ୍ଟ କରିବାକୁ ଆମର ଇଚ୍ଛା ହୋଇଥାଏ । ଚେଷ୍ଟା କରି ମଧ୍ୟ ଆମେ ତାର କୌଣସି ଅନିଷ୍ଟ ସାଧନ କରି ପାରୁନା, ସେତେବେଳେ ଆମ ହୃଦୟରେ ପ୍ରତିହିଂସାର ଅଗ୍ନି ଜଳି ଉଠେ । ଆମେ ତା'ର ଯେତେ ହୋଇପାରେ ସେତେ ଅନିଷ୍ଟ କରିବାର ଚେଷ୍ଟା କରୁଁ । ଏହି କଥା ପ୍ରହ୍ଲାଦ ଏବଂ ହିରଣ୍ୟକଶିପୁ ମଧ୍ୟରେ ହୋଇଥିଲା ।"

ଏହାଶୁଣି ଯୁଧିଷ୍ଠିର କହିଲେ—"ହିରଣ୍ୟକଶିପୁ ପ୍ରହ୍ଲାଦଙ୍କଦ୍ୱାରା କଣ କରାଇବାକୁ ଚାହୁଁଥିଲା । କେଉଁ କାର୍ଯ୍ୟ ସେ ବାରଣ କରୁଥିଲା ? ତାପରେ ଏକଥା କିପରି ଏତେଦୂର ବଢ଼ିଲା ଯେ ପିତା ପୁତ୍ରର ହତ୍ୟା କରିବାକୁ ଇଚ୍ଛା କଲା ? ବ୍ରହ୍ମନ, ଏସବୁ କଥା ଶୁଣେଇ ମୋର ପ୍ରବଳ ହୋଇଥିବା କୌତୁହଳ ଶାନ୍ତ କରନ୍ତୁ ।"

ଏହାର ଉତ୍ତରରେ ନାରଦ କହିଲେ—"ରାଜନ, ଶୁଣନ୍ତୁ, ମୁଁ ବର୍ତ୍ତମାନ ପରମ ଭାଗବତ ଶ୍ରୀ ପ୍ରହ୍ଲାଦଙ୍କର ବୃତ୍ତାନ୍ତ ଆମୂଳାନ୍ତ କହିବି ।"

ଶ୍ରୀ ସୂତ କହୁଛନ୍ତି- "ହେ ମୁନିଗଣ, ଯେଉଁପରି ନାରଦ ଧର୍ମରାଜଙ୍କୁ ପ୍ରହ୍ଲାଦଙ୍କର ଚରିତ ବର୍ଣ୍ଣନା କରି ଶୁଣାଇଥିଲେ ଏବଂ ମୁଁ ଯେପରି ମୋର ଗୁରୁଦେବ ଭଗବାନ ଶୁକଙ୍କ ନିକଟରୁ ମହାରାଜ ପରୀକ୍ଷିତଙ୍କ ସଭାରେ ଶ୍ରବଣ କରିଥିଲି ସେଭଳି ଆପଣମାନଙ୍କୁ କହୁଛି । ଆପଣମାନେ ଦତ୍ତଚିତ୍ତ ହୋଇ ଶ୍ରବଣ କରନ୍ତୁ ।"

—ଛପ୍‌ପୟ—

ଜିନକୀ ଲଖିକେଁ ଭକ୍ତି ସଭୀ ଜନ ହୋହିଁ ସୁଖାରେ ।
ହିରନକଶିପୁ ହରି ନାମ ସୁନତ ଫଟକାରେ ମାରେ ।।
ଗୁରୁଗୃହ ଭେଜେ ପଢ଼ନ ପଢ଼େଂ କା ପଢ଼େ ପଢ଼ାୟେ ।
ରାଜନୀତି କେ ଦାବ ପେଂଚ ତିନ ମନ ନହୀଁ ଭାୟେ ।।
ପୁଛେ ଇକ ଦିନ ପୁତ୍ର ତେଂ, ଅଙ୍କ ଲାଇ ପୁନି ଚୁମି ମୁଖ ।
ସୁତ ! ପ୍ରିୟ ତୋକୁଁ କା ଲଗେ, କୌନ କାଜ ତେଂ ହୋହି ସୁଖ ।।



Digitized by srujanika@gmail.com

# ପିତା ପୁତ୍ର ମଧ୍ୟରେ ମତଭେଦ

ତତ୍‌ସାଧୁ ମନ୍ୟେଽସୁରବର୍ଯ୍ୟ ଦେହିନାମ୍
ସଦା ସମୁଦ୍‌ବିଗ୍ନଧିୟାମସଦ୍‌ଗ୍ରହାତ ।
ହିତ୍ୱାଽଽତ୍ମପାତଂ ଗୃହମନ୍ଧକୂପମ୍
ବନଂ ଗତୋ ଯଦ୍ଧରିମାଶ୍ରୟେତ୍ ।।
(ଶ୍ରୀ: ଭା: ୭ସ୍କ: ୫ଅ: ୫ଶ୍ଳୋ:)

—ଛପ୍ପୟ—

ସୁନି ବୋଲେ ପ୍ରହଲାଦ-ପିତାକୋ ! ବୁରୋ ନ ମାନେ ।
ହମ ତୋ ଜଗ ମହଁ ଭଲୀ ବାତ କାଇ କୂଁ ଜାନେ ।।
ରହେ ସଦା ଉଦ୍‌ବିଗ୍ନ ଚିତ୍ତ ଘର ଦାର ଧନ ମହଁ ।
ତାତେଂ ତଜି କେ ମୋହ ସଦନ କୋ ଜାବେ ବନ ମହଁ ।।
ଯୃହ ଅପନୋ ଯୃହ ପରାୟୋ, ଅଭିନିବେଶ ମିଥ୍ୟା ତଜେ ।
ଜଗ କୀ ଆଶା ଛୋଡ଼ି କେ, ପ୍ରେମ ସହିତ ପ୍ରଭୁକୂଁ ଭଜେ ।।

ବିରୋଧ ସେତେବେଳେ ହୁଏ, ଯେତେବେଳେ ଦୁଇ ଭିନ୍ନ ସ୍ୱାର୍ଥ ଗୋଟିଏ ସ୍ଥାନରେ ଆସି ସଂଘର୍ଷ ହୁଏ । ଅନେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ଆମର ଏହି ମତ ସ୍ୱୀକାର କରନ୍ତି ନାହିଁ । ଆମେ ତାଙ୍କ ସହିତ ଦ୍ୱନ୍ଦ୍ୱ କରିବୁ ନାହିଁ ଯେହେତୁ ସେମାନଙ୍କ ବିଷୟ ଆମର ଅପରିଚିତ । ମାତ୍ର ଯେ ଆମର ପୁତ୍ର, ଆଶ୍ରିତ, ପାଳନୀୟ, ଆତ୍ମୀୟ ପରିଜନ କିମ୍ବା ଅଧୀନ ଏବଂ ସେ ଯେତେବେଳେ ବିରୁଦ୍ଧ ବିଷୟ ଗ୍ରହଣ କରେ ସେତେବେଳେ ଆମର ଦୁଃଖ ହୁଏ । ଯଦି ସେ ସେଇ ବିରୁଦ୍ଧ ବିଷୟ ଆମ ସମ୍ମୁଖରେ ବ୍ୟକ୍ତ କରେ, ସେତେବେଳେ ଆମର ଅଧିକ ଦୁଃଖ ହୁଏ । ସେ ଆପଣା ବିଷୟ ବ୍ୟକ୍ତ

Digitized by srujanika@gmail.com

ହିଁ ନକରୁ ବୋଲି ଆମର ଇଚ୍ଛା । ଆମ ବିଶ୍ୱରରେ ଅବହେଳନା କରିବ, ତାକୁ ହେୟ ଏବଂ ଉପେକ୍ଷଣୀୟ ବୋଲି ପ୍ରମାଣ କରିବ, ଆଜ୍ଞା ଉଲ୍ଲଂଘନ କରିବ ତେବେ ବାଧ୍ୟ ହୋଇ ତାକୁ ଯଥୋଚିତ ଦଣ୍ଡ ଦେବାକୁ ପଡ଼ିଥାଏ । ଏଥିରେ ନା' ସୁରମାନଙ୍କର ଦୋଷ ନା ଅସୁରମାନଙ୍କର; ଏହାତ ଏକ ସ୍ୱାଭାବିକ ନିୟମ ।"

ଧର୍ମରାଜ ଯୁଧିଷ୍ଠିରଙ୍କୁ ନାରଦ କହୁଛନ୍ତି—"ରାଜନ, ଯେଉଁଭଳି ଭାବରେ ପ୍ରହ୍ଲାଦଙ୍କର ପିତା ହିରଣ୍ୟକଶିପୁଙ୍କ ସାଙ୍ଗରେ ମତଭେଦ ହେଲା, ସେ ପ୍ରସଙ୍ଗ ମୁଁ ଆପଣମାନଙ୍କୁ ଶୁଣାଉଛି । ପ୍ରହ୍ଲାଦଙ୍କର ମାତାଙ୍କର ନାମ କୟାଧୁ । କୟାଧୁଙ୍କର ଉଦରରେ ସହସ୍ର ବର୍ଷ ପର୍ଯ୍ୟନ୍ତ ରହି ପ୍ରହ୍ଲାଦ ଜନ୍ମ ହେଲେ । ଜନ୍ମ ହେବା ସମୟଠାରୁ ହିଁ ସେ ଭକ୍ତି ସମ୍ବନ୍ଧୀ ଖେଳ ଆରମ୍ଭ କରିଦେଲେ । ଗ୍ରେଟମାନେ କଣ ଖେଳ ଖେଳୁଛନ୍ତି ବଡ଼ମାନେ ସେଥିପ୍ରତି ଧ୍ୟାନ ଦିଅନ୍ତି ନାହିଁ । ବିଶେଷତଃ ଗ୍ରେଟ ଶିଶୁ ମାତା ନିକଟରେ ଥାଏ । ଯେଉଁପରି ସ୍ୱଭାବର ମାତା, ପ୍ରାୟ ସେପରି ସ୍ୱଭାବର ବାଳକ ହୋଇଥାଏ । ପ୍ରହ୍ଲାଦଙ୍କର ମାତା ତ ରାଜନ, ମୋର ଶିଷ୍ୟ ସେବିକା, ତେଣୁ ତା'ର ଭଗବତ୍ ସମ୍ବନ୍ଧୀ ଖେଳରେ, ଭଗବାନ ନାମ ସଙ୍କୀର୍ତ୍ତନ ଓ କଥା ନିମନ୍ତେ କୌଣସି ଆପତ୍ତି ନଥିଲା । ମାତ୍ର ସେ ସର୍ବଦା ଆପଣା ପତିକୁ ଭୟ କରୁଥିଲା; ଯେମିତି ପୁତ୍ରର ମନୋଭାବ ତାକୁ ବିଦିତ ନ ହେଉ । ତେଣୁ ସେ ଯଥାମତେ ପ୍ରହ୍ଲାଦଙ୍କର ସେହି ଭାବ ଲୁଚାଇ ରଖିବାକୁ ଚେଷ୍ଟା କରୁଥିଲା । ଏପରି ଭାବରେ ଧୀରେ ଧୀରେ ପାଞ୍ଚ ଛଅବର୍ଷ ବିତିଗଲା ।

ଦିନେ ହିରଣ୍ୟକଶିପୁ ପତ୍ନୀ କୟାଧୁକୁ କହିଲା—"ବୁଝିଲ, ପ୍ରହ୍ଲାଦ ଏଇନେ ପଢ଼ିବାକୁ ବୟସ ହୋଇ ଗଲାଣି । ତାକୁ ଗୁରୁଗୃହକୁ ପଠେଇବା ଉଚିତ ।"

ଏହାଶୁଣି କୟାଧୁ କହିଲା—"ପଢ଼ିବାକୁ କାହାପାଖକୁ ପଠେଇବା ? ଶୁଣିଛି ଆମର ପୁରୋହିତ ଭଗବାନ ଶୁକ୍ରାଚାର୍ଯ୍ୟ ତ କୁଆଡ଼େ ବାହାରକୁ ଯାଇଛନ୍ତି ଏବଂ ଶୀଘ୍ର ଫେରିବେ ନାହିଁ ।"

ଏହାଶୁଣି ହିରଣ୍ୟକଶିପୁ କହିଲା—"ଭଗବାନ ଭାର୍ଗବ ନଥିଲେ କଣ ହେଲା, ତାଙ୍କର ଶଣ୍ଡ ଓ ଅମର୍କ ନାମକ ଦୁଇଟି ପୁତ୍ର ଅଛନ୍ତି । ଯେମିତି ଗୁରୁ ସେଭଳି ଗୁରୁପୁତ୍ର । ଯେତେବେଳ ପର୍ଯ୍ୟନ୍ତ ଗୁରୁଦେବ ଆସି ନାହାନ୍ତି ଗୁରୁପୁତ୍ରମାନଙ୍କ ପାଖରେ ପ୍ରହ୍ଲାଦ ପଢ଼ୁଥାଉ ।"

କୟାଧୁ କହିଲା—"ଠିକ୍ କଥା, କାଲି ଖଡ଼ିଛୁଆଁ ପୂଜନ ଆଦି କରେଇ ପ୍ରସାଦ ବାଣ୍ଟିଦେବା । କାଲି ଶୁଭ ମୁହୂର୍ତ୍ତରେ ଅକ୍ଷରାରମ୍ଭ ହୋଇଯାଉ । "

Digitized by srujanika@gmail.com

ଏହା ଶୁଣି ଧର୍ମରାଜ ପଚାରିଲେ—"ଭଗବନ୍ ! ଶୁକ୍ରାଚାର୍ଯ୍ୟ ତ ବ୍ରାହ୍ମଣ ଋଷି । ତାଙ୍କର ପୁତ୍ରମାନଙ୍କର ଶଣ୍ଡ ଅମର୍କ ଭଳି ଅଶୁଭ ଓ ଶୁଷ୍କ ନାମ କିଭଳି ହେଲା ?"

ହସି ହସି ନାରଦ କହିଲେ—"ରାଜନ୍ ! ଏହାର କି ଉତ୍ତର ଦେବି ! ସଂସର୍ଗର କି ତ କିଛି ଦୋଷ ଅଛି ? ଅସୁରଙ୍କ ପୁରୋହିତଙ୍କର ଏଭଳି ନା ସ୍ୱାଭାବିକ । କିଛିହେଲେ ତ ଆସୁରୀ ବୁଦ୍ଧି ଆସିବା କଥା ! ହଁ, ତା'ପର ଭଲଦିନ, ଶୁଭଲଗ୍ନରେ, ଶୁଭମୁହୂର୍ତ୍ତରେ ଅତି ଆଡ଼ମ୍ବର ସହକାରେ ପ୍ରହ୍ଲାଦଙ୍କର ଅକ୍ଷରାରମ୍ଭ ହେଲା । ତାପରେ ସେ ନିୟମିତ ପାଠଶାଳୀ ଯିବାଆସିବା ଆରମ୍ଭ କଲେ । ପଣ୍ଡିତଙ୍କ ନିକଟରେ ନିୟମିତ ଅଧ୍ୟୟନ କଲେ । ଆଉ ଅନ୍ୟ ଅସୁର ପିଲାମାନେ ମଧ୍ୟ ତାଙ୍କ ସାଙ୍ଗରେ ପଢ଼ୁଥିଲେ । ପ୍ରହ୍ଲାଦ ମଧ୍ୟ ଆସନ ଓ ବହିପତ୍ର ନେଇ ପଢ଼ିବାକୁ ଆସୁଥିଲେ । କେତେବେଳେ ଘରକୁ ଫେରି ଆସନ୍ତି ତ କେବେ ଗୁରୁଗୃହରେ ରହିଯାଆନ୍ତି । ଗୁରୁପୁତ୍ରମାନେ ନୀତିଶାସ୍ତ୍ରରେ ପଣ୍ଡିତ ଥିଲେ । ତେଣୁ ସେମାନେ ବାଳକମାନଙ୍କୁ ରାଜନୀତି ବିଷୟକ ଶିକ୍ଷାଦାନ କରୁଥିଲେ । ଶତ୍ରୁ ସାଙ୍ଗରେ କିଭଳି ବ୍ୟବହାର କରାଯିବା କଥା, ସାମର ପ୍ରୟୋଗ କେଉଁପରି ହୋଇଥାଏ, ଦାନଦ୍ୱାରା ଶତ୍ରୁ ଏବଂ ଶତ୍ରୁପକ୍ଷୀୟ ଲୋକଙ୍କୁ କେଉଁପରି ବଶୀଭୂତ କରାଯାଏ, ଶତ୍ରୁର ଶତ୍ରୁ ତଥା ଶତ୍ରୁ ରାଜ୍ୟରେ କେଉଁପରି ଭେଦ ଉତ୍ପନ୍ନ କରାଯାଏ, ସନ୍ଧି କେଉଁପରି ହୋଇଥାଏ, ଆବଶ୍ୟକ ହେଲେ କିପରି ଦଣ୍ଡ ଦିଆଯାଏ, ଦଣ୍ଡରେ ଭେଦ କେତେ ପ୍ରକାର, କେଉଁ ସ୍ଥାନରେ କେଉଁ ଦଣ୍ଡ ଉପଯୁକ୍ତ ଆଦି ଆଦି ନୀତିମାନଙ୍କର ଶିକ୍ଷାଦାନ କରୁଥିଲେ । ପ୍ରହ୍ଲାଦଙ୍କର ବୁଦ୍ଧି ଅତ୍ୟନ୍ତ ତୀବ୍ର ଥିଲା । ସେ ଗୁରୁ ମୁଖରୁ ଶୁଣିଲାମାତ୍ରକେ ସବୁ କଥା ତାଙ୍କର କଣ୍ଠସ୍ଥ ହୋଇଯାଉଥିଲା । ଗୁରୁପୁତ୍ରମାନଙ୍କୁ ତାଙ୍କର ଏତାଦୃଶ ତୀକ୍ଷ୍ଣ ବୁଦ୍ଧି ଏବଂ ବିଲକ୍ଷଣ ପ୍ରତିଭା ବିସ୍ମିତ କରୁଥିଲା ଏବଂ ସେମାନେ ମନେ ମନେ ଅତି ପ୍ରସନ୍ନ ହେଉଥିଲେ ଓ ଭାବୁଥିଲେ ଯେ ଏଭଳି ଶିଷ୍ୟକୁ ଶୀଘ୍ରାତିଶୀଘ୍ର ପଢ଼େଇ ରାଜାଙ୍କଠାରୁ ଅଧିକ ପାରିତୋଷିକ ଗ୍ରହଣ କରିବୁ ।"

ପ୍ରହ୍ଲାଦ ପଢ଼ିଲା କଥା ତୁରନ୍ତ ଶୁଣେଇ ଦେଉଥିଲେ, ମାତ୍ର ତାଙ୍କୁ ସେହି ରାଜନୀତି କଥା ଆଦୌ ଭଲ ଲାଗୁନଥିଲା । ସେସବୁ କଥାରେ କେବଳ ଭେଦ ଥିଲା; ଏ ଆପଣାର, ଏ ପରର, ଏ ଶତ୍ରୁ, ଏ ମିତ୍ର, ଏହିପରି ଭେଦ । ପ୍ରହ୍ଲାଦ ତ ସମଦର୍ଶୀ ଥିଲେ । ସେ ତ ହୃଦୟ ମଧ୍ୟରେ କାହାକୁ ହେଲେ ଶତ୍ରୁ ବୋଲି ବିବେଚନା କରୁନଥିଲେ । ତେଣୁ ଏଭଳି ଅସଦ୍ ଆଗ୍ରହଯୁକ୍ତ କଥା ତାଙ୍କୁ ଭଲ ଲାଗୁନଥିଲା । ତଥାପି ମଧ୍ୟ ପିତାଙ୍କର ଆଦେଶ ବୋଲି ଭାବି ସେ ପଢ଼ୁଥିଲେ ।

Digitized by srujanika@gmail.com

ବାଳକର କଥା । ପ୍ରହ୍ଲାଦ ଆସନ ଓ ପୁସ୍ତକ ଆଦି ରଖି ପିତାଙ୍କର ପାଦପଦ୍ମରେ ଅତ୍ୟନ୍ତ ବିନୀତ ଭାବରେ ପ୍ରଣାମ କଲେ । ଆପଣାର ଅତ୍ୟନ୍ତ ସୁନ୍ଦର ଫୁଲ ପରି ସୁକୁମାର ପୁତ୍ରର ଏପରି ବିନମ୍ର ଏବଂ ଭକ୍ତ ହେତୁ ଦୈତ୍ୟରାଜ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ପୁତ୍ରକୁ ସ୍ନେହରେ ଉଠେଇ କୋଳେଇ ନେଲେ ଏବଂ ବାରମ୍ବାର ମୁଖ ଚୁମ୍ବନ କରି କହିଲେ—"ପୁଅ, ଆଜିକାଲି ତୁ କଣ ପଢ଼ୁଛୁ, ମୋତେ କହ ।"

ନମ୍ରତା ସହକାରେ ପ୍ରହ୍ଲାଦ କହିଲେ—"ଯାହା ଆଦେଶ ହେବ ତାହା ଶୁଣେଇବି ।"

ଯେପରି ପିଲାଙ୍କ ସହିତ ବିନୋଦ କରାଯାଏ, ସେହିପରି ସ୍ୱରରେ ଆଦର କରି ହିରଣ୍ୟକଶିପୁ କହିଲା—"ଅଚ୍ଛା, ତାହେଲେ କହ କୋଉ କଥା ତୋତେ ସଂସାରରେ ସବୁଠାରୁ ଭଲ ଲାଗେ ଏବଂ ତୋ ମତରେ ପୁରୁଷର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ କ'ଣ ?"

ପ୍ରହ୍ଲାଦ ତ ଆତ୍ମାନନ୍ଦ ଘଟ ଭଳି ନୁହନ୍ତି ଯେ ନୂଆଡ଼େ ହେଲା ସେପଟକୁ ଢଳିପଡ଼ିବେ । ତାଙ୍କର ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ଥିଲା, ମନୁଷ୍ୟର ପେଟ ଭିତରେ ଯେଉଁ କଥା ଥିବ ତାହା ହିଁ ଉଦ୍‌ଗାରରେ ବାହାରି ଆସିବ । ତେଣୁ ସେ ପିତାଙ୍କୁ କହିଲେ—"ପିତା ! ଯେଉଁ ଲୋକଙ୍କର ଅହନ୍ତା ମମତାରୂପ ଅସଦ୍-ଅଭିନିବେଶ ହେତୁ ବୁଦ୍ଧି ସଦା ଉଦ୍‌ବିଗ୍ନ ହୋଇ ରହିଥାଏ, ସେମାନଙ୍କ ପକ୍ଷରେ ଏହି ଜଳହୀନ କୂପ ସଦୃଶ ଗୃହସ୍ଥାଶ୍ରମକୁ ସର୍ବେ ସର୍ବେ ପରିତ୍ୟାଗ କରିବା ଉଚିତ । ଏହି ଗୃହସ୍ଥାଶ୍ରମରେ ଦୁଃଖ ଛଡ଼ା କଣ ସୁଖ ଅଛି ? ଜିହ୍ୱା ଓ ଉପସ୍ଥ ସୁଖ କ୍ଷଣିକ, ପରିଣାମ କେବଳମାତ୍ର ଦୁଃଖ । ଏମାନଙ୍କର ସେବନଦ୍ୱାରା ଆତ୍ମୋନ୍ନତି ନ ହୋଇ ଆତ୍ମପାତ ହିଁ ହୋଇଥାଏ । ତେଣୁ ମୋ ମତରେ ସଂସାର ବିଷୟରେ ବିରକ୍ତ ହୋଇ ନିରନ୍ତର ପ୍ରଭୁ ପାଦପଦ୍ମରେ ଧ୍ୟାନ ରଖିବା ଏବଂ ଶ୍ରୀହରିଙ୍କର ଶରଣାପନ୍ନ ହେବା ହିଁ ସର୍ବଶ୍ରେଷ୍ଠ କାର୍ଯ୍ୟ । ଏହା ହିଁ ସବୁଠାରୁ ସୁନ୍ଦର କଥା ।"

ଶ୍ରୀ ନାରଦ କହିଲେ—"ରାଜନ୍ ! ଯେପରି ସାପକୁ ଚଢ଼େଇଦେଲେ ସେ ଫଁ କରେ, ଯେପରି ପ୍ରଜ୍ୱଳିତ ନିଆଁରେ ଆହୁତି ଦେଲେ ତାହା ଅଧିକ ଜଳିବା ଆରମ୍ଭ କରିଦିଏ, ସେପରି ଭଗବାନଙ୍କ ନାମ ଶୁଣିବାମାତ୍ରକେ ହିରଣ୍ୟକଶିପୁ ହୃଦୟରେ ଦ୍ୱେଷ ଜଳିବା ଆରମ୍ଭ ହୋଇଗଲା । ତାପରେ ସେ ପ୍ରହ୍ଲାଦଙ୍କୁ ଗୃହିଁଲା । ଛୋଟ ସୁକୁମାର ଶିଶୁ । କଥା ଏମିତି କହୁଛି ଯେମିତି ଦେବଗୁରୁ ବୃହସ୍ପତି । ଛୋଟ

Digitized by srujanika@gmail.com

ମୁହଁରେ ବଡ କଥା ଶୁଣି ଦୈତ୍ୟରାଜଙ୍କର କ୍ରୋଧ ଶାନ୍ତ ହୋଇଗଲା ଏବଂ ସେ ତାକୁ ପିଲାର ସରଳ କଥା ମନେକରି ହସି ଦେଲା । ରାଜନ୍, ଲୋକେ କହନ୍ତି ବାଳକ ବୁଦ୍ଧି ଅପରିପକ୍ୱ, ମାତ୍ର ମୋର ତ ଶୈଶବ ଅତ୍ୟନ୍ତ ପ୍ରିୟ । ମୋର ଶକ୍ତି ଥିଲେ ମୁଁ ସର୍ବଦା ବାଳକ ହୋଇ ରହିଥାନ୍ତି । ବାଳକ ଯାହାବି ଅପରାଧ କରୁ, ପିତାମାତା ତାକୁ ଧମକ ଦେଲେ ଅନ୍ୟମାନେ ବୁଝେଇ ଥା'ନ୍ତି— "ପିଲାଲୋକ, ଛାଡ । ପିଲାଙ୍କ କଥା ଧରନ୍ତୁ ନାହିଁ । ବାଳକ ଯେତେ ବଢ଼ିଥାଏ, ସେତେ ସେତେ ତା' କଥା ଧରାଯାଏ ତାର ଦୋଷ ଧରାଯାଏ । ଯଦ୍ୟପି ହିରଣ୍ୟକଶିପୁ ନିମନ୍ତେ ଭଗବାନଙ୍କର ନାମ ନେବା ଗୁରୁତର ଅପରାଧ, ତଥାପି ବି ପ୍ରହ୍ଲାଦକୁ ବାଳକମାନେ କରି ସେ ହସି ଦେଲା ଏବଂ ମନକୁ କହିଲା—ଦେଖ, ଏହାକୁ କହନ୍ତି ପିଲାଳିଆ ଭାବ । ପିଲାଙ୍କର ବୁଦ୍ଧି ଏମିତି ପରକଥାରେ ଭ୍ରମି ଯାଏ । ମାତ୍ର ବାଲ୍ୟକାଳର ସଂସ୍କାର ଲଭିଯାଏ ନାହିଁ । ତେଣୁ ମୋର ଏ କଥାକୁ ଉପେକ୍ଷା କରିବା ଉଚିତ ହେବ ନାହିଁ । ଆଜିଠାରୁ ଏହାର କିଛି ପ୍ରତିକାର ବ୍ୟବସ୍ଥା କରିବା ଉଚିତ ।' ଏହା ଭାବି, ଆପଣାର ଗୃହ କାର୍ଯ୍ୟ କରୁଥିବା ଜଣେ ମନ୍ତ୍ରୀଙ୍କୁ ଡାକି କହିଲା– "ଦେଖ ଏଣିକି ଏହାର ଘରକୁ ଆସିବା ଦରକାର ନାହିଁ । ସେଠାରେ ଗୁରୁଗୃହରେ ହିଁ ଏହାକୁ ସାବଧାନତା ସହକାରେ ରଖ । ସେଇ ବ୍ରାହ୍ମଣମାନଙ୍କୁ କହିବ ଏହାର ଅଧିକ ଦେଖାରେଖା କରିବେ । ବିଷ୍ଣୁଙ୍କର ପକ୍ଷପାତୀ ଗୁପ୍ତ ବେଶରେ ଏଣେତଣେ ବୁଲୁଛନ୍ତି ଏବଂ ସରଳ ମନା ଲୋକଙ୍କୁ ଏଣୁ ତେଣୁ କହି ବୈଷ୍ଣବ କରି ଦେଉଛନ୍ତି । ମନୁଷ୍ୟ ବୈଷ୍ଣବ ହେବା ମାତ୍ରକେ ତାର ଲୌକିକ ବୁଦ୍ଧି ଧ୍ୱଂସ ହୋଇ ଯାଉଛି । ସେ ନିରର୍ଥକ ହୋଇ ଯାଉଛି । କୌଣସି କାର୍ଯ୍ୟକୁ ଯୋଗ୍ୟ ହୋଇ ରହୁ ନାହିଁ । ଶତ୍ରୁ ପ୍ରତି କ୍ରୋଧପର୍ଯ୍ୟନ୍ତ କରିପାରେ ନାହିଁ । ତାପାଖରେ ଯାହା କିଛି ବି ଥାଏବୃଥା ଲୋକଙ୍କୁ ବାଣ୍ଟି ଦେଇଥାଏ । ତେଣୁ ଏହାକୁ ବୈଷ୍ଣବମାନଙ୍କଠାରୁ ଦୂରରେ ରଖିବ । ଗୁରୁପୁତ୍ରମାନଙ୍କୁ ମୋ ପକ୍ଷରୁ ଧମକ ଚମକ ଦେଇ କହିବେ ।"

ନାରଦ କହୁଛନ୍ତି—"ରାଜନ, ଏହା କହି ହିରଣ୍ୟକଶିପୁ ମନ୍ତ୍ରୀ ହାତରେ ପ୍ରହ୍ଲାଦକୁ ତୁରନ୍ତ ଗୁରୁ ଗୃହକୁ ପଠେଇ ଦେଲା । ମନ୍ତ୍ରୀ ଯାଇ ଗୁରୁପୁତ୍ରମାନଙ୍କୁ କହିଲା —"ବିପ୍ରଗଣ, ଆପଣମାନେ ଏ ରାଜକୁମାରଙ୍କୁ କଣ ଏଣୁତେଣୁ ପାଠ ପଢ଼େଇଲେ । ମହାରାଜ ଅତ୍ୟନ୍ତ ବିରକ୍ତ ହେଉଥିଲେ । ଏତ ଆମ ଅସୁରମାନଙ୍କର ସର୍ବଥା ବିରୋଧୀ କଥା କହୁଛି । ରାଜା ଆପଣମାନଙ୍କୁ ଚେତାବନୀ ଦେଇଛନ୍ତି ଯେପରି ଆପଣମାନେ ତା'ର ଭଲଭାବରେ ଦେଖାଶୁଣା କରିବେ । ମନେ ହେଉଛି ଆପଣଙ୍କ ଏଠାରେ କେହି ଜଣେ ବିଷ୍ଣୁ ପକ୍ଷପାତୀ ଗୁପ୍ତଚର ଲୁଚି ରହିଛି ଏବଂ ସେ ଏ ପିଲାଟିର ବୁଦ୍ଧି ଭ୍ରଷ୍ଟ କରୁଛି ।"

Digitized by srujanika@gmail.com

ରାଜାଙ୍କର କ୍ରୋଧ କଥା ଶୁଣି ଗୁରୁପୁତ୍ରମାନେ ଡରିଗଲେ । ସେମାନେ ବିନମ୍ର ସହକାରେ କହିଲେ—"ମନ୍ତ୍ରୀ ମହୋଦୟ, ଆମେମାନେ ତ କୁମାରଙ୍କୁ ସେଭଳି କୌଣସି କଥା ଶିଖେଇ ନାହୁଁ । ଚାକ ଦେବତାମାନଙ୍କର ଗୁପ୍ତଚର କାର୍ଯ୍ୟ, ଆପଣ ନିଜେ ଗଣି ନିଅନ୍ତୁ । ଆମ ପାଠଶାଳାରେ ଯେତେ ଛାତ୍ର ଅଛନ୍ତି ସମସ୍ତେ ଅସୁରମାନଙ୍କର ବିଶ୍ୱାସପାତ୍ର, ସେମାନଙ୍କ ପୁତ୍ରମାନେ ହିଁ ଅଛନ୍ତି । ଏଭଳି ବିରୁଦ୍ଧ କଥା ଏ ଦୈତ୍ୟରାଜଙ୍କ ସମ୍ମୁଖରେ କିଭଳି କହିଲା ? ଆମେମାନେ ମଧ୍ୟ ଆଶ୍ଚର୍ଯ୍ୟ ହେଉଛୁଁ ! ଭଲ କଥା, ଆମେ ତାଙ୍କୁ ପଚାରିବୁଁ । ଆପଣ ମହାରାଜଙ୍କୁ ଆମପକ୍ଷରୁ କହି ଦିଅନ୍ତୁ । ଆମେ କୁମାର ବିଷୟରେ ଆଜିଠାରୁ ବିଶେଷ ସାବଧାନ ହେବୁଁ ଏବଂ ଏକଥାର ଅନୁସନ୍ଧାନ ତତ୍ପରତା ସହିତ କରି ତା'ର ଏଭଳି ବିପରୀତ ବୁଦ୍ଧିର କାରଣ କଣ ବୁଝିବୁ । କାରଣ ଜାଣିବାପରେ ତାର ପ୍ରତିକାର କରିବାକୁ ଶକ୍ତିମତେ ଚେଷ୍ଟା କରିବୁ ।" ଏହାଶୁଣି ମନ୍ତ୍ରୀ ଚାଲିଗଲା । ମନ୍ତ୍ରୀଙ୍କର ଗଲାପରେ ଉଭୟ ଗୁରୁପୁତ୍ର ଅତ୍ୟନ୍ତ ସ୍ନେହରେ ପ୍ରହଲ୍ଲାଦଙ୍କୁ ପାଖକୁ ଡ଼ାକିଲେ । ତାଙ୍କୁ କୋଳ କରି ଅତି ଆଦରରେ ପଚାରିଲେ—"ପ୍ରହଲ୍ଲାଦ ଦେଖ, ଆମେ ତୋତେ କଥାଟିଏ ପଚାରିବୁ । କହ, ସତ କହିବୁ ? ମିଛ ତ କହିବୁ ନାହିଁ ?"

ପ୍ରହଲ୍ଲାଦ କହିଲେ—"ଗୁରୁଦେବ ଯାହା ପଚାରିବେ ପଚାରନ୍ତୁ ।"

ଗୁରୁପୁତ୍ରମାନେ ପୁଣି ପଚାରିଲେ—"ପଚାରିବୁ, କିନ୍ତୁ ଦେଖ, ଏ କଥା ମନେ ରଖିଥା ଯେ ଆମେମାନେ ତୋର ଗୁରୁ । ଆମ ସମ୍ମୁଖରେ କୌଣସି ଛଳ କଥା କହିଲେ ପାପର ଭାଗୀ ହେବୁ । ଆମେ ତୋତେ ଜାଣୁ, ତୁ ରାଜପୁତ୍ର । କେବେ ହେଲେ ମିଛ କହୁନା । ଭାରି ଭଲ ପିଲା ।"

ପ୍ରହଲ୍ଲାଦ କହିଲେ - "ଗୁରୁଦେବ, ଆପଣ ବିଶ୍ୱାସ କରନ୍ତୁ । ଆପଣ ଯାହା ପଚାରିବେ ମୁଁ ସତସତ କହିବି ।"

ଗୁରୁପୁତ୍ରମାନେ କହିଲେ—"ସତ ସତ କହ, ତୁ ପିତାଙ୍କ ଆଗରେ ଯାହା ଏବେଲେଖି ବକିଲୁ ତାହା ତୋତେ କିଏ ଶିଖେଇଲା ? ଆମେ ତ ତୋତେ କେବେ-ହେଲେ ସେଭଳି କଥା ଶିଖେଇ ନାହୁଁ । ଏଇ ପିଲାଙ୍କ ମଧ୍ୟରେ କିଏ ଶିଖେଇ ଥିଲେ ତା'ର ନା କହ ଆଉ ଯଦି କୌଣସି ଭିଖାରୀ, ଛଦ୍ମବେଶୀ, ପଣ୍ଡିତ, ଜ୍ୟୋତିଷ, ସାଧୁ କିମ୍ବା ଅନ୍ୟ କେହି ଶିଖେଇଥିଲେ କହ, ଯଦି ତୁ ମନକୁ ମନ କହୁଥାଉ, ତାହାହେଲେ ତାହା ମଧ୍ୟ କହ । ତୁ ଏସବୁ କଥା କିଭଳି ଜାଣିଲୁ ? କଥା ହେଲା, ତୁ ଦୋଷ କରୁଛୁ ମାତ୍ର ଦୋଷୀ ହେଉଛୁଁ ଆମେମାନେ । ତୁ ଶିଖେଇଥିବା ଲୋକର ପରିଚୟ ଦେଲେ ଆମେ ତା'ର ପ୍ରତିକାର ନିମନ୍ତେ କୌଣସି ଉପାୟ ଚିନ୍ତା କରି ପାରିବୁ । ଭବିଷ୍ୟତ ପାଇଁ ସାବଧାନ ହୋଇଯିବୁ ।"

Digitized by srujanika@gmail.com

ଧର୍ମରାଜଙ୍କୁ ନାରଦ କହୁଛନ୍ତି—"ରାଜନ, ଗୁରୁପୁତ୍ରମାନଙ୍କର ଏଭଳି କଥା ଶୁଣି ପ୍ରହ୍ଲଦ ମୃଦୁକ ହସିଲେ ଏବଂ ଅତି ସୁନ୍ଦର ଢଙ୍ଗରେ ତାଙ୍କର ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ ହେଲେ ।"

—ଛପ୍ପୟ—

ସୁନ ହଁସି ବୋଲେ ଯା' ଅସୁର ହୋହିଁ ଭେଟରେ ବାଲକ ଅତି
ଦେବେଂ ଜା ଜସ ସୀଖ ହୋହି ତୈସୀ ତନକୀ ମତି ।।
ବେଷ ବଦଲି କେଁ ବିଷ୍ଣୁ ଭକ୍ତ ତିଙ୍ଗ ଜାକେ ଆବେଂ ।
କହି କହି ହର କୋ ସୁୟଶ ସରଲ ଶିଶୁକୁଁ ବହକାବେଂ ।।
ସେବକ ଶାସନ ସୁଚନା ସବ, ସାବଧାନ ସବଇ ରହୋ ।
ବାବାଜିନ୍ନ ତେଂ ବଚିବେଂ, ଗୁରୁ ପୁତ୍ରନ ତେ ତୁମ କହୋ ।।



Digitized by srujanika@gmail.com

# ପ୍ରହ୍ଲାଦଙ୍କ ଉତ୍ତରରେ
# ଗୁରୁପୁତ୍ରଙ୍କର କୋପ

ସ ଯଦନୁବ୍ରତଃ ପୁଂସାଂ ପଶୁବୁଦ୍ଧିର୍ବିଭିଦ୍ୟତେ ।
ଅନ୍ୟ ଏଷ ତଥାନ୍ୟୋଽହମିତି ଭେଦଗତାସତୀ ॥
(ଶ୍ରୀ ଭା: ୭ସ୍କ: ୫ଅ: ୧୨ ଶ୍ଳୋ)

## ଛପ୍ପୟ

ଆଜ୍ଞା ସୁନି ପ୍ରହ୍ଲାଦ ତୁରତ ଗୁରୁଗୃହ ପହୁଁଚିଗୟେ ।
ଅସୁର କହେ ଯେ ବଚନ ସେବକନି ଯାଇ ସୁନାୟେ ॥
ପୁଛେଁ ଷଣ୍ଡାମର୍କ କୁମର ତେଁ ନେହ ସହିତ ଅସ
ଜିନକେ ବଶ ତୂ ଭୟୋ ଭଈ ବିପରୀତ ବୁଦ୍ଧି କସ ॥
ହଁସି ବୋଲେ ପ୍ରହ୍ଲାଦ ଗୁରୁ ! କୌନ କାହୁ କୋ ବଶ କରେଁ ।
ହରି ଇଁ ସବକୀ ବୁଦ୍ଧି କୁଁ, ଯବ ଚହେଁ ତବ ତସ କରେଁ ॥

ଜନ୍ମ ହେବାମାତ୍ରକେ ଜୀବ ପୂର୍ବଜନ୍ମର ସଂସ୍କାର ଅନୁସାରେ କାର୍ଯ୍ୟକରିବା ଆରମ୍ଭ କରିଦିଏ । ଗାଈ ଜନ୍ମକଲାମାତ୍ରକେ ଶାବକକୁ ଚାଟିବା ଆରମ୍ଭ କରିଦିଏ । ଶିଶୁଟି ଜନ୍ମ ହେବାମାତ୍ରକେ ଉଠିବା ପାଇଁ ଚେଷ୍ଟା କରେ ଏବଂ ମାତାର ସ୍ତନମାନଙ୍କୁ ଖୋଜିବା ଆରମ୍ଭ କରେ । ସ୍ତନ ନ ପାଇଲେ ଅଂଗଗୋଡ଼ ସନ୍ଧିରେ ମୁହଁମାରେ । ପୁଣି ଖୋଜି ଖୋଜି ସ୍ତନ ପାଇଯାଏ ଓ ଦୁଧ ଖାଇବା ଆରମ୍ଭ କରିଦିଏ । ଏସବୁ ତାକୁ କିଏ ଶିଖେଇଲା ? କହିବାକୁ ହେବ ଯେ ଏହା ତା'ର ଜନ୍ମ ଜନ୍ମାନ୍ତରର ସଂସ୍କାର । ଯେଉଁ କଥାର ପୂର୍ବଜନ୍ମ ସଂସ୍କାର ନ ଥିବ, ଆପଣ ଲକ୍ଷେ ଚେଷ୍ଟା କଲେ ମଧ ତାହା କଦାପି ହେବନାହିଁ । ଆସିବ ଯଦି ଅନେକ ଚେଷ୍ଟା ପରେ କିଛି ସଂସ୍କାର ଆସିବ, ଯାହା ପରଜନ୍ମରେ କାମ ଦେବ । କେତେକ କାର୍ଯ୍ୟର ସଂସ୍କାର ଅପୂର୍ଣ୍ଣ

Digitized by srujanika@gmail.com

ଥାଏ, ଯାହା ଗୁରୁଙ୍କଦ୍ୱାରା ପୂରା ହୋଇଥାଏ । କେତେକ ସଂସ୍କାର ପୂର୍ଣ୍ଣ ହୋଇ ରହିଥାଏ, ସେଥିରେ କଞ୍ଚିତମାତ୍ର ତ୍ରୁଟି ହେଲେ ଭଗବତ୍ ଇଚ୍ଛାରେ ଏଇ ଧରାଧାମରେ ପୁନଶ୍ଚ ଜନ୍ମ ଗ୍ରହଣ କରିବାକୁ ପଡ଼େ । ତାଙ୍କର ଶିକ୍ଷା ଦୀକ୍ଷା ତ ପୂର୍ବ ଜନ୍ମରେ ପୂର୍ଣ୍ଣ ହୋଇଯାଇଛି, ଏ ଜନ୍ମରେ ପୂରା କରିବାର ଆବଶ୍ୟକତା ନାହିଁ । ପ୍ରାରବ୍ଧ ଭୋଗ କରିବା ପରେ ସଂସାରର ଆବାଗମନ ରହେନାଇ । ଏଭଳି ଲୋକଙ୍କୁ ଯେତେବେଳେ ସ୍ୱତଃ ସେହି ଧର୍ମମାନଙ୍କର ଆଚରଣ କରିଥିବା ଦେଖନ୍ତି ସେତେବେଳେ ଅଜ୍ଞାନୀ କେହି ତାଙ୍କୁ ସ୍ୱୟଂଭୂ କହିଥାନ୍ତି, କେହି ମନମୁଖୀ କହି ପରିହାସ କରନ୍ତି । କେହିକେହି ଅପାରଗ କହି ତିରସ୍କାର କରିଥାନ୍ତି । ଆପଣାକୁ ବିଦ୍ୱାନ ଏବଂ ଶିକ୍ଷାଦୀକ୍ଷାର ଆଗ୍ରହୀ ମନେ କରୁଥିବା ବ୍ୟକ୍ତିମାନେ ମନେ କରନ୍ତି ଯେ ଏ ଏତେ ଜ୍ଞାନ କେଉଁଠାରୁ ଶିଖିଲା । ଏହାକୁ ଏତେ ବିଦ୍ୟା କେଉଁଠୁ ଆସିଲା । ଏ ଏତେ ସାଧନସମ୍ପନ୍ନ ସ୍ୱତଃ କାପରି ହୋଇଗଲା ? ସେମାନଙ୍କୁ ଏହା ଜଣା ନଥାଏ ଯେ ଏହି ସବୁର ଶିକ୍ଷାଦୀକ୍ଷା ଏହାକୁ ପୂର୍ବ ଜନ୍ମମାନଙ୍କରେ ମିଳିଛି । ଏ ଜନ୍ମ ନେବା ପୂର୍ବରୁ ଏ ସବୁ ପ୍ରାପ୍ତ ହୋଇଛି ଏବଂ ତାହା ସମ୍ପୂର୍ଣ୍ଣ କରିସାରିଛି ।

ଶ୍ରୀ ନାରଦ ଧର୍ମରାଜ ଯୁଧିଷ୍ଠିରଙ୍କୁ କହିଲେ—"ରାଜନ ! ଯେତେବେଳେ ଗୁରୁପୁତ୍ରମାନେ ପ୍ରହ୍ଲାଦଙ୍କୁ ପ୍ରେମପୂର୍ବକ ପଚାରିଲେ ଯେ ଭଗବତ୍ ଭକ୍ତର ଶିକ୍ଷା ତୋତେ କିଏ ଦେଲା । ସେତେବେଳେ ସେ କହିଲେ—"ଦେଖନ୍ତୁ, ଉତ୍ତର ଦେବା ଆଗରୁ ମୁଁ ମଙ୍ଗଳାଚରଣ କରୁଛି ।"

ଗୁରୁପୁତ୍ରମାନେ କହିଲେ—"ଠିକ୍ ଅଛି, ମଙ୍ଗଳାଚରଣ ପରେ ହିଁ ଉତ୍ତର ଦିଅ ।"

ଏହା ଶୁଣି ପ୍ରହ୍ଲାଦ କହିଲେ—"ଯାହାର ଅଚିନ୍ତ୍ୟ ମାୟାରେ ମୋହିତ ହୋଇ ଜୀବ ଏହା ମୋର, ଏହା ତୋର, ଏହା ଆପଣାର, ଏହା ପରର ବୋଲି ଭେଦ ବୁଦ୍ଧି କରିଥାଏ, ମିଥ୍ୟା ଦୁରାଗ୍ରହ କାରଣରୁ ଯାହାର ବୁଦ୍ଧି ମୋହଗ୍ରସ୍ତ, ସେହି ମାୟାପତି ଭଗବାନ ବାସୁଦେବଙ୍କୁ ପ୍ରଣାମ ।"

ଗୁରୁପୁତ୍ରମାନେ କହିଲେ—"ଆରେ ଆରେ, ତୁ କାହାକୁ ପ୍ରଣାମ କରୁଛୁ ? ଏ ଭେଦଭାବ ତ ଅନାଦି । ସ୍ୱଭାବାନୁସାରେ ହୋଇଥାଏ ।" ପ୍ରହ୍ଲାଦ କହିଲେ —"ହେ ଗୁରୁଦେବ ! ସଂସାରରେ ଏହା ହିଁ ପଶୁବୁଦ୍ଧି, ଏହା ହିଁ ଅଜ୍ଞାନ । ସର୍ବାନ୍ତର୍ଯାମୀ ଶ୍ରୀହରିଙ୍କର ଜୀବ ଉପରେ କୃପା ହୋଇଥାଏ । ଅଥବା ଜୀବ ତାଙ୍କର କୃପା ଅନୁଭୂତିର ଅଧିକାରୀ ହୋଇଯାଏ, ସେତେବେଳେ ସେ ଭେଦଭାବ ନଷ୍ଟ ହୋଇଯାଏ । ଭଗବାନଙ୍କର କୃପା ଅନୁଗ୍ରହ ସାଧ୍ୟ ଅଟେ । ଏଣୁ ସଦା ସର୍ବଦା

Digitized by srujanika@gmail.com

ଭଗବତ୍ ଅନୁଗ୍ରହର ପ୍ରତୀକ୍ଷା କର କର କେତେବେଳେ ହେଲେ କରୁଣେଶଙ୍କର କୃପା ମିଳିଥାଏ ।"

ଏହା ଶୁଣି ଗୁରୁପୁତ୍ରମାନେ କ୍ରୋଧପୂର୍ବକ କହିଲେ—"ଆରେ, ତୁ କଣ ପୁଣି ଏଣୁତେଣୁ ବକିବା ଆରମ୍ଭ କଲୁଣି । କିଏ ତୋର ବୁଦ୍ଧି ଭ୍ରଷ୍ଟ କଲା ? ଆମେ ଯେଉଁ କଥା ପଚାରୁଛୁ ସେ କଥା କହୁନୁ ! ଅନୁଗ୍ରହ, ପ୍ରତୀକ୍ଷା, ସାଧନ, ସାଧ୍ୟ କଣ ନା କଣ କହିବା ଆରମ୍ଭ କରିଦେଲୁଣି । ଆମକୁ ଜ୍ଞାନ ଦେବା ଆରମ୍ଭ କରିଦେଲୁଣି । କହ, କିଏ ତୋର ବୁଦ୍ଧି ନାଶ କରିଛି । କିଏ ତୋତେ ଏ ଓଲଟା କଥା କହୁଛି ?"

ଏହା ଶୁଣି ପ୍ରହ୍ଲାଦ କହିଲେ—"ମୂର୍ଖ ଲୋକେ ଆମ୍ଭରେ ଯେଉଁ ଆପଣା-ପର ଆରୋପ କରନ୍ତି ତାହା ସତ୍ୟ ନୁହେଁ । ବୁଦ୍ଧିହୀନ ପୁରୁଷ ହିଁ ଏପରି ନିରୂପଣ କରନ୍ତି । ଯେଉଁମାନଙ୍କୁ ପ୍ରଭୁଙ୍କ କୃପା ପ୍ରାପ୍ତ ହୋଇସାରିଛି ସେମାନେ ଏପରି କଥା କେବେହେଲେ ବି କରିବେ ନାହିଁ । ସେହି ମଦନମୋହନଙ୍କର ମୋହିନୀମାୟା ଅତ୍ୟନ୍ତ ଦୁର୍ଜ୍ଞେୟ । ବଡ ବଡ଼ ବେଦଜ୍ଞ ବ୍ରାହ୍ମଣ, ବ୍ରହ୍ମାଦି ଦେବଗଣ ମଧ୍ୟ ତାଙ୍କର ମୋହରେ ପଡ଼ି ମୋହିତ ହୋଇଥାନ୍ତି । ସେହି ମଦନମୋହନ ମୋ ବୁଦ୍ଧିରେ ଭେଦଭାବ ଉତ୍ପନ୍ନ କରିଛନ୍ତି । ହେ ଦ୍ୱିଜଗଣ ! ମୁଁ କ'ଣ କରିପାରିବ ? ଆପଣମାନେ ମୋର ଗୁରୁ । ମୁଁ ସତ୍ୟ କହୁଛି ଯେ କୌଣସି ବ୍ୟକ୍ତିବିଶେଷ ମୋତେ ଭୁଲେଇ ନାହିଁ । ମୋର ମନ ସ୍ୱତଃ ତାଙ୍କ ପ୍ରତି ଏଭଳି ଆକର୍ଷିତ ହୋଇଯାଉଛି, ଯେପରି ଲୁହା ଚୁମ୍ବକ ପ୍ରତି ଆକର୍ଷିତ ହୋଇଥାଏ । ଯେପରି ମନ ଆଗକୁ ବିଷୟ ଆସି ଉପସ୍ଥିତ ହେଲେ ସେ ସ୍ୱତଃ ସେଥିପ୍ରତି ଆକର୍ଷିତ ହୋଇଥାଏ, ଯେପରି ଗଡାଣିଆ ସ୍ଥାନରେ ପାଣି ପଡ଼ିଲେ ସ୍ୱତଃ ତଳକୁ ବହିଯାଏ, ସେହିପରି ଭଗବାନଙ୍କର ନାମ ଗୁଣ ଆଡକୁ ଆକର୍ଷିତ ହେବା ଯେପରି ମୋର ସ୍ୱାଭାବିକ ପ୍ରବୃତ୍ତି ।"

ଏହା ଶୁଣି ଗୁରୁପୁତ୍ରମାନେ କହିଲେ—"ତୁ ଭାରି ଜିଦ୍‌ଖୋର ! ଆମେ ଭାବୁଥିଲୁ ତୁ ପିଲାଟିଏ, ମାତ୍ର ତୁ ତ ଆମକୁ ବି ଉପଦେଶ ଦେବା ଆରମ୍ଭ କରି ଦେଲୁଣି । ଛାଡ଼ ଏସବୁ ବୃଥା କଥା ।"

ଗୁରୁପୁତ୍ରମାନଙ୍କୁ କ୍ରୋଧିତ ହେବା ଦେଖି ପ୍ରହ୍ଲାଦ ସେମାନଙ୍କୁ ଆଉ କିଛି କହିବା ଉଚିତ ମନେ କଲେନାହିଁ । ସେ ମୌନ ହେଲେ ।

Digitized by srujanika@gmail.com

ଗୁରୁପୁତ୍ରମାନେ ଯେତେବେଳେ ଦେଖିଲେ ଯେ ଏ ଆମ କଥାର ଅବହେଳନା କରୁଛୁ, ଆମର ଆଜ୍ଞା ପାଳନ କରୁନାହିଁ, ସେତେବେଳେ ସେମାନଙ୍କର କ୍ରୋଧ ସୀମା ଉଲ୍ଲଙ୍ଘନ କରିଗଲା । କ୍ରୋଧରେ ଦାନ୍ତ କାମୁଡ଼ି ସେମାନେ କହିଲେ— "ଆରେ ଦୁର୍ମୁଖ ! ଭିତରୁ ବେତ ଆଣ ତ । ଏ ବିନା ପ୍ରହାରରେ ମାନିବ ନାହିଁ । ଯେତେବେଳେ ପିଠିରେ ଦଶ କୋଡ଼ିଏ ବେତ ମାଡ଼ ବସିଯିବ ସେତେବେଳେ ଏହାର ବୁଦ୍ଧି ଠିକଣା ଜାଗାରେ ପହଞ୍ଚିବ ।"

ନାରଦ ଧର୍ମରାଜଙ୍କୁ କହିଲେ—"ରାଜନ୍ ! ଦାସତାଠାରୁ ବଳି ଆଉ କୌଣସି ପାପ ନାହିଁ । ଆଶ୍ରିତକୁ ସର୍ବଦା ଆପଣାର ଆଶ୍ରୟଦାତାର ମନୋଭାବ ଜାଣି କଥା ହେବାକୁ ପଡ଼େ । ତାକୁ ପ୍ରସନ୍ନ କରିବାକୁ ବିଭିନ୍ନ ଧରଣର ପ୍ରଚେଷ୍ଟା କରିବା ଆବଶ୍ୟକ ହୋଇଥାଏ । ସେହି ଶଣ୍ଡ ଓ ଅମର୍କ ତ ହିରଣ୍ୟକଶିପୁର ଆଶ୍ରିତମାତ୍ର । ରାଜାକୁ ପ୍ରସନ୍ନ କରିବା ନିମନ୍ତେ ସେମାନେ ତା'ର ପୁତ୍ରକୁ କହିଲେ —"ଆରେ ଏ ନୀଚ କୁମାର, ଆପଣା କୁଳନାଶ କରନା ।" ଗୋଟିଏ କୁରାଢ଼ୀ ନେଇ ଯାଉଥିବା ଗଛକଟାଳୀ ପୁରୁଷକୁ ଦେଖି ଅରଣ୍ୟର ବୃକ୍ଷମାନେ କହିଲେ— — 'କୁରାଢ଼ୀ, ତୁ ଆମକୁ କଣ କାଟନ୍ତୁ ! କିନ୍ତୁ ଆମେ ବା କଣ କରିପାରିବୁ ?" ବେଣ୍ଟ ହୋଇ ତୋ ଭିତରେ ଆମ ଜାତିର କାଠ ରହିଛୁ । ତୁ ଏଇ ଅସୁରରୂପୀ ଚନ୍ଦନବନରେ କଣ୍ଟା ଗଛ ଭଳି ଜନ୍ମ ହୋଇଛୁ । ତୋ ହେତୁ ଏହି ସମ୍ପୂର୍ଣ୍ଣ କୁଳର ନାଶ ହେବ । ଏବେଠାରୁ ତୁ ନିଜ ଶତ୍ରୁର ଗୀତ ଗାଉଛୁ । ତାକୁ ଭକ୍ତି କରୁଛୁ । ବିଷ୍ଣୁ ଦୈତ୍ୟମାନଙ୍କ ପାଇଁ କୁରାଢ଼ୀ ଭଳି, ଆଉ ତୁ ତା'ର ବେଣ୍ଟ । ତୋର ସାହାଯ୍ୟରେ ସେ ଅସୁର କୁଳ ନାଶ କରିବ ।"

ନାରଦ କହିଲେ—"ରାଜନ୍ ! ଏହିପରି ସେହି ଗୁରୁପୁତ୍ରମାନେ ପ୍ରହ୍ଲାଦଙ୍କୁ ଏଣୁତେଣୁ ଯୋଗ୍ୟ ଅଯୋଗ୍ୟ କଥା ଶୁଣେଇଲେ । ମାତ୍ର ପ୍ରହ୍ଲାଦ ଗୁରୁଙ୍କର ଗୌରବ ରକ୍ଷା କରି ସେମାନଙ୍କର କୌଣସି କଥାର ଉତ୍ତର ଦେଲେନାହିଁ । ସେ ନୀରବରେ ସେମାନଙ୍କ କଥା ଶୁଣିଗଲେ । ଶେଷରେ ଗୁରୁପୁତ୍ରମାନେ କହିଲେ– "ଠିକ୍ ଅଛି, ଆଜି ତ ଆମେମାନେ ତୋତେ କ୍ଷମା ଦେଉଛୁ । ଏଣିକି ଏମିତି କଥା ଯଦି କହୁ ନ ମାରି ଛାଡ଼ିବୁ ନାହିଁ । ଏଣିକି ଆମେ ଯେଉଁଭଳି ଶିକ୍ଷା ଦେବୁ ତୁ ତାହା ଗ୍ରହଣ କର । ଏଭଳି ବହୁ ପ୍ରକାର ଭୟ ପ୍ରହ୍ଲାଦଙ୍କୁ ଦେଖେଇ ତାଙ୍କୁ ଅର୍ଥ, ଧର୍ମ ଏବଂ କାମ ପ୍ରାପ୍ତିକାରିଣୀ ବିଦ୍ୟାର ଶିକ୍ଷା ପ୍ରଦାନ କରିବାକୁ ଲାଗିଲେ । ପ୍ରହ୍ଲାଦଙ୍କୁ ତ ଏସବୁ କଥା ଭଲ ଲାଗୁନଥିଲା; ତଥାପି ମଧ୍ୟ ସେ ଗୁରୁ ଗୌରବ ହେତୁ ସେ ସମସ୍ତଙ୍କ କଥା ଶ୍ରଦ୍ଧା ସହିତ ଶ୍ରବଣ କରୁଥିଲେ ।"

Digitized by srujanika@gmail.com

## ଛପ୍‌ପୟ

ଅତି କୋପେ୍ୟ ଗୁରୁପୁତ୍ର କହେଂ ଅତି ଖଲ ଜିହ ବାଲକ ।।
କୁଲାଙ୍ଗାର ଦୁର୍ବୁଦ୍ଧି ଅସୁର କୁଲ କୋ ସଂହାରକ ।।
ଲଓ ମେରୀ ବେଂତ ନ ମାନେ ବାତ ପିତା କୀ ।
ହଡୀ ପସଲୀ ତୋର ଉଧେଡ଼ୁଁ ଚମଡ଼ା କାକୀ ।।
ଚନ୍ଦନ ବନ ମୃହ୍ନ ଅସର କୁଲ, ବଷ୍ଟୁ କୁଲ୍‌ହଡ଼ୀ ସମ ଭୟୋ ।
ମୂଲୋଚ୍ଛେଦନ କରନ ହିତ, ବେଂଷ ସରସ ଜିହ ହ୍ୱୈ ରହୋ ।।



Digitized by srujanika@gmail.com